# ଭାଗବତ କଥା

( ଅଷ୍ଟାବିଂଶ ଖଣ୍ଡ )


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡାକ୍ତର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଶ୍ରୀନିବାସ ଉଦ୍‌ଗାତା



ପ୍ରକାଶକ :

ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

# ଭାଗବତ କଥା

## ଅଷ୍ଟାତ୍ରିଂଶ ଖଣ୍ଡ

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର : କଟକ-୭୫୩୦୦୨
ପ୍ରକାଶନ ଉପଦେଷ୍ଟା :
ଡକ୍ଟର କୃଷ୍ଣପ୍ରସାଦ ମିଶ୍ର
ପ୍ରଥମ ସଂସ୍କରଣ : ୧୯୯୧
ପ୍ରଚ୍ଛଦ :
ଅସିତ୍ ମୁଖାର୍ଜୀ
ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ-୧
ମୂଲ୍ୟ :
ସାଦା—ଟ ୧୯-୦୦
ବନ୍ଧାଇ—ଟ ୨୨-୦୦

# BHAGABAT KATHA

( Thirty eight Part )

**Sri Prabhudatta Brahmachari**

Publisher :
**Srimati Annapurna Mishra**
Cuttack Students' Store
Balubazar, Cuttack - 753002
Publication Adviser :
**Dr K. P. Mishra**
First Edition : 1991

Price :
Popular—Rs. 19-00
Deluxe—Rs. 22-00

# ସୂଚୀ

| ବିଷୟ | ପୃଷ୍ଠା |
|---|---|
| ୧ । ଜଗତ ଜାଲକୁ ଛିଡ଼ିବାର ଉପାୟ | ୧ |
| ୨ । ରାମ-ଶ୍ୟାମ ନାମକରଣ | ୧୧ |
| ୩ । କାଳିଆ-ବଳିଆ | ୧୭ |
| ୪ । ରାମ-ଶ୍ୟାମଙ୍କର ବାଲ୍ୟଲୀଳା | ୨୩ |
| ୫ । ଚଙ୍କାଦୁଅରେ ଲିପ୍ତ ରାମ-ଶ୍ୟାମ | ୨୮ |
| ୬ । ଗୋବତ୍ସବତ୍ସାଙ୍କ ରାମ-ଶ୍ୟାମ | ୩୩ |
| ୭ । ବାଳ-ବିନୋଦନୀ ଲୀଳା | ୩୯ |
| ୮ । ମୃଦଭକ୍ଷଣ ଲୀଳା | ୫୩ |
| ୯ । ଲବଣୀ ଚୋର ଲୀଳା | ୬୧ |
| ୧୦ । ଅଭିଯୋଗ ନିମନ୍ତେ ଗୋପୀଙ୍କ ଚେଷ୍ଟା | ୭୦ |
| ୧୧ । ଗୋପୀମାନଙ୍କର ଅଭିଯୋଗ | ୮୨ |
| ୧୨ । ଶ୍ରୀକୃଷ୍ଣଙ୍କ ଦୁଷ୍ଟାମି | ୮୭ |
| ୧୩ । ଶ୍ରୀକୃଷ୍ଣଙ୍କୁ ଅପରାଧୀ ବୋଲି ପ୍ରମାଣିତ କରିବାକୁ ଚେଷ୍ଟା | ୯୫ |
| ୧୪ । ଯଶୋଦାମାତାଙ୍କ ଦଧିମନ୍ଥନ | ୧୦୩ |
| ୧୫ । ଲବଣୀ ଚୋରର କାଣ୍ଡ | ୧୦୯ |
| ୧୬ । ଶ୍ରୀକୃଷ୍ଣ ଧରାପଡ଼ିଲେ | ୧୧୫ |
| ୧୭ । ଦୟାଳୁ ଦାମୋଦର | ୧୨୧ |
| ୧୮ । ଜୀବ ଉଦ୍ଧାର ଲୀଳା | ୧୨୮ |
| ୧୯ । ଶ୍ରୀକୃଷ୍ଣ ଯଶୋଦାଙ୍କର ସ୍ତନ୍ୟପାନ କାହିଁକି କଲେ ? | ୧୩୪ |
| ୨୦ । ଯମଳାର୍ଜ୍ଜୁନ ଉଦ୍ଧାର | ୧୪୧ |
| ୨୧ । ନଳକୁବର ଓ ମଣିଗ୍ରୀବର ଅଭିଶାପ କଥା | ୧୪୭ |
| ୨୨ । ଶ୍ରୀକୃଷ୍ଣଙ୍କର ବନ୍ଧନ ମୁକ୍ତ | ୧୫୭ |
| ୨୩ । ଶ୍ୟାମଙ୍କର ପ୍ରେମମୟୀ ଲୀଳା | ୧୬୩ |
| ୨୪ । ଭକ୍ତବଶ୍ୟ ଭଗବାନ | ୧୬୮ |

(ଭୂମିକା)

# ଜଗତ-ଜାଲରୁ ଉଦ୍ଧରିବାର ଉପାୟ

ତବ ପରି ଯେ ଚରନ୍ତ୍ୟଖିଳସତ୍ତ୍ୱନିକେତତୟା,
ନ ଉତ ପଦାଽଽକ୍ରମନ୍ତ୍ୟବିଗଣଯ୍ୟ ଶିରୋ ନିର୍ଋତେଃ ।
ପରିବୟସେ ପଶୂନିବ ଗିରା ବିବୁଧାନପି ତାଂ-
ସ୍ତ୍ୱୟି କୃତସୌହୃଦାଃ ଖଳୁ ପୁନନ୍ତି ନ ଯେ ବିମୁଖାଃ ॥

(ଶ୍ରୀ ଭା ୧୦ ସ୍କ, ୮୭ ଅ, ୨୭ ଶ୍ଳୋକ)

## ଛପ୍ପୟ

ଦାମ ନାମ ଅରୁ କାମ ଜଗତକେ ଯେ ଇ ବନ୍ଧନ ।
ସମୁଝେଁ ସୁଖ ଫଁସି ଜାତ କରେଁ ପୁନି ପାଛେଁ କ୍ରନ୍ଦନ ॥
ପଣ୍ଡିତ ମୂରଖ ଜୀବ ସବହିଁ ଇନ ମାହିଁ ଭୁଲାନେ ।
ଯେ ଜଗକୀ ତଜି ରୀଝି ରମାପତି ରୂପ ବିକାନେ ॥
ତେ ଇ ଜଗମହଁ ଧନ୍ୟ ହୈଁ, ପ୍ରଭୁ ପେ ନିତ ବଲି ଜାତ ହୈଁ ।
ସ୍ୱୟଂ ତରେଁ ତାରେଁ ସବନି, ଜଗକେ ବନ୍ଧ ନସାତ ହୈଁ ॥

ଶ୍ରୁତିମାନେ ଭଗବାନଙ୍କୁ ସ୍ତୁତି କରି କହୁଛନ୍ତି—"ହେ ନାଥ ! ଯେଉଁ ପୁରୁଷମାନେ ଆପଣଙ୍କୁ ସମସ୍ତ ଜୀବମାନଙ୍କର ଆଶ୍ରୟସ୍ଥଳ ମନେ କରି ସେବା କରିଥାନ୍ତି, ସେମାନେ ମୃତ୍ୟୁକୁ କିଛି ହିଁ ମନେ ନ କରି ତା'ର ମୁଣ୍ଡରେ ପାଦ ପର୍ଯ୍ୟନ୍ତ ରଖି ଦେଇ ପାରନ୍ତି । ଯେ ଆପଣଙ୍କ ପ୍ରତି ବିମୁଖ, ସେ କେତେ ବଡ଼ ପଣ୍ଡିତ ହୋଇଥିଲେ ହେଁ, ଆପଣ ସେମାନଙ୍କୁ କର୍ମ ସମ୍ବନ୍ଧରେ କହୁଥିବା ଶ୍ରୁତିର ବନ୍ଧନରେ ଭଳି ବାନ୍ଧି ଦିଅନ୍ତି ଯେ; ସେମାନେ ନିଜେ ବନ୍ଧା ହୋଇ ଅନ୍ୟର ବନ୍ଧନ କିପରି ଖୋଲି ଦେଇ ପାରିବେ ? ମାତ୍ର ଯେଉଁମାନେ ଆପଣଙ୍କ ନିକଟରେ ସୁହୃଦ ଭାବ ସ୍ଥାପନ କରିନେଇଛନ୍ତି ସେମାନେ ତ୍ରିଲୋକକୁ ପବିତ୍ର କରିଥାନ୍ତି ।"

ଆଜିଠାରୁ ଅନେକଦିନ ତଳର କଥା । ମୁଁ ଯେତେବେଳେ ବୃନ୍ଦାବନ ଧାମର ରାମବାଗରେ ରହୁଥିଲି, ସେତେବେଳେ ଜଣେ ବଙ୍ଗାଳୁଣୀ ମାଆ ମୋ' ନିକଟକୁ ଆସିଥିଲେ । ଆନନ୍ଦରେ ମୋତେ ତାଙ୍କର ପରିଚୟ ଦେଇ କହିଲେ, 'ସ୍ୱାଙ୍କର ନାଁ'—'ଗୋପାଲେର ମା', ଗୋପାଳର ମାଆ । ଗୋପାଳ ସ୍ୱାଙ୍କର ଘର ସୁନ୍ଦର । ସ୍ୱାଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି, ସ୍ୱାଙ୍କର ହାତରୁ ପ୍ରସାଦ ପାଆନ୍ତି । ଇଏ ବି ତାଙ୍କୁ ପୁଅ ବୋଲି ସ୍ନେହ କରନ୍ତି । ଏ ସବୁ ଶୁଣି ମୁଁ ତାଙ୍କର ଗୋପାଳଙ୍କୁ ଦର୍ଶନ କରିବାକୁ ଗଲି । ତାଙ୍କ ସାଙ୍ଗରେ ଗୋପାଳ କଥାବାର୍ତ୍ତା କରନ୍ତି ନା ନାହିଁ, ତାଙ୍କ ହାତରୁ ପ୍ରସାଦ ପାଆନ୍ତି ନା ନାହିଁ; ତାହା ସେ ଜାଣିଥିବେ,ମାତ୍ର ମୋତେ ତାଙ୍କର ଭଗବାନ ଲଡ଼ୁ ଗୋପାଳଙ୍କର ମୂର୍ତ୍ତି ଅତି ସୁନ୍ଦର ମନେହେଲା । ଏହା ଲେଖୁଥିବାବେଳେ ଏଇନେ ବି ମୋ' ଆଖି ଆଗରେ ସେଇ ମନମୋହନ ମୂର୍ତ୍ତି ନାଚି ଗଲାଭଳି ମନେ ହେଉଛି । ମୂର୍ତ୍ତି ବଡ଼ ମୂର୍ତ୍ତି । ବୋଧହୁଏ ଅଷ୍ଟଧାତୁରେ ତିଆରି ହୋଇଥିଲା । ଛୋଟ ପିଲାଟିଏ ଭଳି ହାତ ପାଦରେ ଗୁରୁଣ୍ଡି ଗଲା ଭଳି ମୂର୍ତ୍ତି । ଗୋଟିଏ ହାତରେ ଲଡ଼ୁ । ଆର ହାତ ପାପୁଲିଟିଏ ଭଳି ମାଟିରେ ଭରା ଦେଇ ରହିଥିଲା । ତାଙ୍କର ଶ୍ରୀଅଙ୍ଗରେ ଭାରି ଯତ୍ନରେ ନୀଳ ରଙ୍ଗ ଲଗା ଯାଇଥିଲା । ଶ୍ରୀଅଙ୍ଗର ନୀଳ କାନ୍ତି ଚମକୁ ଥିଲା । ତିନୋଟି କାରଣରୁ ମୂର୍ତ୍ତିମାନଙ୍କର ଆଭା ଉତ୍କୃଷ୍ଟ ଅଟେ । ଅର୍ଚ୍ଚନାକାରୀଙ୍କର ଅସୀମ ଶ୍ରଦ୍ଧାଭାବନା, କାରିଗରର ଚତୁରତା ଆଉ ବୈଭବଶାଳୀ ସେବା ପୂଜା, ଏହି ତିନୋଟି କାରଣ ମୁଖ୍ୟ କାରଣ । ସେଇ କଷାୟ ବସ୍ତ୍ରଧାରିଣୀ ମାତାଙ୍କ ପାଖରେ ବୈଭବ ତ କଦାପି ନ ଥିଲା । ତେବେ ଏ କ୍ଷେତ୍ରରେ ଅନ୍ୟ ଦୁଇ କଥା ନିଶ୍ଚିତ ଭାବରେ ଥିଲା । ମୂର୍ତ୍ତିଟି ନିଶ୍ଚିତ ଭାବରେ ଜଣେ ସୁଯୋଗ୍ୟ କାରିଗର ତିଆରି କରିଥିଲେ ଏବଂ ସେ ଅତ୍ୟନ୍ତ ଶ୍ରଦ୍ଧା ସହିତ ତାଙ୍କର ପୂଜା ଅର୍ଚ୍ଚନା କରୁଥିଲେ । କେତେ ଭଳି ଶୃଙ୍ଗାର କରି ସେ ତାଙ୍କୁ ସଜେଇ ରଖୁଥିଲେ । ତା'ପରେ ମୁଁ ସେହିଭଳି ମୂର୍ତ୍ତିଟିଏ କଲିକତାରେ ଘୁମଡ଼ିଆ ସେଠମାନଙ୍କ ଘରେ ଦେଖିଥିଲି । ମୋର ମଧ୍ୟ ଇଚ୍ଛା ହେଲା ସେହିଭଳି ଲଡ଼ୁ ଗୋପାଳଙ୍କର ମୂର୍ତ୍ତିଟିଏ ରଖି ପୂଜା କରନ୍ତି ; କିନ୍ତୁ ପର ମୁହୂର୍ତ୍ତରେ ଦବିଗଲି । ଏକେତ ମୁଁ ବହୁ ଧନ୍ଦୀ ମଣିଷଟିଏ, ତାଙ୍କୁ କ'ଣ ଠିକ୍ ସମୟରେ ଠିକ୍ ଠିକ୍ ଖୁଆଇ ପିଆଇ ପାରିବି ! ଆଉ କେଜାଣି ଆଉ କେତେ ଲୋକଙ୍କ ମନ ବିଗାଡ଼ିବେ ସେ, ଲୋଭ ପୁରେଇ । ତେଣୁ ହୁଏତ ସେ ମୋତେ ପ୍ରାପ୍ତ ହେଲେ ନାହିଁ । ମୁଁ ସେଇଥିଲାଗି ଚେଷ୍ଟା ବି କଲି ନାହିଁ । ମାନ୍ଦ୍ରାଜରୁ ଛୋଟ କୁନମୁନ ରୁପାତିଆରି ଲଡ଼ୁ ଗୋପାଳ ଆସିଛନ୍ତି । ଭାରି ସାଦାସିଧା । ସାଗୁଦାନା ଉପାସିଆ ଥାଆନ୍ତି । ଦି'ପହର ଦୁଇଟା ତିନଟାରେ ସାଗ ପଖାଳ ଖାଇ ଚଳେଇ ନିଅନ୍ତି । ତଥାପି ମଧ୍ୟ ମୁଁ ସେ ମୂର୍ତ୍ତିଟିକୁ ଭୁଲିପାରି ନାହିଁ ।

ଏଇ ଦଶ କୋଡ଼ିଏ ଦିନ ତଳର କଥା । ମୁଁ ତ୍ରିବେଣୀରେ ନାଆରେ ବସି ପୂଜା କରୁଛି, ସେତିକିବେଳେ ଠିକ୍ ସେଇ ଭଳି ମୂର୍ତ୍ତିଟିଏ କୋଳରେ ଧରି ଜଣେ ମାଆ ସନ୍ନ

ସ୍ନାନ କରୁଥିଲେ । ସେ ତାଙ୍କୁ ପୁଅଭଳି କୋଳରେ ଧରି ରହିଥିଲେ । ତାଙ୍କର ଆକାର ପ୍ରକାରରୁ ସେ କୌଣସି ସମ୍ଭ୍ରାନ୍ତ ପରିବାରର ବୋଲି ମନେ ହେଉଥିଲେ । ସମ୍ଭବତଃ ବାଲ୍ୟ ବିଧବା ଆଉ ନିଜର କୌଣସି ପୁତ୍ର ସନ୍ତାନ ନଥିବା ହେତୁ ଗୋପାଳଙ୍କୁ ପୁଅ ଭାବରେ ଗ୍ରହଣ କରି ନେଇଥିଲେ । ସେତେବେଳେ ମାତାମାନଙ୍କୁ ଆନନ୍ଦ ମିଳେ, ଯେତେବେଳେ କେହି ତା'ର ପୁଅଟିକୁ ଆଦର ସ୍ନେହ ଦିଏ, ଖୁଆଏ ପିଆଏ, ଖେଳନା ଆଦି ଦିଏ ।

ଯାହାଙ୍କୁ ସେ ମାଆ ପୁଅ କରିଥିଲେ ସେ ମଧ୍ୟ ମୋତେ ଆକର୍ଷିତ କରିଥିଲେ । ହଠାତ୍ ସଙ୍ଗମରେ ଜଣେ ମାତାଙ୍କ କୋଳରେ ତାଙ୍କୁ ଦେଖି ମୁଁ ମଧ୍ୟ ଚମକି ପଡ଼ିଥିଲି । ପୂଜା ବନ୍ଦ କରି ମୁଁ ତାଙ୍କୁ ପାଖକୁ ଡାକିଲି । ସେ ତ ମାଆ କୋଳରୁ ଗ୍ରୁଟିପିଲି, ମୋ' ପାଖକୁ ଆସନ୍ତେ କେମିତି ! ମୋର ନିଶ ଦାଢ଼ି, କହରା ଅଲରା ବାଳ ଦେଖି ଡରୁଥିବେ ବି, ମୁଁ ତାଙ୍କର ମାଆଙ୍କୁ ଡାକିଲି । ମାଆ ସେଇ ଗେହ୍ଲା ପୁଅଟିକୁ କାଖେଇ ମୋ' ପାଖରେ ପହଞ୍ଚିଲେ । ମୁଁ ଗୋଲାପ ଫୁଲଟିଏ ତାଙ୍କ ହାତକୁ ବଢ଼େଇ ଦେଲି । ଇଚ୍ଛା ହେଲା, କୋଳ କରି ନିଅନ୍ତି, ହେଲେ ସେ ଆଉ ତାଙ୍କର ମା ଦୁହେଁ ଓଦା ସରସର ହୋଇ ରହିଥିଲେ । ମାଆ ତାଙ୍କୁ ଆବଶ୍ୟକରୁ ଅଧିକ ଗାଧେଇ ପକେଇ ଥିଲେ । ମାଆ ବି ଥରୁଥିଲେ । ସେ କିଛି ସମୟ ପୁଅକୁ କାଖେଇ ମୋ ଆଗରେ ଠିଆ ହୋଇ ରହିଲେ । ତା'ପରେ ଫୁଲ ପାଇ ଆଉ ମୁଁ ତାଙ୍କ ପୁଅକୁ ଗେଲ କରୁଛି ବୋଲି ଜାଣି ମନେ ମନେ ପ୍ରସନ୍ନ ହୋଇ ଚାଲିଗଲେ ।

ଆପଣ ଭାବନ୍ତୁ, ଯେମିତି ଅନ୍ୟ ସଂସାରୀ ମାଆମାନଙ୍କର ପୁତ୍ର ସ୍ନେହ ଆଉ ବନ୍ଧନ ରହିଛି, ସେହିଭଳି ଏଇ ମାଆଟିର ବି ରହିଛି । ତାଙ୍କର ସେବା ପୂଜା ହେଉ ସେଇ ଚିନ୍ତାଟି ରହିଛି । ତା' ଲାଗି ସବୁ କଥା, ନାନା ଜିନିଷ ଯୋଗାଡ଼ କରୁଛନ୍ତି, ମାତ୍ର ସେ ଯା'ର ଚିନ୍ତା କରି ଚାଲିଛନ୍ତି ସେ ନିତ୍ୟ । ତାଙ୍କର ବିଶ୍ୱାସ ଅଛି ମୁଁ ମରି ଯିବ ପଛକେ ମୋର ପୁଅ କେବେହେଲେ ମରିବ ନାହିଁ । ମୁଁ ତାକୁ ସ୍ନେହ ଦିଏଁ ନ ଦିଏଁ ସେ ମୋତେ ନିଶ୍ଚୟ ଭଲ ପାଇବ । ତାଙ୍କର ଯେତେବେଳେ ଗୋପାଳ ପ୍ରତି ଏତେ ବିଶ୍ୱାସ, ଯେତେବେଳେ ଗୋପାଳର ମଧ୍ୟ କିଛି କର୍ତ୍ତବ୍ୟ ଅଛି । ସେ ଧନିକଙ୍କ ଭଳି ପାଷାଣ ହୃଦୟ କୃତଘ୍ନ ଆଉ ସ୍ୱାର୍ଥୀ ତ ନୁହଁ ! ଆଉ କାହା ଲାଗି ହୋଇ ପାରେ ମାତ୍ର ଯେ ତାକୁ ପୁଅବୋଲି ସ୍ନେହ ଦେଉଛି ତା' ପ୍ରତି ସେ କେବେହେଲେ ନିଷ୍ଠୁର ହୋଇ ପାରିବ ନାହିଁ । ସେ ଯଦି ନିଜେ ଅମର ମାଆକୁ ବି ଅମର କରିଦେବ । ତା'ର ମାଆ ତାକୁ ଭଲ ପାଉଥିଲେ ସେ ମଧ୍ୟ ମାଆଙ୍କୁ ବାଧ୍ୟ ହୋଇ ଭଲ ପାଇବ । ତେଣୁ ଯେଉଁ ମାଆ ଗୋପାଳଙ୍କୁ ପୁଅ କରି ନେଇଛନ୍ତି ତାଙ୍କର ବନ୍ଧନ-ମୁକ୍ତି ପାଇଁ ସନ୍ଦେହର କୌଣସି ଅବକାଶ ନାହିଁ । ତାଙ୍କ ପାଇଁ ଜଗତର ଜାଲ, ବନ୍ଧନ ଛିନ୍ନଭିନ୍ନ ହୋଇ ଯିବ, ଏଥିରେ ସନ୍ଦେହ ନାହିଁ ।

ଆପଣ ଭାବି ଦେଖନ୍ତୁ ଜଗତର ଜାଲ କ'ଣ ? କାମ ନିମନ୍ତେ ମିଥୁନର ଇଚ୍ଛା । ମିଥୁନ ନିମନ୍ତେ ଦାମ (ଅର୍ଥ)ର ଇଚ୍ଛା, କେବଳ ମାତ୍ର ସେହି ମିଥୁନକୁ ସ୍ଥାୟୀକରି ରଖିବା ଉଦ୍ଦେଶ୍ୟରେ ଆଉ ତାହା ସହିତ ନାଆଟି ବି ସ୍ଥାୟୀ ହେଉ ଏଇ ଇଚ୍ଛା । ମନୁଷ୍ୟ ଅର୍ଥ ଚାହେଁ କାମ ପାଇଁ, କାମ ଶେଷରୁ 'ନାମ'ର କାମନା କରୁଛି । ସମସ୍ତ ଇନ୍ଦ୍ରିୟ ସୁଖର ଅଭିଳାଷକୁ କାମ କୁହାଯାଏ । ରୂପର ସୁଖ, ରସର ସୁଖ, ଗନ୍ଧର ସୁଖ, ସ୍ପର୍ଶର ସୁଖ । ଏ ସବୁ ପାରସ୍ପରିକ ଭାବରେ ସ୍ତ୍ରୀକୁ ପୁରୁଷଠାରୁ ଏବଂ ପୁରୁଷକୁ ସ୍ତ୍ରୀଠାରୁ ପ୍ରାପ୍ତ ହୋଇଥାଏ । ତେଣୁ ସ୍ୱାଭାବିକ ଭାବରେ ସମସ୍ତଙ୍କର ବିବାହ କରିବାର ରୁଚି ଆସିଥାଏ । ବିବାହ ବନ୍ଧନ ହେଲାମାତ୍ରେ ସଂସାର ଚକ୍ର ଆରମ୍ଭ ହୋଇଗଲା । ବିବାହ କରି ଆଜି ପର୍ଯ୍ୟନ୍ତ କାହାକୁ ହେଲେ ଅତ୍ୟନ୍ତ ସୁଖପ୍ରାପ୍ତ ହୋଇନାହିଁ । ମୋ ପାଖକୁ ଅନେକ ଲୋକ ଆସନ୍ତି । ସେମାନଙ୍କ ଭିତରୁ ଜଣେ ହେଲେ କହନାହିଁ—'ଆମେ ଅତ୍ୟନ୍ତ ସୁଖୀ' । ତଥାପି ମଧ୍ୟ ମନୁଷ୍ୟ ଏକାନ୍ତ ଭାବରେ ବିବାହ କରିବାକୁ ଉତ୍ସୁକ ହୋଇ ରହିଥାଏ । ଏହା ହିଁ ଭଗବାନଙ୍କର ମାୟା । ଖାଇବାକୁ ଘରେ ହୁଏତ ଗଣ୍ଡାଏ ଅନ୍ନ ନ ଥିବ; ମାତ୍ର ବିବାହ ଅବଶ୍ୟ ହେଉ । ମୋ ପାଖକୁ ବିଦ୍ୟାଳୟ, ବିଶ୍ୱବିଦ୍ୟାଳୟରୁ ଅନେକ ବିଦ୍ୟାର୍ଥୀ ବିରକ୍ତ ହୋଇ ଆସି ପହଞ୍ଚନ୍ତି । କେହି କେହି କହନ୍ତି—'ମୋତେ ଯୋଗ ଶିଖେଇ ଦିଅନ୍ତୁ ।' କେହି କେହି କହନ୍ତି 'ମୋତେ ଆପଣଙ୍କ ସେବାନିଯୁକ୍ତ କରି ରଖି ଦିଅନ୍ତୁ ।' ମୁଁ ସେଭଳି ଯୁବକମାନଙ୍କୁ ଦେଖି ଦେଖି ସେମାନଙ୍କର ସେମାନଙ୍କ ନାଡ଼ି ଜାଣୁଛି ଜାଣୁଛି ଚିହ୍ନି ଲିଣି । କହି ଦେଉଛି—ବାହା ସାହା ହୋଇପଡ଼—ପୁଣି ଆସିବ ।'

ଏ ଭିତରେ ଶ୍ରୀମଦ୍ ଭାଗବତ ସପ୍ତାହ ଆୟୋଜନ ନେଇ ମୋତେ କାନପୁର ଯିବାକୁ ପଡ଼ିଲା । ମୁଁ ଶୀଘ୍ର ଶୀଘ୍ର କାମ ତୁଟେଇବାକୁ ଚାହୁଁଥିଲି । ଯେମିତି ମୋର ପୁରାଣ ପାଠ ଆଉ ତ୍ରିବେଣୀ ସ୍ନାନରେ ବାଧା ପଡ଼ିବ ନାହିଁ । ସେ ସମୟରେ କମଳା ଷ୍ଟ୍ରୀଟ୍‌ରେ ଥିବା ଶେଠ୍ ପଦ୍ମାପତି ସିଂହାନିଆଙ୍କର ଭବ୍ୟଭବନ ଦେଖିବାକୁ ମଧ୍ୟ ଭାରି ତରବର ହୋଇ ବାହାରିଲୁଁ । ମୁଁ 'ଦାଦାଜୀ' (ବାପା) ଡାକୁଥିବା ପଣ୍ଡିତ ଗଜାନନ୍ଦ ମୋତେ ସେଇ ଭବନ ଦେଖେଇବାକୁ ନେଇ ଯାଇଥିଲେ । ମୁଁ ତା'ଭଳି ସୁନ୍ଦର, ସମୃଦ୍ଧ, ବିସ୍ତୃତ ଆଉ ସୁସଜ୍ଜିତ ଭବନ ଜୀବନରେ ଦେଖି ନ ଥିଲି । ସେଠାକାର ଚାରି ଜଣ ଚଉକିଦାର ଲାଗିପଡ଼ି ଆମକୁ ଭବନର ନାନା କଥା ବୁଝେଇ ଦେଖେଇବାକୁ ଚେଷ୍ଟା କରୁଥାନ୍ତି । ଯଦି ଟିକିନିଖି କରି ସବୁକିଛି ଦେଖିଥାନ୍ତୁ ତା'ହେଲେ ତ କେତେ ଦିନ ଲାଗନ୍ତା । ଆମେମାନେ ସେମିତି ବୁଲାବୁଲି କରିଦେଇ ଆସିଲୁଁ । ସେଠାରେ ହୁଏତ ଭାଗ୍ୟଶାଳୀ ଲୋକେ ଆସି ରହୁଥିବେ ; କିନ୍ତୁ ମୋତେ କେହି ସେଠାରେ ଦୁଇ ଚାରି ଘଣ୍ଟା ରହିବାକୁ କହିଲେ ବି ମୁଁ ରହି ପାରନ୍ତି ନାହିଁ । ସେଠାରେ କବାଟଗୁଡ଼ିକରେ ଯୋଉ ରଙ୍ଗ ସବୁ ଲାଗିଥିଲା ତା'ର ଉତ୍କଟ ଗନ୍ଧଟି ମୋର ମୁଣ୍ଡ ବଥେଇବା ଆରମ୍ଭ ହେଲା

ସାଉଥିଲି । ଆଉ ମୁଁ ପାଖାପାଖି ନାକ ବନ୍ଦକରି ପୋଖରୀ ଏ ଘୂରି ଆସିଥିଲି । ସେଠାରେ ସରୋବରଟି ଦେଖି ଆନନ୍ଦ ପାଉଥିଲି । ପଣ୍ଡିତ ମହାଶୟ କହିଲେ ଥିବ ଯଦି ସମସ୍ତ ଏସିଆରେ ସେଭଳି ଆଉ ଗୋଟାଏ ଅଧେ ସରୋବର ଥିବ । ଦେଉଁମାନେ ଏତେ ଉତ୍ସାହରେ ଆମକୁ ସବୁ ବୁଲେଇ ବୁଲେଇ ଦେଖେଇଲେ ସେମାନଙ୍କଠାରୁ ଆମର ବିଦାନେଇ ଆସିବା କଥା । ଫେରିବାବେଳେ ମୁଁ ସେମାନଙ୍କ ଭିତରୁ ଜଣେ ସୁନ୍ଦର ଆଉ ଯୁବକ ପ୍ରହରୀକୁ କହିଲି···'ଦେଖ, ଆମେ ଦକ୍ଷିଣ ବଡ଼ ମହାତ୍ମା ! ସବୁ କିଛି କରିପାରୁଁ । ସବୁ କିଛି ଦେଇପାରୁଁ । ତମ ମାଲିକ ବି ଆମକୁ ମାନନ୍ତି । ତମେ ତମର ଯାହା ଇଚ୍ଛା ଆମଠୁ ମାଗିନିଅ । ଆମେ ତମକୁ ଆଶୀର୍ବାଦ କରି ସବୁକିଛି ଦେଇପାରୁ ।

ଏକଥା ଶୁଣି ସେ ମଉନ ରହିଥାଏ । ମୁଁ ପୁଣି କହିଲି—'ତମେ ଯେତେ ଇଚ୍ଛା ସେତେ ଧନ ମାଗିନିଅ । ପୁଅ, ଘର, ଧନ ଦଉଲତ ଯାହାଇଚ୍ଛା । ଆରେ ଚଞ୍ଚଳ କହ ଚଞ୍ଚଳ । ଆମେ ଶୀଘ୍ର ଚାଲିଯିବୁଁ ।'

ତଥାପି ବି ସେ ଚୂପ୍ ରହିଥାଏ । ମୁଁ କହିଲି·····'କ'ଣ ପୁଅ ଚାହୁଁଛ ?

ସେ ତଥାପି ବି କିଛି କହିଲା ନାହିଁ । ସେ କିଛି ନ କହିଲାରୁ ମୁଁ ପଚାରି ଦେଲି—'କ'ଣ ବାହା ସାହା ହୋଇନ ।'

'ନା'

'ତା'ହେଲେ କ'ଣ ସ୍ତ୍ରୀ ଚାହୁଁଛ ।' ମୁଁ ପଚାରିଲି—

'ହଁ' ।

'ଠିକ୍ ଅଛି । ଯା' ତମର ବାହା ହୋଇଯିବ ।'

ସେମାନେ ତିନି ଚାରିଜଣ ଥିଲେ । ଆଉ ସେତିକି ସମସ୍ତଙ୍କୁ ବରଦାନ କରିବା ଝୁଙ୍କରେ ମୁଁ ଆଉ ଜଣକୁ ପଚାରିଲି—'ତମେ କହ ତମର କ'ଣ ଦରକାର !'

'ମୁଁ ବି ସେଇଆ ଚାହୁଁଛି !'

'ଠିକ୍ ଅଛି, ଯା' ତୋର ବି ହୋଇଯିବ ।'

ତୃତୀୟ ଜଣକ ବି ସେଇକଥା କହିଲା । ଏ ସବୁ ଶୁଣି ମୋ' ସାଙ୍ଗରେ ଥିବା ସମସ୍ତେ ଖିଲିଖିଲି ହସିଲେ । ମୁଁ ପଚାରିଲି—

'ଅରେ ଭାଇ, ତମେ ତ ଏତେ ବଡ଼ ହେଲଣି । ଆଉ ଏଯାଏଁ ତମର ବାହା ବି ହୋଇନ ?'

ସେ କହିଲା—'ବାବା, ହେଇଥିଲା ଯେ, ସାପକାମୁଡ଼ାରେ ମରିଗଲା ।'

ମୁଁ ତାଙ୍କୁ ଅଭୟ ଦେଇ କହିଲି—ଠିକ୍ ଅଛି । ଯା’ ଉମର ବି ହବ ।’

ଆମେ ସେମାନଙ୍କୁ ଏଭଳି ଭାବରେ ବରଦେଇ ଚାଲି ତ ଆସିଲୁଁ, ତେବେ ସେଦିନଠାରୁ ଏଯାଏଁ ସେମାନଙ୍କ ଘରଟିମାନଙ୍କୁ ଘରଣୀ ଆସିଲା ନା ନାହିଁ ଜାଣିନି । ତେବେ ମୁଁ ଶେଷକୁ ଏଇ ନିଷ୍ପତ୍ତିରେ ପହଞ୍ଚି ଗଲି ଯେ ସ୍ୱାଭାବିକ ଭାବରେ ମଣିଷ ଆପଣା ରୁଚିରେ ସଂସାର ବନ୍ଧନରେ ବାନ୍ଧି ହେବାକୁ ଆସେ । ସେ କାହାକୁ ହେଲେ ଭଲ ନ ପାଇ ରହି ପାରିବ ନାହିଁ ।

ଆମ ‘ବୈଦ୍ୟ ରାମନାରାୟଣ’ ମହାଶୟ ଯେତେବେଳେ ଆସିଥିଲେ ସେତେବେଳେ ତାଙ୍କର ବାର ତେର ବର୍ଷର ପୁଅଟିଏ ବି ଆସିଥିଲା । ସେ ଭାଗବତ କଥାର ଏତେ ପ୍ରେମୀ ଯେ ପ୍ରତିଦିନ ଗୋଟିଏ ଖଣ୍ଡ ପଢ଼ିବା ପରେ ହିଁ ବିଶ୍ରାମ କରୁଥିଲା । ସେ ତା’ର ବାପାଙ୍କୁ ପଚାରିଲା—‘ବ୍ରହ୍ମଚାରୀ ମହାଶୟ, ଏତେ ଲେଖୁଛନ୍ତି, ଲେଖିସାରିଲେଣି, ଏତେ ଗୁଡ଼ାଏ କେମିତି ଲେଖୁଛନ୍ତି ।’

ତା’ର ବାପା ଉତ୍ତର ଦେଲେ—‘ପୁରାଣ ମଣ୍ଡପରେ ସବୁଦିନେ ପୁରାଣ କଥା ଚାଲିଛି । ସେ ସେସବୁ ଶୁଣନ୍ତି ଆଉ ଶୁଣିଲା ପରେ ଲେଖନ୍ତି ।’

ତାଙ୍କ କଥା କେତେକାଂଶରେ ସତ । କଥା ନ ପୁରାଣମାନଙ୍କର ମାତ୍ର ଅଧିକ ଲେଖିବାର ଖୋରାକ ତ ମୋତେ ଯେତେ ସବୁ ସାଂସାରିକ ପାଠରୁ ମିଳିଥାଏ । ସଂସାରରେ ଏମିତି ଜଣେହେଲେ ଲୋକ ନାହିଁ ଯାହାଠାରୁ କିଛି ନା କିଛି ହେଉ ଶିକ୍ଷା ଯାଇ ପାରିବ ନାହିଁ । ବିଶେଷ କରି ପାଠୁଆ ଲୋକଙ୍କଠାରୁ ଆମକୁ ଅପାଠୁଆ ଲୋକଙ୍କ ନିକଟରୁ ଅଧିକ ଶିକ୍ଷା ମିଳିଥାଏ । ମୁଁ ସୁଯୋଗ ପାଇଲେ ପ୍ରାୟ ସମସ୍ତଙ୍କୁ ଏମିତି ପ୍ରଶ୍ନ କରେଁ । ଆଉ ବେଳେ ବେଳେ ସେଇ କଥା ଝୁଙ୍କ୍ ଲାଗିଲା ଭଳି ମୋ’ ମୁଣ୍ଡରେ ପଶିଥାଏ । ଅନେକ ଦିନ ତଳର କଥା, ଯେତେବେଳେ କାନପୁରରେ ସ୍ୱାମୀ ଏକରସାନନ୍ଦଙ୍କର ଅଧ୍ୟକ୍ଷତାରେ ଗୋଟାଏ ସଂକୀର୍ତ୍ତନ ମହୋତ୍ସବ ଚାଲିଥାଏ । ମୁଁ ବି ସେଥିରେ ଯୋଗଦେଇଥିଲି । ଆଉ ସରସୈୟା ଘାଟରେ ରହିଥିଲି । ଜଣେ ନାଉରିଆ ପୁଅକୁ ମୁଁ କହିଲି—‘ମୋତେ ସେପାରିରେ ପହଞ୍ଚେଇ ଦେ, ଆଉ ସେ ମୋତେ ପହଞ୍ଚାଇ ଦେଲା । ପହଞ୍ଚିଲା ପରେ ମୁଁ ତାଙ୍କୁ କହିଲି— ‘ଦେଖ୍ ମୁଁ ଜଣେ ବଡ଼ ମହାତ୍ମା । ତୋର ଯାହା ଇଚ୍ଛା ମୋ’ଠାରୁ ମାଗିନେ ।’

ସେ ମୋର କାନ ପାଖରେ ଭାରି ବିନୟ ସହିତ କହିଲା—‘ବାବା, ମୋର ମାତ୍ର ଚାରୋଟି ଟଙ୍କା ଦରକାର । ମୋତେ ସେତିକିଆ ଦିଅନ୍ତୁ ।’

ଚାରିଟଙ୍କା ତାକୁ ଦେଇଦେଲି । ଆଉ ବି ଯାହା ମାଗିଥାନ୍ତା ଦେଇ ଥାଆନ୍ତି । ମୁଁ ବିଶ୍ୱାସ କରୁଛି ସେ ବଡ଼ ହୋଇଥିଲେ, ବିବାହ ଯୋଗ୍ୟ ହୋଇଥିଲେ ବାହା ହବାକୁ ବର ମାଗିଥାନ୍ତା । ବାହା ହୋଇ ସାରିଥିଲେ ପୁଅ ପାଇଁ କହିଥାନ୍ତା । କହିବା ଆରମ୍ଭ କଲିଣି ଯେତେବେଳେ ଗୋଟାଏ ଦୁଇ ବର୍ତ୍ତମାନ ଘଟଣା ସଂକ୍ଷେପରେ ଶୁଣେଇ ଦିଏଁ ।

ଥରେ ଆମେ ଝରିଆ ଯାଇଥିଲୁଁ । ସେଠିଠି କୋଇଲା ଖଣି ଅଛି । ସେମିତି ଗୋଟାଏ କୋଇଲା ଖଣିର ମାଲିକ ସୀତାରାମ ବାବୁଙ୍କ ଘରେ ରହିଥିଲୁଁ । ତାଙ୍କ ଭାଇ ଜଗମଙ୍ଗୀ ବାବୁ ଆମକୁ କୋଇଲା ଖଣି ଦେଖାଇବାକୁ ନେଇଗଲେ । ତା' ଆଗରୁ ଆମେ କେବେହେଲେ କୋଇଲା ଖଣି ଦେଖି ନ ଥିଲୁଁ । ଏ କଥା ଅନୁମାନ ବି କରିପାରି ନ ଥିଲୁଁ ଯେ ଏତେ ତଳେ ମାଟି ଭିତରେ ଯାଇ ମଣିଷ କାମ କରି ପାରୁଛି । ମାଟିରେ ଶହ ଶହ ହାତ ତଳେ ମଣିଷ ଯାଇ କୋଇଲା ଖୋଳୁଛି । ଯନ୍ତ୍ର ସାହାଯ୍ୟରେ ପବନ ବି ସେଇ ତଳକୁ ପହଞ୍ଚାଇ ଦିଆ ଯାଉଛି । ଶ୍ରମିକମାନେ କେତେ ପରିଶ୍ରମ କରି ସେଠି ତଳେ କୋଇଲା ଖୋଳି ବାହାର କରୁଛନ୍ତି । ସେମାନଙ୍କର ଲୁଗାପଟା ଆଉ ଶରୀର କେବଳ ନୁହେଁ, ଛେପ ପର୍ଯ୍ୟନ୍ତ କଳା ହୋଇ ବାହାରୁ ଥାଏ । ମଳ ମୂତ୍ର ବି ଶୁଣିବାରେ କଳାରଙ୍ଗ ଧରେ । ମଣିଷ ବି ଏମିତି ଜୀବନ ବଞ୍ଚେଇ ପାରେ, ଆମେ ସେକଥା ସେଇଠି ଦେଖିଲୁଁ । ଆମର ତ ଘଣ୍ଟାକରେ ପ୍ରାଣ ଛଟପଟ ହେବାକୁ ଲାଗିଲା । ନିଃଶ୍ୱାସ ବନ୍ଦ ହେଲା ଭଳି ମନେ ହେଲା । ଜଣେ ହୃଷ୍ଟପୁଷ୍ଟ କୁଲି ସେଇ ବଡ଼ ବଡ଼ ପଥର ଭଳି କୋଇଲା ଚଟାଣ କାଟୁଥିଲା । ସାରା ଶରୀର ଝାଳରେ ବୁଡ଼ି ଯାଉଥିଲା । ମୁଁ ତାକୁ ଅଟକେଇ କହିଲି—'ଦେଖ, ମୁଁ ଜଣେ ଅତି ବଡ଼ ମହାତ୍ମା । ତମର ଏ ବାବୁ ସାହେବ ବି ଆମର ଭକ୍ତ । ଆମେ ସବୁକିଛି ଦେଇପାରୁଁ । ମାଗ, ତମେ କି ବର ମାଗୁଛ ମାଗ ।

ସେ କହିଲା—'ମୋତେ ପୁଅଟିଏ ଦିଅନ୍ତୁ ।'

ଏତିକ ଶୁଣିଲା ମାତ୍ରକେ ମୋ' ସାଙ୍ଗରେ ଥିବା ସଭିଏଁ ଖିଲ୍ ଖିଲ୍ ହସି ଉଠିଲେ । ଆଉ ସେମାନଙ୍କ ଭିତରୁ ଜଣେ କହିଲା—'ତୁ ତ କୋଇଲା କାଟୁଛୁ, ପୁଅଟିଏ ନେଇ କରିବୁ କ'ଣ ।'

ଆଉ ଜଣେ କହିଲା—'ସିଏ ବି କୋଇଲା କାଟିବ ।'

ଆଉ ଜଣେ କୁଲିକୁ ସେଇଆ କହିଲାରୁ ସେ ଖାଲି ପଇସା ମାଗିଲା ।

ଏ ସବୁ ଉଦାହରଣର ଉଦ୍ଦେଶ୍ୟ ହେଲା ସମସ୍ତ ଜୀବ କାମ ଆଉ ଅର୍ଥର ଦଉଡ଼ିରେ ବନ୍ଧା ହୋଇ ରହିଛନ୍ତି । କେବଳ ମୂର୍ଖ ନୁହନ୍ତି ବଡ଼ ବଡ଼ ପଣ୍ଡିତ, ଆମଭଳି ଜଟାଧାରୀ ଦଣ୍ଡଧାରୀ, ମଠଧାରୀ, ତ୍ୟାଗୀ, ସନ୍ନ୍ୟାସୀ ସମସ୍ତେ ଏଇ କଥାରେ ବାନ୍ଧି । ଅନେକଙ୍କ ସାଙ୍ଗରେ ମୋର ପରିଚୟ ରହିଛି । ସେମାନେ ଭାରି ସୁନ୍ଦର ଉପଦେଶ ଦିଅନ୍ତି । ବଡ଼ ବଡ଼ ଧନୀ ଲୋକେ ସେମାନଙ୍କର ଆଦର କରନ୍ତି । ତାଙ୍କର ଅନେକ ଅନେକ ଶିଷ୍ୟ ବି ଅଛନ୍ତି ହେଲେ ସବୁ କଥା ସେଇ ଅର୍ଥ, କାମ ଆଉ ଯଶଲାଗି । କିଏ କପଡ଼ା ଦେଉଛି, କିଏ ଔଷଧ ତ ଆଉ କିଏ ନ୍ୟାସର ବଣିଜ କରୁଛି । ତା' ସାଙ୍ଗରେ କିଏ ଉପଦେଶ ଦେବାର ବେଉସା

କହିଛି । 'ସ୍ୱାତ୍ମାନନ୍ଦ ପଦପ୍ରବେଶକଲଙ୍କ ଶେଷାଃ ବଣିକ୍ ବୃତ୍ତୟଃ'' । ଏଇ ସଂସାର ବନ୍ଧନରୁ ମୁକ୍ତି ପାଇବାର ଚେଷ୍ଟା ହୁଏତ କୋଉ ବିରଳ ମନୀଷୀଟିଏ କୋଉଠି କରୁଥିବ । ଏ କଥା ସେତେବେଳେ ଯାଇଁ ସମ୍ଭବ ଯେତେବେଳେ ଭଗବାନଙ୍କୁ ସୁହୃଦ୍ ମନେକରି ଏ ସବୁ ଚେଷ୍ଟା କରାଯିବ । ତା' ଯୁକ୍ତି ତାଙ୍କ ଲାଗି । ଯେତେବେଳ ପର୍ଯ୍ୟନ୍ତ ସାଂସାରିକ ସୁଖର ଅନୁଭୂତି ଥିବ ସେତେବେଳ ଯାଏଁ ଗୋପାଳପ୍ରିୟ ମନେ ହେବେ ନାହିଁ । ସଂସାରର ପଦାର୍ଥରୁ ମନ ହଟିଗଲେ ଯାଇଁ, ଏଥିରେ କୌଣସି ସୁଖ ନାହିଁ ଏଇଆ ଅନୁଭବ ହେଲେ ଯାଇଁ ଗୋପାଳ ପାଖରେ ଚିତ୍ତ ଲାଗିବ ।

କାମ ଆଉ ଅର୍ଥର ଭାବନା ସ୍ୱାଭାବିକ । ଏହି ଭାବନା ପ୍ରତ୍ୟେକ ପ୍ରାଣୀ ମଧ୍ୟରେ ରହିଛି । ଏସବୁ ନ ଶିଖେଇଲେ, ପଢ଼େଇଲେ ବି ଆପଣା ମନକୁ ଆସିଯାଏ । ସେଇଥିପାଇଁ ଆମର ମୁନି ଋଷିମାନେ କାମଶାସ୍ତ୍ର ଆଉ ଅର୍ଥଶାସ୍ତ୍ର ଉପରେ ଏତେ ସବୁ କଥା କହିଛନ୍ତି । କେତେ କଥା ବିସ୍ତାର କରିଛନ୍ତି । କାମକୁ ଶ୍ରୀକୃଷ୍ଣଙ୍କର ପୁଅ ଆଉ ଲକ୍ଷ୍ମୀଙ୍କୁ (ଅର୍ଥ) ଭଗବାନଙ୍କର ପତ୍ନୀ ବୋଲି କୁହାଯାଇଛି । ଆଉ ସ୍ୱୟଂ ଭଗବାନଙ୍କୁ ଧର୍ମ ସ୍ୱରୂପ ବୋଲି କୁହାଯାଇଛି । ଧର୍ମବିହୀନ କାମ ଆଉ ଅର୍ଥ ବିନାଶ ଆଡ଼କୁ ଟାଣି ନିଏ । ଆଜି ସଂସାରରେ ଏତେ ଅଶାନ୍ତି କାହିଁକି ଅଛି ? ଲୋକେ ଅର୍ଥ ଚାହାନ୍ତି । ସ୍ୱଚ୍ଛନ୍ଦ ଭାବରେ କାମ ସୁଖ ଭୋଗ କରିବାର ଇଚ୍ଛା କରନ୍ତି । ମାତ୍ର ଏସବୁ କଥା ଧର୍ମକୁ ତ୍ୟାଗ କରି ଚାହାନ୍ତି । ସେଇ କାରଣରୁ ସେମାନେ ଅଧିକରୁ ଅଧିକ ସଂସାର ବନ୍ଧନରେ ବାନ୍ଧି ହୋଇ ଯାଆନ୍ତି । ଏଇଆ ଯୁଗଧର୍ମ । କଳି ଯୁଗରେ ଧର୍ମର ଗୋଟିଏ ପାଦ ତ ରହିଛି ? ଅନ୍ୟ ଯୁଗମାନଙ୍କରେ ବି ଲୋକେ ଧନ ସଞ୍ଚୟ କରୁଥିଲେ, କାମ ଉପଭୋଗ କରୁଥିଲେ, ହେଲେ ତାହା ଧର୍ମପୂର୍ବକ କରୁଥିଲେ । ଶୁଦ୍ଧ କହେ ଅପୂର୍ବ କର ଗତି ନାହିଁ । ତେଣୁ ବିବାହ କରିବାକୁ ଇଚ୍ଛା ନ ଥିଲେ ମଧ୍ୟ ଧର୍ମପାଳନପାଇଁ ସେମାନେ ବିବାହ କରୁଥିଲେ । ଜରତ୍କାରୁ ମୁନିଙ୍କର ବିବାହ କରିବାର ଇଚ୍ଛା ନ ଥିଲା । ମାତ୍ର ପିତୃମାନଙ୍କର କହିବା ଫଳରେ ସେ ଇଚ୍ଛା ବିରୁଦ୍ଧରେ ବିବାହ କରିଥିଲେ ଏବଂ ଆସ୍ତୀକ ମୁନି ଗର୍ଭସ୍ଥ ହେବା ସଙ୍ଗେ ସଙ୍ଗେ ପତ୍ନୀଙ୍କୁ ତ୍ୟାଗ କରି ଚାଲି ଯାଇଥିଲେ । ପାଣ୍ଡବମାନେ ଲୋଭବଶତଃ ରାଜ୍ୟଲାଭ କରି ନ ଥିଲେ । ରାଜ୍ୟ ସୁଖର ଉପଭୋଗ ନିମନ୍ତେ ମହାଭାରତ ଯୁଦ୍ଧ ଲଢ଼ି ନଥିଲେ ବରଂ କ୍ଷତ୍ରିୟ ଧର୍ମର ପାଳନ ନିମନ୍ତେ ଯୁଦ୍ଧ କରିଥିଲେ । ନା ଧର୍ମରାଜଙ୍କର ଯୁଦ୍ଧ କରିବାର ଇଚ୍ଛା ଥିଲା ନା ଅନ୍ୟ ଭାଇମାନଙ୍କର । ତେବେ ସେ ସବୁ ଧର୍ମପାଳନ ନିମନ୍ତେ କରିବାକୁ ପଡ଼ିଥିଲା । ଆଉ ପରିଶେଷରେ ସେମାନେ ରାଜ୍ୟ ସମ୍ପଦ ତ୍ୟାଗ କରି ହିମାଳୟକୁ ଚାଲି ଯାଇଥିଲେ । ପତ୍ନୀ ଗ୍ରହଣ କର, ମାତ୍ର ଧର୍ମପତ୍ନୀ । ଅର୍ଥ ଉପାର୍ଜନ କର ମାତ୍ର ତାହା ଧର୍ମର ପାଳନ ପାଇଁ । ମାତ୍ର କାମୀ ଏବଂ ଲୋଭୀ ପୁରୁଷମାନେ ଏସବୁ କଥା ଶୁଣନ୍ତି ନାହିଁ । ଆମଭଳି ସାଧାରଣ ଲୋକଙ୍କ କଥା ଛାଡ଼ ଦିଅଂ ବ୍ୟାସଦେବ କହନ୍ତି—''ମୁଁ ହାତ ଟେକି ଉଚ୍ଚୈଃସ୍ୱରରେ କାନ୍ଦି କାନ୍ଦି କହୁଛି

ଯେ ଧର୍ମଦ୍ୱାରା କାମ ଏବଂ ଅର୍ଥ ମିଳିଥାଏ । ସେହି ଧର୍ମର ପାଳନ ତୁମେ କାହିଁକି କରୁନାହଁ । ମାତ୍ର ମୋ' କଥା କେହି ହେଲେ ଶୁଣୁ ନାହାଁନ୍ତି ।

ଧର୍ମପୂର୍ବକ ଗୃହୀତ କାମ-ଅର୍ଥ ମଧ୍ୟ ଯଶଶ୍ରୀ ଏବଂ ସ୍ୱର୍ଗ ଦେଇଥାନ୍ତି । ହେଥିରୁ ପରମ ଶାନ୍ତି ମିଳେ । ପରମ ଶାନ୍ତି ତ ଶ୍ରୀକୃଷ୍ଣଙ୍କ ସାଙ୍ଗରେ କୌଣସି ନା କୌଣସି ସମ୍ବନ୍ଧ ସ୍ଥାପିତ ହେଲେ ଯାଇଁ ତାଙ୍କୁ ପ୍ରେମ ଦେଇ ନଜର କରିବାପରେ ଯାଇ ମିଳେ । 'ଶ୍ରୀକୃଷ୍ଣ ମୋର' ଏଇ ଭାବନାଟି ଜାଗିଲେ ଆଉ ତାଙ୍କ ଲାଗି ସବୁ କାମ ହେଲେ ସମୁଦ୍ର ପାରି ହୋଇଗଲି ବୋଲି ଜାଣ ।

ନନ୍ଦରାଣୀଙ୍କର ପୁଅ ନଥିଲା । ବୃଦ୍ଧାବସ୍ଥା ଆସି ହେଲା । ସେ ପୁଅଟିଏ ଚାହୁଁଥିଲେ, ଶେଷକୁ ମିଳିଲା । ପୁଅଟି ବି ଏମିତ ସେମିତ ନୁହେଁ, ସାକ୍ଷାତ୍ ପରମାତ୍ମା ପୁଅ ରୂପରେ ପହଞ୍ଚି ଗଲେ । ସେଇ ମାଆଙ୍କୁ ପୁତ୍ର ସୁଖ ଦେଲେ । କିଏ ତାଙ୍କୁ ସଖା ଭାବରେ ଗ୍ରହଣ କରିନେଲା, କିଏ କାନ୍ତ ବୋଲି ଗ୍ରହଣ କଲା ଆଉ କିଏ ଶତ୍ରୁ ରୂପରେ ତାଙ୍କ କଥା ଭାବି ହେଲା । ଶ୍ରୀକୃଷ୍ଣଙ୍କୁ ଯେ ଯାହା ଭାବ ରଖିଥିଲା ସେ ସେଇଆ ହେଲେ ତା' ଲାଗି, ଆଉ ତାକୁ ପରମ ଆନନ୍ଦ ଦେଲେ । ପୁତନା କହିଲା—'ମୋର ପୁତ ନାହିଁ । ଶ୍ରୀକୃଷ୍ଣ ତୁ ମୋର ପୁଅ ହୋଇ ଯା' । ମୁଁ ତୋତେ ବିଷ ପିଏଇବି ।' ଶ୍ରୀକୃଷ୍ଣ କହିଲେ—'ଭଲକଥା । ସେଇଆ ହେଉ । ମୁଁ ବିଷ ପିଇନେବି ଆଉ ତୋତେ ବି ମାତାର ଗତି ପ୍ରଦାନ କରିବି । ସେ ସେଇଆ କଲେ ମଧ୍ୟ । ପଥରରେ, ମାଟିରେ, ଧାତୁରେ ଯେଉଁଥିରେ ବି ହେଉ ଶ୍ରୀକୃଷ୍ଣଙ୍କର ମୂର୍ତ୍ତି ତିଆରି କରି ତାକୁ ଭଲ ପାଅ ବା ମୂର୍ତ୍ତି ତିଆରି ନ କରି ସବୁରି ଘରେ . ପିଲା ତ ଅଛନ୍ତି ସେଇମାନଙ୍କଠାରେ ଶ୍ରୀକୃଷ୍ଣଙ୍କ ଭାବନା ରଖି ଖୁଆଇ ପିଆଇ ସେବା କର । ସେବା ଯେମିତି ହେଉ ଖାଲି ଭାବନାଟି ବଦଳି ଯାଉ । ଶ୍ରୀ ବଲ୍ଲଭାଚାର୍ଯ୍ୟଙ୍କର ପୁଅ ଶ୍ରୀ ବିଠ୍ଠଳନାଥଙ୍କର ସାତୋଟି ପୁଅ ଥିଲେ । ସେ ସବୁରି ଭିତରେ ପାଞ୍ଚବର୍ଷ ପର୍ଯ୍ୟନ୍ତ ଭଗବତ୍ ଭାବନା ରଖିଥିଲେ । ସେଇ ଭାବରେ ସେ ସେମାନଙ୍କୁ ଖୁଆଇ ପିଆଇ ଆନନ୍ଦ ଲାଭ କରୁଥିଲେ । ଏହା ବି ସୁଖଦ ଉପାସନା । ଶ୍ରୀକୃଷ୍ଣଙ୍କୁ ଯେ ତିଳ ପ୍ରମାଣ ଭଲପାଏ ସେ ତାକୁ ପର୍ବତ ପ୍ରମାଣ ଭଲ ପାଆନ୍ତି । ଶ୍ରୀକୃଷ୍ଣଙ୍କର ଲୀଳା ଚିନ୍ତନ ହିଁ ଭବ ବନ୍ଧନରୁ ମୁକ୍ତ ହେବାର ଏକମାତ୍ର ଔଷଧ । ଯାହାର ଶ୍ରୀକୃଷ୍ଣ ସାଙ୍ଗରେ ଯାଇ ସମ୍ବନ୍ଧ ଯୋଡ଼ି ହୋଇ ଯାଏ, ତା'ର ଜଗତ ସହିତ ବନ୍ଧନ ଆପେ ଛିଣ୍ଡି ଯାଏ । ଶ୍ରୀକୃଷ୍ଣଙ୍କ ସାଙ୍ଗରେ ସମ୍ବନ୍ଧ ଯୋଡ଼ିବା ସହଜ କଥାଟିଏ ନୁହେଁ । ମର୍ତ୍ତ୍ୟଧର୍ମୀ ମଣିଷ ଅମର୍ତ୍ତ୍ୟ ସାଙ୍ଗରେ ସମ୍ବନ୍ଧ ପୁଣି ଯୋଡ଼ିବ କେମିତି ? ହେ କୃପାନାଥ ! ଆମକୁ କୃପା କର, ଏ କାଗଜ କାଳୀ, ଛବି, ବ୍ଲକ, ଛପା ଆଦିରୁ ମୁକ୍ତ କରି ନଜର କର ! ହେ ଶ୍ୟାମ ସୁନ୍ଦର ! ତମର ବଂଶୀ ତ ନିତ୍ୟ । ସେ ତ ନିରନ୍ତର ବାଜୁଥାଏ । ତା'ର ଧ୍ୱନି ଆମକୁ ଶୁଣେଇ ଦିଅ । ତମର ନୂପୁରତ ନିତ୍ୟ ଚିନ୍ମୟ । ତା'ର ରୁଣୁଝୁଣୁ ଶବ୍ଦ ଆମ

କାନରେ ପଡ଼ୁ । ତମେ ତ ନିତ୍ୟ ଲବଣୀ ଚୋରି କର, ସେଥିରୁ ମେଞ୍ଚାଏ ଲୁଚେଇ କରି ହେଲେ ଆମ ଆଡ଼କୁ ବଢ଼େଇ ଦିଅ । ତମେ ନିତ ଦୁଧ ଖାଉଛ, କିଛି ଆମକୁ ବି ପିଆଇ ଦିଅ । ହେ ନନ୍ଦନନ୍ଦନ, ଯଶୋଦା ଜୀବନଧନ, ହେ ସଖାଙ୍କର ସର୍ବସ୍ୱ, ହେ ବ୍ରଜବନିତାଙ୍କର ପ୍ରାଣ, ହେ ରାଧାରମଣ, ଲବଣୀ ଚୋର, କଠୋର ହୁଅ ନାହିଁ । ନା ମୋର ଘର ଅଛି ନା ଦ୍ୱାର, କେହି ବି ନିଜର ବୋଲି କହିବାକୁ ନାହିଁ । ତମେ ହିଁ ଆପଣାର କରିନିଅ କିଛି କରି ଆଉ ଏ ଜଗତ ଜାଲରୁ ମୁକ୍ତ ଦିଅ । ହେ ମଦନମୋହନ !

## ଛପ୍ପୟ

ହେ ନନ୍ଦନନ୍ଦନ ! ଯଶୁମତି ସୁତ ! ଅବ ତୋ ଅପନାଓ ।
ଭଟକ୍ୟୋ ଜଗ ମେଁ ବହୁତ ଦୁଃଖିତ ! ଅବ ମତ ଭଟକାଓ ॥
ମେରେ ନହିଁ ପିତୁ ମାତୁ ସଖା ସଂବନ୍ଧୀ ପ୍ୟାରେ ।
ଭୟୋ ତିରସ୍କୃତ ଫିରୁଁ ତିହାରେ ଆୟୋ ଦ୍ୱାରେ ॥
ଅବ ଭରମାଓ ନହିଁ ଅଧିକ, ଅପନାଓ ମମ କର ଗହୋ ।
ତୁ ମେରେ ନିଜ ଲଗତ ହୌ, ଅପନେ ଶ୍ରୀମୁଖ ସେ କହୋ ॥

●

ସଙ୍କୀର୍ତ୍ତନ ଭବନ,
ପ୍ରତିଷ୍ଠାନପୁର ଝୂସୀ (ପ୍ରୟାଗ)
ମାର୍ଗଶୀର, କୃ ୧୬-୨୦୦୭ ସ

ତୁମର
ପ୍ରଭୁଦତ୍ତ

# ରାମ-ଶ୍ୟାମ ନାମକରଣ

ଗର୍ଗଃ ପୁରୋହିତୋ ରାଜନ୍ ! ଯଦୁନାଂ ସୁମହାତପାଃ ।
ବ୍ରଜଂ ଜଗାମ ନନ୍ଦସ୍ୟ ବସୁଦେବ ପ୍ରଚୋଦିତଃ ॥

(ଶ୍ରୀ ଭା ୧୦ ସ୍କ, ୮ ଅ, ୧ ଶ୍ଳୋକ)

## ଛପ୍‌ପୟ

ଏକ ଦିବସ ବସୁଦେବ ପୁରୋହିତ ଗର୍ଗ ବୁଲାୟେ ।
କରି ପୂଜା ସତ୍‌କାର ବିନୟଯୁତ ବଚନ ସୁନାୟେ ॥
ବୋଲେ—ଗୁରୁବର ! ଆଜ ଆପ ଗୋକୁଲ କୂଁ ଜାବେଁ ।
ତହଁ ଦ୍ୱୈ ବାଲକ ବସହିଁ ନାମ ତିନକେ ଧରି ଆବେଁ ॥
ଶୌରି ବଚନ ସୁନି ଗର୍ଗ ମୁନି, ଅତି ହୀ ଆନନ୍ଦିତ ଭୟେ ।
ପୋଥୀ ପତ୍ରା ବାଧିକେ, ତୁରତ ନନ୍ଦ ବ୍ରଜମହଁ ଗୟେ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ମହା ତପସ୍ୱୀ ଗର୍ଗ ଯାଦବମାନଙ୍କର କୁଳ ପୁରୋହିତ ଥିଲେ । ସେ ବସୁଦେବଙ୍କ ଦ୍ୱାରା ପ୍ରେରିତ ହୋଇ ନନ୍ଦଙ୍କର ବ୍ରଜ ଧାମକୁ ଗଲେ ।

ସମସ୍ତ ହିତ କାର୍ଯ୍ୟରେ ଯେ ଆଗେ ଆଗେ ଥାଏ, ସେହି ପୁରୋହିତ । ବେଦ ମାନୁଥିବା ବର୍ଣ୍ଣାଶ୍ରମୀମାନଙ୍କର ପୁରୋହିତ ବିନା କାମ ହୋଇ ପାରେ ନାହିଁ । କେବଳ ଏହା ନୁହଁ, ଗୋଟାଏ ପ୍ରାଚୀନ ରୀତି ମଧ୍ୟ ରହିଛି । ଯଜମାନ ଆପଣାର କୁଳ ପୁରୋହିତଙ୍କର କେହି ଜଣେ ବି ଥାଆନ୍ତି ଯଦି ଅନ୍ୟ ପୁରୋହିତ ବରଣ କରନ୍ତି ନାହିଁ । ଅନ୍ୟ କାହାର ହାତରେ ଧାର୍ମିକ କୃତ୍ୟ କରାଇବା ଉଚିତ ନୁହେଁ । ମହାରାଜ ମରୁତ୍ତ ଏବଂ ଦେବଗୁରୁ ବୃହସ୍ପତିଙ୍କର କଥୋପକଥନରୁ ଏକଥା ସ୍ପଷ୍ଟ ହୋଇଯାଏ । ଆପଣାର କୁଳ ପୁରୋହିତଙ୍କର ସନ୍ତାନଯୋଗ୍ୟ ହୋଇ ନ ଥିଲେ ମଧ୍ୟ, ଯଜମାନ ତାଙ୍କୁ ମାନିବା ଉଚିତ । ନିଜର ଅଯୋଗ୍ୟ ପୁଅ ଥିଲେ କେହି କ'ଣ କେବେହେଲେ ଛାଡ଼ିଦିଏ ? ଯଜମାନ ଏବଂ ପୁରୋହିତଙ୍କ ମଧ୍ୟରେ ସେହି କୌଟୁମ୍ବିକ ସମ୍ବନ୍ଧ ରହିଛି । ବୈଦିକ କର୍ମ ଉପରୁ ଧୀରେ ଧୀରେ ଅସ୍ଥା ତୁଟି ଯାଉଥିବା ହେତୁ ଏ ପ୍ରଥା ମଧ୍ୟ ଲୋପ ପାଇ ଆସୁଛି । ଏ ସବୁ କାଳର ପ୍ରଭାବ, ଯୁଗର ଧର୍ମ; ଏଥିରେ କାହାର କୌଣସି ଦୋଷ ନାହିଁ ।

ଶ୍ରୀ ସୂତ କହୁଛନ୍ତି—"ମୁନିଗଣ ! ବସୁଦେବଙ୍କର ଶରୀର ତ ମଥୁରାରେ ରହୁଥିଲା ମାତ୍ର ମନ ସବୁବେଳେ ଗୋକୁଳରେ ପଡ଼ି ରହୁଥିଲା । ସେ କେବଳ ଦିନ ଗଣୁଥିଲେ, ମୋ' ପୁଅକୁ ଆଜି କେତେ ଦିନ ହେଲା । ଯେଉଁଦିନ ଦଶଦିନ ପୂରି ହେଲା ସେଦିନ ଭାବିଲେ, ପୁଅର ନାମକରଣ ହେବା କଥା । ମାତ୍ର ସେତେବେଳେ ନାନା ଉପଦ୍ରବ ଚାଲିଥାଏ । ବସୁଦେବ ନୀରବ ରହିଲେ । ଭାବି ହେଉଥାନ୍ତି, ପୁଅର ନାମକରଣ ହେବା କଥା । କେମିତି ହେବ । ଆମର କୁଳପୁରୋହିତଙ୍କ ହାତରେ ହେବା କଥା । ଏଭଳି ବିଚାର କରୁଥିବା ସମୟରେ ଦିନେ ବାଟରେ ମହାମୁନି ଗର୍ଗଙ୍କ ସାଙ୍ଗରେ ଭେଟ ହେଲା । ବସୁଦେବ ଅତ୍ୟନ୍ତ ଶ୍ରଦ୍ଧା ଭକ୍ତି ସହକାରେ ତାଙ୍କର ପାଦ ପୂଜାକଲେ । କହିଲେ 'ଭଗବନ, ଆପଣଙ୍କର ଦର୍ଶନ ପର୍ଯ୍ୟନ୍ତ ଏବେ ମିଳୁ ନାହିଁ । ସବୁ ସ୍ୱଜନମାନେ ଆମକୁ ଛାଡ଼ି ଦେଇ ଅଛନ୍ତି, ଆପଣ ମଧ୍ୟ ଛାଡ଼ି ଦେଲେ ଆମେ କପରି ଜୀବିତ ରହିବୁ !"

ଗର୍ଗ କହିଲେ—' ହେ ବସୁଦେବ ! ଆପଣ କଭଳି କଥା କହୁଛନ୍ତି । ଆପଣ ସବୁ ପରିସ୍ଥିତି ଜାଣନ୍ତି । ମୋ' ମୁହଁରେ କୁହେଇବାକୁ କାହିଁକି ଚାହୁଁଛନ୍ତି ! ଆଜିକାଲି ଏହିଭଳି ସାଧାରଣ ଦେଖା ସାକ୍ଷାତର ମଧ୍ୟ କେଜାଣି କିଏ କ'ଣ ଅର୍ଥ କରିବ । ସବୁଠାରେ ତ ଗୁପ୍ତଚର ଭରି ରହିଛନ୍ତି ।"

ବସୁଦେବ କହିଲେ—"ସତ କଥା । ପ୍ରଭୁ, କାଲି ହେଲେ କେତେବେଳେ ଦୟାକରି ଦର୍ଶନ ଦେବେ ।"

ଶ୍ରୀ ଗର୍ଗ ଏଣିକି ତେଣିକି ଚାହିଁ ଧୀରେ ଧୀରେ କହିଲେ—"ଠିକ୍ ଅଛି ମୁଁ କାଲି ରାତରେ ଆସିବି ।"

ବସୁଦେବ ବିନୟ ସହକାରେ କହିଲେ—"ଦେଖନ୍ତୁ ଯେମିତି ଆପଣ ଭୁଲି ନ ଯାଆନ୍ତି ।"

ଦୃଢ଼ତା ସହକାରେ ଗର୍ଗ କହିଲେ—"ରାଜନ୍ ! ତାହା କ'ଣ ସମ୍ଭବ ! ମୁଁ ନିଶ୍ଚୟ ଆସିବି ।"

ଏହା କହି ଗର୍ଗ ଚାଲିଗଲେ । ବସୁଦେବ ଆପଣା ଗୃହକୁ ଫେରିଆସିଲେ । ତା'ପର ଦିନ ରାତରେ ଗର୍ଗ ଏକୁଟିଆ ଆସି ପହଞ୍ଚିଲେ । ବସୁଦେବ ପୂର୍ବ ପଦ୍ଧତି ବିଧିବତ୍ ଭାବରେ ତାଙ୍କର ପାଦ ପୂଜା କରି କହିଲେ—"ପ୍ରଭୁ ! ଆପଣ ତ ସର୍ବଜ୍ଞ ପୁରୁଷ । ଜ୍ୟୋତିଷ ଶାସ୍ତ୍ରର ପ୍ରଣେତା । ଆପଣଙ୍କୁ ବିଦିତ ଭାବରେ ଜଣା ଯେ ମୋର ପତ୍ନୀ ରୋହିଣୀ ବ୍ରଜଧାମରେ ନନ୍ଦ ମହାରାଜଙ୍କ ଘରେ ଅଛନ୍ତି । ତାଙ୍କର ପୁଅଟିଏ, ନନ୍ଦଙ୍କର ବି ପୁଅଟିଏ । ଆପଣ ସେ ଦୁହିଁଙ୍କର ନାମ କରଣ ସଂସ୍କାର କରି ଆସନ୍ତୁ ।"

ଶ୍ରୀ ଗର୍ଗ କହିଲେ—"ହେ ବସୁଦେବ ! ଯିବାରେ ମୋର କୌଣସି ଆପତ୍ତି ନାହିଁ । ମାତ୍ର ମୁଁ ବ୍ରଜକୁ ଗଲେ ନାନା ଗଣ୍ଡଗୋଳ ହେବ । କଂସର ଗୁପ୍ତଚର ସବୁଠାରେ ଅଛନ୍ତି । ନନ୍ଦ ଭବନରେ ମହାଆଡ଼ମ୍ବରରେ ଉତ୍ସବ ହେବ । ତେଣୁ ସମସ୍ତେ ଜାଣିବେ । କଂସ ମୁଁ ସେଠାକୁ କାହିଁକି ଯାଇଥିଲି ବୋଲି ନିଶ୍ଚୟ ପଚାରିବ । ଆପଣଙ୍କୁ ମଧ୍ୟ ସନ୍ଦେହ କରିପାରେ । ସେପରି ପରିସ୍ଥିତିରେ ଆମ ଉପରେ ନୂଆ ବିପତ୍ତି ପଡ଼ିପାରେ ।"

ଏହା ଶୁଣି ବସୁଦେବ କହିଲେ—'ପ୍ରଭୁ ! ଏକଥା ଆପଣ ବିଚାର କରନ୍ତୁ । ଯଜମାନଙ୍କର ସବୁ କାର୍ଯ୍ୟ କୁଳପୁରୋହିତଙ୍କର ଅଧୀନରେ ହୋଇଥାଏ । କୁଳପୁରୋହିତ ମଧ୍ୟ ଯଜମାନଙ୍କର ପରିବାରର ଜଣେ ସଦସ୍ୟ । ପୁରୋହିତଙ୍କ କୁଳରେ କେହି ନ ଥିଲେ ଯଜମାନ ତାଙ୍କର ଶ୍ରାଦ୍ଧପର୍ଯ୍ୟନ୍ତ କରିପାରିବେ ଏବଂ ସେଥିରେ ତାଙ୍କୁ ତର୍ପଣ ଜଳ ଓ ଶ୍ରାଦ୍ଧାନ୍ନ ମଧ୍ୟ ପ୍ରାପ୍ତ ହେବ । ସେଭଳି ଯଜମାନଙ୍କର କେହି ନ ଥିଲେ ପୁରୋହିତ ମଧ୍ୟ ଶ୍ରାଦ୍ଧ କରିପାରିବେ । ପୁରୋହିତ ଯଜମାନଙ୍କର ସମ୍ବନ୍ଧ ଏହିପରି ଘନିଷ୍ଠ । ଆପଣଙ୍କ ଭଳି ସଙ୍ଗୀ ପୁରୋହିତ ଯଜମାନର ସମ୍ପତ୍ତି ଓ ବିପତ୍ତି ଉଭୟ ସମୟରେ ଯଜମାନଙ୍କ ସାଙ୍ଗରେ ରହିଥାନ୍ତି । ଆପଣଙ୍କ ବ୍ୟତୀତ ଯଜମାନର ପୁଅମାନଙ୍କର ନାମକରଣ ଆଉ କିଏ ବା କରିବ ?'

ମହାମୁନି ଗର୍ଗ କହିଲେ—'ମୁଁ ସେ ସବୁକଥା ଜାଣେ । ମୋ' ମନରେ ବି ଆପଣଙ୍କ ପାଇଁ ଅଶେଷ ଶ୍ରଦ୍ଧା ରହିଛି । ଠିକ୍ କଥା । ମୁଁ କାଲି ଯିବି । ମାତ୍ର ଆପଣ ଏ ବିଷୟରେ କାହାକୁ କିଛି ହେଲେ କହିବେ ନାହିଁ ।'

ବସୁଦେବ କହିଲେ—'ମୋର କ'ଣ ଦରକାର ଯେ ମୁଁ କାହାକୁ କ'ଣ କହିବାକୁ ଯିବି । ଆପଣ ସାବଧାନ ରହିବେ ଓ ନନ୍ଦ ରାଜାଙ୍କୁ ସବୁ କଥା ବୁଝେଇ କହିବେ ।'

ଗର୍ଗ ସେ ସବୁ କଥା ସ୍ୱୀକାର କଲେ । ବସୁଦେବଙ୍କଠାରୁ ବିଦାହୋଇ ଆସି ରାତିରେ ଘରେ ବିଶ୍ରାମ କଲେ । ସାରାରାତି ଭାବି ହେଲେ—'ମୋର ଅହୋଭାଗ୍ୟ ଯେ କାଲି ସକାଳେ ଭଗବାନଙ୍କର ଦର୍ଶନ ମିଳିବ । ତାଙ୍କର କି ନାମକରଣ ! ତାଙ୍କର ତ ଅନେକ ନାଆଁ । ଏଇ ଆଳରେ ମୋତେ ତାଙ୍କର ଦର୍ଶନ ମିଳିବ । ଏଇଆ ଭାବି ଭାବି ରାତି ତିନି ପ୍ରହର ବିତିଗଲା । ରାତିରେ ହିଁ ସେ କମଣ୍ଡଳୁ ଧରି ଧୋତି ଗାମୁଛା କାଖରେ ଯାଇ ଯମୁନାର ଗୋକୁଳ ଘାଟରେ ଉପସ୍ଥିତ ହେଲେ । କିଏ ପଚାରିଲେ କହିଦେବେ ଆଜି ଶୌଚ ସ୍ନାନାଦି ପାଇଁ ଯମୁନା ଯିବାକୁ ଇଚ୍ଛା ହେଲା । ମାତ୍ର ରାତିରେ ତାଙ୍କର କାହା ସହିତ ଭେଟ ହୋଇ ନ ଥିଲା । ସେ ସୂର୍ଯ୍ୟୋଦୟ ପୂର୍ବରୁ ଯମୁନା ପାରି ହୋଇ ଗୋକୁଳରେ ପହଞ୍ଚିଗଲେ ।

ଗୋଷ୍ଠର ଗାଈମାନଙ୍କୁ ଚରେଇବାକୁ ଗୋପାଳ ବାଳକମାନେ ନେଇ ଯାଉଥିଲେ । ଦଶ ପାଞ୍ଚ ଜଣର ଅନେକ ଗୋବତ୍ସ ଗୋଷ୍ଠ ମଝିରେ ନାଚକୁଦ ଖେଳୁଥିଲେ । ନନ୍ଦ ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ ଶୌଚାଦି ସାରି ଗୋଷ୍ଠର ଗୋଟାଏ କୋଣରେ ଶାଳଗ୍ରାମ ଭଗବାନଙ୍କର ପୂଜା କରୁଥିଲେ । ସେ ହଠାତ୍ ସାମନାରେ ଆସୁଥିବା ମହାମୁନି ଗର୍ଗଙ୍କୁ ଦେଖିଲେ । ଦେଖିବା ମାତ୍ରକେ ମହାରାଜ ନନ୍ଦ ଅତ୍ୟନ୍ତ ଆନନ୍ଦିତ ହେଲେ । ଉଠି ଠିଆ ହେଲେ । ଆଜି ସେ ଅତି ପ୍ରସନ୍ନ ମନେ ହେଉଥିଲେ । ସେ ଏଭଳି ମନେ କଲେ ଯେପରି ସ୍ୱୟଂ ଭଗବାନ ବିଷ୍ଣୁ ବ୍ରାହ୍ମଣ ରୂପରେ ଆସି ଉପସ୍ଥିତ ହୋଇଛନ୍ତି । ତାଙ୍କୁ କୃତାର୍ଥ କରି ଦେବାକୁ ମୁଁ ଯେଉଁ ଭଗବାନ ଶାଳଗ୍ରାମଙ୍କର ପୂଜା କରୁଥିଲି ସେ ହିଁ ସାକାର ସାକ୍ଷାତ୍ ଓ ସଜୀବ ହୋଇ ଗର୍ଗ ରୂପରେ ଆସି ପହଞ୍ଚିଛନ୍ତି । ସେ ଅତ୍ୟନ୍ତ ଭକ୍ତି ସହକାରେ ମହାମୁନିଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ବସିବାକୁ ଆସନ ଦେଲେ । ପୂଜା ନିମନ୍ତେ ରହିଥିବା ସାମଗ୍ରୀରେ ସେ ତାଙ୍କର ବିଷ୍ଣୁପୂଜନ ଭଳି ପୂଜା କଲେ ।

ମହାମୁନି ଗର୍ଗ ସ୍ୱଚ୍ଛ ଚିତ୍ତରେ ନନ୍ଦଙ୍କର ଶାସ୍ତ୍ରୀୟ ପୂଜା ବିଧିବତ୍ ସ୍ୱୀକାର କଲେ । ତା'ପରେ ନନ୍ଦ ମହାରାଜ ଅତ୍ୟନ୍ତ ମଧୁର ଭାଷାରେ ମୁନିଙ୍କର ପ୍ରଶଂସା କରି କହିଲେ—'ପ୍ରଭୁ ! ମୁଁ ଆଜି ଧନ୍ୟ ହେଲି, କୃତାର୍ଥ ହେଲି, ଯେହେତୁ ମୋତେ ଆଜି ଆପଣଙ୍କର ସେବାର ଅବସର ମିଳିଲା । ଆପଣ ତ ଆପ୍ତକାମ । ଆପଣଙ୍କର କି ସେବା ମୁଁ କରି ପାରିବି । ଆପଣଙ୍କର ସେଭଳି ସେବାର ଆବଶ୍ୟକତା ମଧ୍ୟ ନାହିଁ । ଆମ ଭଳି ଦୀନ ଚିତ୍ତ ଗୃହୀମାନଙ୍କର ଗୃହରେ ପଦରଜ ପକେଇ ତାହା ପବିତ୍ର କରିବା ମୂଳରେ ଆପଣଙ୍କର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ନିହିତ ହୋଇ ରହି ନ ଥାଏ । ଆମେମାନେ ସଂସାରର ନାନା ସମସ୍ୟାରେ ବୁଡ଼ିରହି ଦୁର୍ବଳ ଚିତ୍ତ କୃପଣ ହୋଇଯାଉ ଏବଂ ଆପଣ ଆମ ଭଳି ଶୋକ ସନ୍ତପ୍ତମାନଙ୍କୁ ଶାନ୍ତିର ପଥ ଦେଖାଇବାକୁ, ଆମର କଲ୍ୟାଣ କରିବାକୁ ବିଚରଣ କରନ୍ତି ।

ଗର୍ଗ କହିଲେ—'ରାଜନ୍ ! ଆପଣ ଶିଷ୍ଟାଚାରବଶତଃ ଏଭଳି କଥା କହୁଛନ୍ତି । ଆମେ କେଉଁ କଥାକୁ ଯୋଗ୍ୟ ! ଆପଣ କିନ୍ତୁ ଧନ୍ୟ ଯେ ନାରାୟଣଙ୍କର ଭକ୍ତ ହେତୁ ଏଠାରେ ହିଁ ବୈକୁଣ୍ଠ ସୁଖଭୋଗ କରୁଛନ୍ତି ।'

ନନ୍ଦରାଣୀ ବିନୀତ ଭାବରେ କହିଲେ—'ପ୍ରଭୁ ! ଏଭଳି କଥା ଆପଣ କହିବା ଉଚିତ ନୁହେଁ । ଅଧ୍ୟୟନ କରି ନ ଥିବା ସାଧାରଣ ବ୍ରାହ୍ମଣ ମଧ୍ୟ ପୂଜନୀୟ । ଆପଣ ତ ସର୍ବଜ୍ଞ ପୁରୁଷ । ଇନ୍ଦ୍ରିୟମାନଙ୍କ କ୍ଷମତା ବାହାରେ ଯେଉଁ ଅତୀନ୍ଦ୍ରିୟ ଜ୍ଞାନ ଅଛି, ଯାହାଦ୍ୱାରା ଭୂତ ଭବିଷ୍ୟତର ଜ୍ଞାନ ପ୍ରତ୍ୟକ୍ଷ ଭାବରେ ଜାଣିହୁଏ ଆପଣ ତା'ର ଜ୍ଞାତା ଏବଂ ଆପଣ ସେହି ଜ୍ୟୋତିଷ ଶାସ୍ତ୍ରର ରଚନା କରିଛନ୍ତି । ଆପଣ ସମସ୍ତ ବ୍ରହ୍ମବାଦୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ମୁଁ ଆପଣଙ୍କର ପଦବନ୍ଦନା କରୁଛି ।'

ଶ୍ରୀ ଗର୍ଗ କହିଲେ—'ଗୋପେନ୍ଦ୍ର ! କହନ୍ତୁ ମୁଁ ଆପଣଙ୍କର କେଉଁ କାର୍ଯ୍ୟ କରି ପାରିବି ।'

ନନ୍ଦ କହିଲେ—'ମୋର ଦୁଇଟି ବାଳକ । ସେମାନଙ୍କ ମଧ୍ୟରୁ ଜଣେ ପନ୍ଦର ମାସ ଅଛି ଜଣଙ୍କର ଆଜି ଶନ୍ତେ ଦିନ ପୂର୍ଣ ହେଲା । ଆପଣ ସେମାନଙ୍କର ନାମକରଣ ସଂସ୍କାର କରି ଦିଅନ୍ତୁ ।'

ଶ୍ରୀ ଗର୍ଗ କହିଲେ—'ରାଜନ୍ ! ନାମକରଣ ସଂସ୍କାର ଆପଣଙ୍କର କୁଳପୁରୋହିତ କରିବେ କିନା ? ଯେ ଯେଉଁ କୁଳର ଗୁରୁ, ସେ ହିଁ ସେହି କୁଳର ସଂସ୍କାର କରିଥାଏ । ମୁଁ ତ ଆପଣଙ୍କର କୁଳଗୁରୁ ନୁହେଁ ।'

ନନ୍ଦ ଦୃଢ଼ତା ସହକାରେ କହିଲେ—'ପ୍ରଭୁ ! ବ୍ରାହ୍ମଣ ତ ମାତାର ଉଦରରୁ ଗୁରୁ ହୋଇ ଜନ୍ମଗ୍ରହଣ କରିଥାଏ । ସେ କୌଣସି ବ୍ୟକ୍ତି ବିଶେଷର ଗୁରୁ ନୁହେଁ । ବରଂ ସେ ଜନ୍ମ ସମୟରୁ ହିଁ ସମସ୍ତଙ୍କର ଗୁରୁ । ସେଇଅନୁସାରେ ଆପଣ ମଧ୍ୟ ମୋର ଗୁରୁ । ଆପଣ ହିଁ ବାଳକମାନଙ୍କର ନାମକରଣ ସଂସ୍କାର କରନ୍ତୁ ।'

ଶ୍ରୀ ଗର୍ଗ ଏହାର ଉତ୍ତରରେ କହିଲେ—'ଏହା କରିବାକୁ ମୁଁ କୌଣସି ଆପତ୍ତି କରୁନାହିଁ । ମାତ୍ର ବୁଦ୍ଧିମାନ ଲୋକ ପକ୍ଷରେ ଆଗପଛ ସବୁ କଥା ବିଚାର କରିନେବା ଉଚିତ । ଆପଣ ତ ଜାଣନ୍ତି ଯେ ମୁଁ ଯାଦବମାନଙ୍କର କୁଳପୁରୋହିତ । ମୁଁ ଆବହମାନ-କାଳରୁ ଯଦୁକୁଳାଚାର୍ଯ୍ୟ ନାମରେ ପ୍ରସିଦ୍ଧ । ଯଦି ମୁଁ ଆପଣଙ୍କର ପୁତ୍ରର ସଂସ୍କାର କରିବି ତେବେ ସେ ଦେବକୀ ଗର୍ଭରୁ ଜନ୍ମ ହୋଇଛି ବୋଲି ସମସ୍ତେ କହିବେ । ବର୍ତ୍ତମାନ ତ ଲୋକଙ୍କ ମନରେ ସନ୍ଦେହ ଜାତ ହୋଇ ସାରିଛି । କଂସକୁ ବି ତ ଆପଣ ଭଲ କରି ଜାଣନ୍ତି, ସେ କେଉଁଭଳି ଦୁଷ୍ଟ ବୁଦ୍ଧି । ଆଜିକାଲି ସେ ସବୁବେଳେ ଶଙ୍କା କରୁଛି । ପ୍ରତ୍ୟେକ କଥାରେ ସେ ରହସ୍ୟ ଖୋଜୁଛି । ଏକଥା ମଧ୍ୟ ସମସ୍ତଙ୍କୁ ଜଣା ଯେ ଆପଣଙ୍କର ଓ ବସୁଦେବଙ୍କ ମଧ୍ୟରେ ପ୍ରଗାଢ଼ ମିତ୍ରତା ରହିଛି । କଂସକୁ ମଧ୍ୟ ଏକଥା ଅଜଣା ନୁହଁ । ଦେବବାଣୀର କଥନ ଅନୁସାରେ ସେ ଏହା ମଧ୍ୟ ଜାଣେ ଯେ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ କେବେହେଲେ କନ୍ୟା ହୋଇ ପାରିବ ନାହିଁ । ମୁଁ ଆପଣଙ୍କ ପୁତ୍ରର ନାମକରଣ କରିବି ଯଦି, ବ୍ରଜରେ ଉତ୍ସବ ହେବ, ଲୋକେ ଜାଣିବେ । କଂସକୁ ମଧ୍ୟ ଏକଥା ଅଗୋଚରେ ରହିବ ନାହିଁ । ତା'ପରେ କଂସର ତିଳେମାତ୍ର ସନ୍ଦେହ ରହିବ ନାହିଁ ଯେ ଏ ହିଁ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ । ଆପଣଙ୍କ ଉପରେ ମଧ୍ୟ ବିପତ୍ତି ପଡ଼ିବ, ବସୁଦେବ ମଧ୍ୟ ସେଥିରୁ ମୁକ୍ତ ରହି ପାରିବେ ନାହିଁ । ସେ ତା'ପରେ ଆପଣଙ୍କର ପିଲାମାନଙ୍କୁ ମାରି ପକେଇବ । ଗାଈମାନଙ୍କୁ ଛଡ଼େଇ ନେବ ଏବଂ ଆପଣଙ୍କୁ ମଧ୍ୟ ରାଜ୍ୟରୁ ବାହାର କରିଦେବ । ମୁଁ ଏ ସଂସ୍କାର କଲେ ଏତେ ସବୁ ଅନର୍ଥର ସମ୍ଭାବନା ରହିଛି ।'

ନନ୍ଦ କହିଲେ—'ପ୍ରଭୁ ! ଆମର ଏତେ ଉତ୍ସବରେ କ ପ୍ରୟୋଜନ ? ଆମେ ଏତେ ଆଡ଼ମ୍ବର ବି ଚାହୁଁ ନା । ଲୋକଙ୍କୁ ଜଣାଇବାକୁ ବି ମୁଁ ଚାହୁଁ ନାହିଁ । ଏଥିପାଇଁ ମୁଁ କାହାକୁ ହେଲେ ଡାକିବି ନାହିଁ । ଆପଣ ଆସିଥିବା କଥା କାହାକୁ ବି କହିବି ନାହିଁ । ଘରେ ଏ ସଂସ୍କାର କାର୍ଯ୍ୟ ବି କରାଇବି ନାହିଁ । ମୁଁ ଉଭୟ ବାଳକଙ୍କୁ ସେମାନଙ୍କର ମାତାମାନଙ୍କ ସହିତ ନେଇ ଆସୁଛି । ଆପଣ ସାଧାରଣ ରୀତିରେ ସ୍ୱସ୍ତିବାଚନ ଦ୍ୱିଜାତି ସଂସ୍କାର କରନ୍ତୁ । ଉତ୍ସବ କରିବାକୁ ହେଲେ ଆମେ ପରେ କରିବୁଁ ।'

ଗର୍ଗ କହିଲେ—'ତଥାପି ବି ଜଣେ ଅଧେଙ୍କୁ ହେଲେ ଡାକିବେ ତ ? ଯୋଉ କଥା କ୍ୱଚିତ୍‌କାନକୁ ଛଅକାନ ହୁଏ, ସେଇଠି ବ୍ୟାପିଯାଏ ।'

ନନ୍ଦ ମହାରାଜ କହିଲେ—'ମୁଁ ଜାଣିଚି, ଆପଣ ଜାଣିବେ । ମୁଁ ମୋର ସେବକାରୀମାନଙ୍କୁ ବି କହିବି ନାହିଁ । ଏଠାରେ ହିଁ ଆପଣ ପ୍ରସାଦ କରନ୍ତୁ । ପ୍ରସାଦ ଧାଇ ରାତିରେ ଯିବେ । ନାଆର ବ୍ୟବସ୍ଥା ହୋଇଯିବ । ରାତିରେ ମଥୁରା ଗଲେ କେହି ହେଲେ ଜାଣିବେ ନାହିଁ ।'

ଶ୍ରୀ ସୂତ କହୁଛନ୍ତି—'ହେ ମୁନିଗଣ ! ଗର୍ଗ ମଧ୍ୟ ସେଇ କଥା ହିଁ ଚାହୁଁଥିଲେ । ସେଇ କଥାପାଇଁ ତ ସେ ଆସିଥିଲେ ? ଯେତେବେଳେ ନିଜେ ନନ୍ଦ ଏକଥା ଗୋପନ ରଖିବାକୁ ସ୍ୱୀକାର କଲେ ସେ ମଧ୍ୟ ସମ୍ମତ ହେଲେ । ନନ୍ଦ ପୂଜା ସାମଗ୍ରୀ ନେଇ ଚାଲିଗଲେ ଏବଂ ଗର୍ଗଙ୍କ ଘରେ ନନ୍ଦରାଣୀ ଏବଂ ରୋହିଣୀଙ୍କୁ ନାମକରଣ ନିମନ୍ତେ ପ୍ରସ୍ତୁତ ହେବାକୁ କହିଲେ । ଭିତରେ ଏକାନ୍ତରେ ସେ ଦୁହିଁଙ୍କୁ ବୁଝେଇ କହିଲେ । ଉଭୟ ମାତା ସେ କଥା ଶୁଣି, ଖୁସି ପ୍ରସ୍ତୁତ ହେବାକୁ ଲାଗିଲେ ।'

## ଛପ୍‌ପୟ

ନନ୍ଦ ନହାରେ ଗର୍ଗ ବସ୍ତ୍ରୁ ସମ ପୂଜା କୀନ୍ହୀ ।
କରି ପୂଜା ସ୍ୱୀକାର ହରଷେ ମୁନି ଆଶିଷ ଦୀନ୍ହୀ ॥
ନାମ-କରଣ ସଂସ୍କାର ସୁନତ ବୋ କୀବେ ମୁନିବର ।
ମୁନି ସମଝାୟୋ ନନ୍ଦ ନ ମେରେ କରିବୋ ହିତକର ॥
ବୋଲେ ବ୍ରଜପତି ଜାତ କୁଲ, କେ ଜନ ନହୁଁ ବୁଲବାଉଁ ଗୋ ।
ଗୁପ୍ତ ସକଟେ ଗୋଷ୍ଠମହୁଁ, ନାମ-କରଣ କରାଉଁ ଗୋ ॥

●

# କାନିଆ-କନିଆ

ଏବଂ ସମପ୍ରାର୍ଥିତୋ ବିପ୍ରଃ ସ୍ୱଚିକୀର୍ଷିତମେବ ତତ୍ ।
ଚକାର ନାମକରଣଂ ଗୂଢ଼ୋ ରହସି ବାଲୟୋ ॥

(ଶ୍ରୀ ଭା ୧୦ ସ୍କ, ୮ ଅ, ୧୧ ଶ୍ଳୋକ)

## ଛପ୍ପୟ

ଶ୍ୟାମ ରୋହିଣୀ ତନୟ ରାମକୁଁ ମୈୟା ଯଶୁମତ ।
ବୋଲେ ମୁନିବର ଗର୍ଗ ରୋହିଣୀସୁତ କିହି ବ୍ରଜପତ ॥
ସଙ୍କର୍ଷଣ, ବଲରାମ ନାମଂତେଁ ବୋଲେ ଜାବେଁ ।
ଜେ ଯଶୁମତ ସୁତ ବାସୁଦେବ ହରି କୃଷ୍ଣ କହାବେଁ ॥
ନାରାୟଣ ସମ ତନୟ ତବ, ବ୍ରଜ କୀ ରକ୍ଷା କରିଙ୍ଗେ ।
ହନି ସୁରଦ୍ରୋହୀ ଅସୁର କୁଲ, ଭୂମି-ଭାର-ଭୟ ହରିଙ୍ଗେ ॥

ଶ୍ରୀ ଶୁକଦେବ କହୁଛନ୍ତି—ରାଜନ୍ ! ମହାମୁନି ଗର୍ଗଙ୍କର ଏ ନାମକରଣ ସଂସ୍କାର କରିବା ଥିଲା । ଯେତେବେଳେ ନିଜେ ନନ୍ଦ ଏଭଳି ପ୍ରାର୍ଥନା କଲେ ସେତେବେଳେ ସେ ଏକାନ୍ତରେ ବାଳକମାନଙ୍କର ନାମକରଣ ସଂସ୍କାର କଲେ ।

ନାମ ଦୁଇ ପ୍ରକାର । ଗୋଟାଏ ରାଶି ଏବଂ ଲଗ୍ନର ନାମ । ଅନ୍ୟଟି ଶ୍ରଦ୍ଧା ନାମ । ଏହି ଶ୍ରଦ୍ଧା ନାମଟି ବି ସ୍ନେହ ଡାକରେ ଅଧା ରହିଯାଏ । ଯେଭଳି ଭୋଳାନାଥଟି ଭୋଳି, ମୂଳଚନ୍ଦ ମୂଲ୍ଲୋ, ରାମଚନ୍ଦ୍ର ରାମୁ, ଶମ୍ଭୁଦତ୍ତ ଶମ୍ଭୁ । ମାତ୍ର ଏଇ ଅଧା ନାଆଁଟି ଡାକରେ ଯେଉଁ ସ୍ନେହଭାବଟି ମିଶି ରହିଥାଏ ତାହା ଉପାଧି ବିଭୂଷିତ ଶିଷ୍ଟାଚାରଯୁକ୍ତ ସମ୍ବୋଧନରେ କୋଉଠି ମିଳିବ ! ନାଥୂରାମ ନାଆଁରେ ଜଣେ ପଣ୍ଡିତ ଥିଲେ । ତାଙ୍କର ମାଆଙ୍କର ବୟସ ପ୍ରାୟ ଶହେ ବର୍ଷ । ପଣ୍ଡିତ ମହାଶୟ ଜଣେ ପ୍ରତିଷ୍ଠିତ ପଣ୍ଡିତ । ସମସ୍ତେ ତାଙ୍କର ଅତ୍ୟଧିକ ସମ୍ମାନ କରୁଥିଲେ । ଯେତେବେଳେ ତାଙ୍କର ମାତାଙ୍କର ମୃତ୍ୟୁ ହେଲା ସେତେବେଳେ ସେ କଇଁକଇଁ ହୋଇ କାନ୍ଦିବାକୁ ଲାଗିଲେ । ଲୋକେ ବୁଝେଇ କହିଲେ—"ପଣ୍ଡିତ ମହାଶୟ, ଆପଣ ଏତେ ବିଦ୍ୱାନ୍ ! ମାତାଙ୍କର ସମୟ ଆସିଲା ସେ ଚାଲିଗଲେ । ଯାର ଜନ୍ମ ଅଛି ତା'ର ମୃତ୍ୟୁ ମଧ୍ୟ ଅଛି । ଆପଣଙ୍କ ପକ୍ଷରେ ଏଭଳି କାନ୍ଦିବା ଶୋଭା ଦିଏନା ।"

ପଣ୍ଡିତ ମହାଶୟଙ୍କ ହାତ ଧରି କୃଷ୍ଣ ପୋଛୁ ପୋଛୁ କହିଲେ—"ଭାଇ ! ମୁଁ ଏ ସବୁକଥା ଜାଣିଛି । ମା'ଙ୍କର କାଳ ପୂରିଥିଲା ମୋର ମଧ୍ୟ ସାଙ୍ଗେଇ ଆସିଲାଣି । ସମସ୍ତେ ଦିନେନା ଦିନେ ନିଶ୍ଚୟ ମରିବେ । ମୁଁ ମାଆଙ୍କର ମୃତ୍ୟୁପାଇଁ ଦୁଃଖ କରୁନାହିଁ । ଭଲ ହେଲା ସେ ବୃଦ୍ଧାବସ୍ଥାର ଯନ୍ତ୍ରଣାରୁ ମୁକ୍ତିଲାଭ କଲେ । ମୁଁ ସେଇକଥା ଭାବୁଛି ମୋତେ ଏଣିକି ନଥ୍ ବୋଲି ଡାକିବାକୁ କେହି ରହିଲେ ନାହିଁ । 'ନଥ୍' ଶବ୍ଦଟିରେ ଯେତେ ସ୍ନେହ ମମତା ପୂର୍ଣ୍ଣ ହୋଇ ରହିଥିଲା, ମୋ' ନାମର ଆଗପଛରେ ଯେତେସବୁ ଉପାଧି ଲାଗେ ସବୁ ତା' ଆଗରେ ତୁଚ୍ଛ । ମାଆଙ୍କ ମୁହଁରେ ହିଁ ସେଇ ଶବ୍ଦଟି ମଧୁର ଲାଗୁଥିଲା । ଅନ୍ୟ କିଏ ସେଭଳି ଡାକିଲେ ବୋଧହୁଏ ଅପମାନ କଲାଭଳି ଲାଗନ୍ତା ।"

କଥାଟି ସତ ଯେ ଶବ୍ଦରେ କିଛି ନାହିଁ । ସବୁ କିଛି ଭାବ ଉପରେ ନିର୍ଭର କରୁଛି । ଭାବ ହିଁ ଶବ୍ଦକୁ ଅର୍ଥ ଦେଇଥାଏ । କିଏ ଗାଳି ଦେଲେ ଲୋକମାନେ ମରିବା ମାରିବାକୁ ବାହାରି ପଡ଼ନ୍ତି ଅଥଚ ସେଇ ଗାଳି ଶ୍ୱଶୁର ଘରେ ଶାଳୀ ମୁହଁରୁ ଶୁଣିଲେ ମିଶ୍ରିଠାରୁ ମିଠା, ଭଜାଚୁଡ଼ାରୁ ବଢ଼ିଆ ଲାଗିବ ।

ଶ୍ରୀ ସୂତ କହିଚାଲନ୍ତି—"ହେ ମୁନିଗଣ ! ନନ୍ଦ ଘରକୁ ଯାଇ ଯଶୋଦା ମାତାଙ୍କ କାନରେ କ'ଣ କହିଲେ । କ୍ଷଣିକ ମାତ୍ରକେ ସେ ରୋହିଣୀଙ୍କ ପାଖକୁ ଦଉଡ଼ି ଗଲେ । ରୋହିଣୀ ଶୁଣି ପ୍ରସନ୍ନ ହେଲେ । ଦୁହେଁ ପିଲାଙ୍କୁ ଗାଧୋଇ ଦେଲେ । ତେଲ ହଳଦୀ ଲଗେଇ ରୋହିଣୀ କୃଷ୍ଣଙ୍କୁ ଗାଧୋଇ ଦେଲେ । ମୋଟା ମୋଟା କଜଳ ଗାର ଟାଣିଦେଲେ । କା'ର ଦୃଷ୍ଟି ପଡ଼ି ନ ଯାଉ ବୋଲି କପାଳ କୋଣକୁ ରେଖାଏ ଟାଣିଦେଲେ । ହାତ ବଳା ଅଉ ଗୋଡ଼ ବଳାର ଘଙ୍ଗୁରମାନଙ୍କୁ ଖଟା ଲଗେଇ ମାଜିଦେଲେ । ବେକରେ କଣ୍ଠି ଆଉ ବାଘନଖ ଆଦି ପିନ୍ଧେଇ ଦେଲେ, ପୀତାମ୍ବର ପିନ୍ଧେଇ ଦେଲେ, ଫୁଲକରା ପକା ଟୋପି ପିନ୍ଧେଇ ଦେଲେ । କପାଳରେ ଗୋରଚନା ଚିତା ଦେଲେ । କଳା କଳା କୁଞ୍ଚୁକୁଞ୍ଚିଆ ବାଳରେ ତେଲ ଲଗେଇ ସଜାଡ଼ି ଦେଲେ, ଆଉ ଅତି ସ୍ନେହରେ କୋଳକରି ଚୁମା ଦେଲେ । ଏଭଳି ଭାବରେ ବାଳକର ଶୃଙ୍ଗାର କରି ନିଜେ ସେ ଆପଣା ଶୃଙ୍ଗାର କଲେ । ସେ ଭଳି ଯଶୋଦା ବଳରାମଙ୍କୁ ଗାଧୋଇପାଧୋଇ ଦେଇ ସାଜି ଦେଲେ । ଦୁହେଁ ସାଜି ସାଜି ହୋଇ ପିଲାଙ୍କୁ କୋଳରେ ଧରି ପଛ ବାଟ ଦେଇ ଗୋଷ୍ଠକୁ ଚାଲିଗଲେ ।"

ଗର୍ଗ ସେଠାରେ ସବୁକିଛି ସଜଡ଼ା ସଜଡ଼ି କରି ଅପେକ୍ଷା କରିଥିଲେ । ନନ୍ଦ ମହାରାଜ ପୁଣି ସ୍ନାନ କରି ଦେବ ପିତୃଙ୍କର ତର୍ପଣ କଲେ । ସେତେବେଳେ ପୁଅମାନଙ୍କୁ କୋଳରେ ଧରି ନୂପୁର, କଙ୍କଣ, କିଙ୍କିଣୀ ଧ୍ୱନିରେ ଗୋକୁଳ ମୁଖରିତ କରି ସେଠାରେ ଆସି ରୋହିଣୀ ଓ ଯଶୋଦା ପହଞ୍ଚିଲେ । 'ଶ୍ୟାମଳୋହିତ'ଙ୍କର ଶ୍ରୀଅଙ୍ଗରେ ପୀତାମ୍ବର ଶୋଭା ପାଉଥିଲା 'ଧବଳୋଜ୍ଜ୍ୱଳ'ଙ୍କର ଶ୍ରୀଅଙ୍ଗରେ ନୀଳ ପାଟ ବିଦ୍ୟୁତ୍‌ବତ୍ ମନେ ହେଉଥିଲା । ସେହି ଶ୍ୟାମ-ଗୌର ଯୁଗଳଙ୍କୁ ଦେଖି ଗର୍ଗଙ୍କର ସର୍ବାଙ୍ଗରେ ବିଦ୍ୟୁତ୍‌ପ୍ରବାହ ରୋମାଞ୍ଚ ଖେଳି

ଗଲା । ସେ କୌଣସି ଏକ ଅବ୍ୟକ୍ତ ଶକ୍ତିର ପ୍ରେରଣାରେ ଇଚ୍ଛା ନ କରି ମଧ୍ୟ ଆପଣା ଆସନରୁ ଉଠି ଠିଆ ହୋଇପଡ଼ିଲେ । ତାଙ୍କ ଆଖିର ପଲକ ପଡ଼ୁ ନ ଥିଲା । ସେ ବାରମ୍ବାର ଭାବୁଥିଲେ 'ମାଆଙ୍କ କୋଳରୁ ଛଡ଼େଇ ନେଇ ଗ୍ରୁଡରେ ଲଗେଇ ନଅନ୍ତେ କି ? ମୁଣ୍ଡରେ ବସେଇ ଶ୍ରୀଚରଣ ହୃଦୟରେ ଲୁଚେଇ ନଅନ୍ତେ କି ? ଏଭଳି ସେ ନାନା କଥା ଭାବଗଲେ । ହେଲେ ହାତ ପ୍ରଗକୁ ବଢ଼ି ପାଉ ନଥିଲା । ସେତକବେଳେ ମାତାମାନେ ଆସି ଦୁଇ ଶିଶୁଙ୍କୁ ମୁନିଙ୍କର ପାଦ ତଳେ ଗଡ଼େଇ ଦେଲେ । ସେଇ ଶ୍ୟାମ-ଗୌର ଶିଶୁ ଦୁଇଟି ଏଭଳି ମନେହେଲେ ଯେପରି ମାତାମାନେ ମୁନିଙ୍କ ପାଦରେ ଦୁଇଟି ଶ୍ୟାମ ଗୌର କମଳ ଅର୍ପଣ କରିଛନ୍ତି । ଶ୍ୟାମ ହାତ ମୁଠେଇ ଏଣେତେଣେ ଗୁନ୍ଧି ହାତ ହଲଉ ଥିଲେ । ସତେ ଯେମିତି କହୁଥିଲେ ଆଉ ତୁମକୁ କଦାପି ମାୟା ସ୍ପର୍ଶ କରି ପାରିବ ନାହିଁ । ଦୁଇ ବାଳକ ମୂର୍ତ୍ତିମାନ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟଭରା, ଅନନ୍ଦ ଉଲ୍ଲାସ ଦ୍ୱନ୍ଦ୍ୱଶ, ସଚ୍ଚିଦାନନ୍ଦ ଆନନ୍ଦ ଘନ ବିଗ୍ରହମାନଙ୍କ ପରି, ତଥା ମୂର୍ତ୍ତିମନ୍ତ ଭାଗ୍ୟବନ୍ତ ମୁନିଙ୍କୁ ଦେଖାଗଲେ । ସେ ଉଭୟ ବାଳକଙ୍କର ମସ୍ତକରେ ହାତରଖି କହିଲେ—'ସ୍ୱସ୍ତ୍ୟସ୍ତୁ, କଲ୍ୟାଣମସ୍ତୁ ।' ସେ ତ ନିଜେ କଲ୍ୟାଣ ସ୍ୱରୂପ । ମାତାମାନେ ମଧ୍ୟ ମୁନିଙ୍କ ଚରଣରେ ପ୍ରଣାମ କଲେ । ମୁନି ଆଶୀର୍ବାଦ କଲେ । ମାଆମାନେ ପିଲାଙ୍କୁ କୋଳକରି ରହିଲେ ।

ବ୍ରଜରାଜନ ନନ୍ଦ ଯଶୋଦାଙ୍କୁ କହିଲେ—'ଶ୍ରୀ ଗର୍ଗ ଜଣେ ବିଖ୍ୟାତ ଜ୍ୟୋତିଷ । ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ଜ୍ଞାତା ।' ଯଶୋଦା ମନେ ମନେ ଭାବିଲେ—'ଦେଖିବା, ଏ କପରି ନିଦାନଙ୍କ ।' ଏହା ଭାବି ସେ ଗୌର ବାଳକକୁ କୋଳ କରି ନେଲେ, ଶ୍ୟାମଟିକୁ କୋଳ କଲେ ରୋହିଣୀ । ସେମାନେ ଠିଆ ହୋଇ ରହିଥିଲେ ମାତ୍ର ମୁନିଙ୍କର ଆଜ୍ଞାପାଇ ଦୁହେଁ ପୁତ୍ରମାନଙ୍କୁ କୋଳକରି ଆସନରେ ବସିଲେ । ମୁନି ସଂକ୍ଷେପରେ ସଙ୍କଳ୍ପ କରି ଦୀପ, କଳସ, ଶଙ୍ଖ, ଘଣ୍ଟ ତଥା ଗଣେଶଙ୍କର ପୂଜା କରାଇଲେ । ଷୋଡ଼ଶ ଉପଚାରରେ ନବଗ୍ରହଙ୍କର ପୂଜାକରି, ପଞ୍ଚଦେବଙ୍କର ପୂଜା ପରେ ପଞ୍ଜିକା ବାହାର କଲେ । ରୋହିଣୀ ଶ୍ରୀକୃଷ୍ଣଙ୍କୁ ଧରି ପ୍ରଥମେ ବସିଥିଲେ ତାଙ୍କ ପରେ ବଳରାମଙ୍କୁ କୋଳ କରି ଯଶୋଦା ବସିଥିଲେ । ନିୟମ ଅନୁସାରେ ପ୍ରଥମେ ରୋହିଣୀଙ୍କ କୋଳରେ ବସି ରହିଥିବା ବାଳକର ନାମକରଣ ହେବାକଥା । ମାତ୍ର ସର୍ବଜ୍ଞ ଗର୍ଗ ମୁନି ଜାଣିଗଲେ ଯେ ବଡ଼ଠାକୁର ଯଶୋଦାଙ୍କ କୋଳରେ ରହିଛନ୍ତି । ତେଣୁ ସେ ଗୌର ଆଡ଼କୁ ହାତ ବଢ଼େଇଲେ । ପ୍ରଥମେ ବଡ଼ ତା'ପରେ ଶ୍ରେଷ୍ଠର ନାମକରଣ ହେବା ବିଧି । କହିଲେ—'ଯଶୋଦାରାଣୀଙ୍କ କୋଳରେ ଥିବା ରୋହିଣୀଙ୍କର ପୁତ୍ର ଅପାର ଗୁଣହେତୁ ଆତ୍ମୀୟ ସ୍ୱଜନମାନେ ରମିତ ହେବେ । ତେଣୁ ତାଙ୍କର ଗୋଟିଏ ନାମ 'ରାମ' ହେବ । ଜଣେ ପରଶୁ ଧାରଣ କରି ପର୍ଶୁରାମ, ଆଉ ଜଣେ ଦଶରଥଙ୍କର ପୁତ୍ର ଦାଶରଥି ରାମ । ଏମାନଙ୍କୁ ବିଶେଷଣ ଯୁକ୍ତ କଲେ ପୃଥକ୍ ଅର୍ଥର ବୋଧହୁଏ । ଏହାଙ୍କର ଶରୀରେ ଅଶେଷ ବଳ ହେବ, ଏଣୁ ଏ

'ବଳରାମ' ବୋଲାଇବେ । ଭଦ୍ର ସ୍ୱରୂପ ହୋଇଥିବା ହେତୁ ବଳଭଦ୍ର ଏବଂ ବଡ଼ଭାଇ ବଡ଼ଠାକୁର ବୋଲି ମଧ୍ୟ ପରିଚିତ ହେବେ । ସେ ଯାଦବ ଓ ଗୋପ ମଧ୍ୟରେ ବିଭେଦ ସମୟରେ ସଦ୍ଭାବ ସ୍ଥାପନ କରିଇବେ ତେଣୁ ଲୋକେ ତାଙ୍କୁ 'ସଙ୍କର୍ଷଣ' ବୋଲି କହିବେ । ତେବେ ତାଙ୍କର ମୁଖ୍ୟ ନାମ 'ବଳରାମ' ।

ଏହା ଶୁଣି ଯଶୋଦା କୌତୁକ ରହସ୍ୟପୂର୍ଣ୍ଣ ଦୃଷ୍ଟିରେ ରୋହିଣୀଙ୍କୁ ଚାହିଁଲେ, ସତେ ଯେପରି କିଛି ନ କହି ଚାହାଣୀରେ କହିଦେଲେ 'ମୁନିଙ୍କ ସମ୍ମୁଖରେ ଯାହା ଶୁଣିଲି ସେ ଠିକ୍ ସେମିତି । ମୋ କୋଳରେ ଥିବା ସତ୍ତ୍ୱେ ସେ ବାଳକକୁ ଠିକ୍ ଠିକ୍ ଚିହ୍ନିଗଲେ ।

ତା'ପରେ ରୋହିଣୀଙ୍କ କୋଳରେ ଦିବ୍ୟ ଆଶ୍ରମରେ ଆଖି ମୁଦି ରହିଥିବା ବାଳକକୁ ଦେଖି ନନ୍ଦରାଜାଙ୍କୁ ମହାମୁନି ଗର୍ଗ କହିଲେ—"ବ୍ରଜରାଜ ! ଆପଣଙ୍କର ଏହି ପୁଅ ପ୍ରତ୍ୟେକ ଯୁଗରେ ଜନ୍ମ ଗ୍ରହଣ କରିଥାଏ । ସତ୍ୟ ଯୁଗରେ ଏହାର ବର୍ଣ୍ଣ ଶ୍ୱେତ, ତ୍ରେତାୟାରେ ରକ୍ତ ଏବଂ ଦ୍ୱାପରରେ ପୀତ । ବର୍ତ୍ତମାନ କଳିର ଆଦ୍ୟ ଭାଗରେ ଏହାର ବର୍ଣ୍ଣ କୃଷ୍ଣ । ବର୍ଣ୍ଣ ଅନୁସାରେ ଏହାର ନାମ କୃଷ୍ଣ ହେଉ । ପ୍ରଥମେ ସେ ବସୁଦେବଙ୍କର ପୁଅ ହୋଇ ଥିଲା; ତେଣୁ ଲୋକେ 'ବାସୁଦେବ ବୋଲି ଡାକିଲେ ଆପଣ ଦୁଃଖ କରିବେ ନାହିଁ । ଗୁଣ ଏବଂ କର୍ମ ଅନୁସାରେ ଆପଣଙ୍କର ଏହି ପୁଅର ଅନେକ ମଧ୍ୟ ସହସ୍ର ନାମ ରହିଛି । ତାଙ୍କୁ ଜ୍ୟୋତିଷ ଶାସ୍ତ୍ର-ବିଦ୍ୟାବଳରେ ଏବଂ ତପସ୍ୟାର ପ୍ରଭାବରେ ମୁଁ ସବୁ ଜାଣି ପାରୁଛି ଯାହା ଅନ୍ୟମାନେ ଜାଣନ୍ତି ନାହିଁ ।"

ନନ୍ଦ କହିଲେ—"ପ୍ରଭୁ ! ଏହାର ଗ୍ରହ ଲଗ୍ନ ଦେଖି କହନ୍ତୁ । ଏହାର ଭାଗ୍ୟରେ କ'ଣ ଅଛି । ଏହାର କାରଣରୁ ଆମ କୁଳର ବୃଦ୍ଧି ହେବ କି ନାହିଁ ।"

ଏହା ଶୁଣି ହସି ହସି ଶ୍ରୀ ଗର୍ଗ କହିଲେ—"ଅହେ ନନ୍ଦ ମହାରାଜ ! ଆପଣ ତା'ର ଗ୍ରହଲଗ୍ନ କଥା କ'ଣ ପଚାରୁଛନ୍ତି, ଏହି ବାଳକ କଲ୍ୟାଣ ସାଧନ କରି ଗୋପ, ଗାଈ ଓ ଗୋପାଳମାନଙ୍କୁ ଆନନ୍ଦ ଦେବ । ଏହାଦ୍ୱାରା ଆପଣ ବିପତ୍ତି ସାଗର ପାରି ହୋଇ ଯିବେ ।"

ଶ୍ରୀ ନନ୍ଦ କହିଲେ—"ପ୍ରଭୁ ! ଏହାର ଶତ୍ରୁ ସ୍ଥାନ କିପରି । ଶତ୍ରୁ ତ ଏହାକୁ ବାଧା ଦେବେ ନାହିଁ ?"

ଶ୍ରୀ ଗର୍ଗ ହସି ହସି କହିଲେ—"ମୁଁ ଜ୍ୟୋତିଷ ଶାସ୍ତ୍ରର ପ୍ରସିଦ୍ଧ ପୁସ୍ତକ ଗର୍ଗ ସଂହିତା ରଚନା କରିଛି । ତା'ରି ଅନୁସାରେ ପୂର୍ବ ଏବଂ ଆଗାମୀ ଜନ୍ମ କଥା କହୁଛି । ପୂର୍ବ କାଳରେ ଅରାଜକତା ସମୟରେ ଏହି ବାଳକ ତକାୟତମାନଙ୍କଠାରୁ ପ୍ରଜା ଏବଂ ସାଧୁମାନଙ୍କୁ ରକ୍ଷାକରି ଥିଲା । ସେତେବେଳେ ଏହାରି ଭୁଜବଳର ଅନ୍ତୁହରେ ସାଧୁମାନେ ଡକାୟତମାନଙ୍କ ଉପରେ ବିଜୟ ପ୍ରାପ୍ତ ହୋଇଥିଲେ । ଏହାର ଶତ୍ରୁ ଭୟ ତ ଦୂରର କଥା

ଯେ ଏହା ସହିତ ପ୍ରୀତିଭାବ ରଖିବେ ସେମାନେ ମଧ୍ୟ ଶତ୍ରୁଭୟରୁ ମୁକ୍ତ ହୋଇପାରିବେ, ସେମାନଙ୍କୁ ମଧ୍ୟ କେହି କ୍ଷତିଗ୍ରସ୍ତ କରି ପାରିବେ ନାହିଁ । ଆପଣ ଜାଣନ୍ତି ଅସୁରମାନେ କେତେ ବଳଶାଳୀ । ଦେବତାମାନେ ସେମାନଙ୍କ ଆଗରେ ଠିଆ ହୋଇ ପାରନ୍ତି ନାହିଁ । ମାତ୍ର ଭଗବାନ ବିଷ୍ଣୁଙ୍କଦ୍ୱାରା ସୁରକ୍ଷିତ ହୋଇଥିବା ହେତୁ ଅସୁରମାନେ ଏହାଙ୍କର କିଛି କରି ପାରିବେ ନାହିଁ । ଗୋପରାଜ, ଅଉ ବିଶେଷ କ'ଣ କହିବି, ମୁଁ ଏତିକି ମାତ୍ର କହୁଛି ଯେ ଏ ବାଳକ ଗୁଣ, କୀର୍ତ୍ତି ଓ ପ୍ରଭାବରେ ଶ୍ରୀମନ୍ନାରାୟଣ ସଦୃଶ । ଆପଣ ସାବଧାନତା ସହିତ ଏହାର ରକ୍ଷା କରିବେ ।"

ହାତ ଯୋଡ଼ି ନନ୍ଦ ମହାରାଜ କହିଲେ—"ପ୍ରଭୁ ! ରକ୍ଷା କରିବା କରେଇବାବାଲା ମୁଁ କିଏ ? ଆପଣଙ୍କର ଆଶୀର୍ବାଦରୁ ହିଁ ଏମାନଙ୍କର ରକ୍ଷା ହେବ । ଆପଣଙ୍କର ବରଦ ହସ୍ତ ଏମାନଙ୍କ ମସ୍ତକରେ ପଡ଼ିଛି ସେତେବେଳେ ସନ୍ଦେହର କୌଣସି ଅବକାଶ ରହି ନାହିଁ । ଆପଣ ଯଦି ଏମାନଙ୍କର ଜନ୍ମ କୁଣ୍ଡଳୀ କରି ସାରିଛନ୍ତି, ତା' ହେଲେ କହନ୍ତୁ, ମୁଁ ଗ୍ରହଫଳ ଶୁଣିବାକୁ ଚାହୁଁଛି ।"

ଶ୍ରୀ ଗର୍ଗ କହିଲେ—"ବିଶେଷ ଫଳ ବିଷୟରେ ମୁଁ ପୂର୍ଣ୍ଣ ଜନ୍ମ ପତ୍ରିକା ତିଆରି କରିବା ପରେ ହିଁ କହିବି । ବର୍ତ୍ତମାନ ସାଧାରଣ ଭାବରେ ପୁତ୍ରମାନଙ୍କର ଗ୍ରହାବସ୍ଥିତି ଓ ଫଳ ବିଷୟରେ କହୁଛି । ତେବେ ସବୁ ଶୁଭଗ୍ରହ ଉଚ୍ଚରେ ରହିଛନ୍ତି । ଭାଦ୍ର କୃଷ୍ଣ ଅଷ୍ଟମୀ ବୁଧବାର ଅର୍ଦ୍ଧରାତ୍ରୀ ସମୟରେ ଆପଣଙ୍କର ପୁଅର ଜନ୍ମ ହୋଇଛି । ଏଇ ସମ୍ବତ୍ସରର ନାମ ସରସ ବିଭବନ । ସରସ ସମ୍ବତ୍ସରରେ ଜନ୍ମିଥିବା ହେତୁ ଏହି ଶ୍ୟାମ ସୁନ୍ଦର ସୁକୁମାର ସୁତ ସମସ୍ତଙ୍କୁ ସରସ କରିବ । ବିଶ୍ୱବ୍ରହ୍ମାଣ୍ଡକୁ ରସରେ ବୁଡ଼େଇ ଦେବ । ରୋହିଣୀ ନକ୍ଷତ୍ରରେ ଜନ୍ମ । ଏହା ଅତ୍ୟନ୍ତ ଶୁଭ । ଅଷ୍ଟମୀ ତିଥି ଏବଂ ବୁଧବାର, ଏହା ମଧ୍ୟ ଶୁଭ । ଲଗ୍ନ ବୃଷ ହେତୁ ଏ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ହେବ । ତନୁ ସ୍ଥାନରେ ଚନ୍ଦ୍ରମା ଉଚ୍ଚସ୍ଥ, ଯାହାଫଳରେ ଏହାକୁ ସର୍ବଦା ଶାରୀରିକ ସୁଖପ୍ରାପ୍ତ ହେବ । ବୃଷର ଚତୁର୍ଥ ସ୍ଥାନ ଅର୍ଥାତ୍ ସିଂହ ରାଶିରେ ସୂର୍ଯ୍ୟ ରହିଛନ୍ତି ଏହାର ଫଳ ହେଲା ବାଳକ ସମ୍ପୂର୍ଣ୍ଣ ଭୂମଣ୍ଡଳକୁ ଆପଣାର ଭୁଜବଳରେ ଜିଣି ନେବ । ପଞ୍ଚମ ସ୍ଥାନ କନ୍ୟାରେ ବୁଧ ଅଛନ୍ତି; ତେଣୁ ତା'ର ପୁତ୍ରର ଅଭାବ ହେବ ନାହିଁ, ବହୁପୁତ୍ର ଜନ୍ମ ହେବେ । ଏତେ ପୁତ୍ର ଜାତ ହେବ ଯେ ଜେଜା ଆଈଙ୍କର ସବୁର ନାଆଁ ମନେ ସୁଦ୍ଧା ରହିବ ନାହିଁ ।"

ଷଷ୍ଠ ସ୍ଥାନରେ ତୁଳା ରାଶିରେ ଶୁକ୍ର ଏବଂ ଶନି ଏକାଠି ରହିଛନ୍ତି । ଏ ତା'ର ଶତ୍ରୁମାନଙ୍କୁ ଖୋଜି ଖୋଜି ମାରିବ । ପୃଥିବୀ ପୃଷ୍ଠରେ ତା'ର ଗୋଟିଏ ଶତ୍ରୁ ମଧ୍ୟ ବର୍ତ୍ତି ଯାଇ ପାରିବ ନାହିଁ । ସପ୍ତମ ସ୍ଥାନରେ ରହିଥିବା ହେତୁ ଫଳ ଟିକିଏ ଗୋଳମାଳିଆ । ଏହାର ପତ୍ନୀ ଅନେକ । ଉଚ୍ଚ ନୀଚ ସବୁ ଶ୍ରେଣୀର ପତ୍ନୀମାନଙ୍କ ଦ୍ୱାରା ପ୍ରାସାଦ ପରିପୂର୍ଣ୍ଣ ରହିଥିବ । ମକର ରାଶି ଭାଗ୍ୟ ସ୍ଥାନରେ ମଙ୍ଗଳ ରହିଛନ୍ତି ତେଣୁ ସର୍ବଦା ମଙ୍ଗଳ ହିଁ

ମଙ୍ଗଳ ହେବ । ନିରନ୍ତର ଐଶ୍ୱର୍ଯ୍ୟ ବୃଦ୍ଧି ହେଉଥିବ । ମୀନ ରାଶିରେ ଲାଭ ସ୍ଥାନରେ ବୃହସ୍ପତି ରହିଥିବାରୁ କିଛି କହିବାକୁ ରହିଲା ନାହିଁ । ସର୍ବଦା ଅଷ୍ଟ ସିଦ୍ଧି ଓ କନ୍ୟାନିଧି ଆପଣଙ୍କ ପୁଅ ଆଗରେ ହାତ ଯୋଡ଼ି ରହିଥିବେ । କର୍କଟ ସ୍ଥାନ ମେଷରେ ଶନି ରହିଛନ୍ତି । ଫଳରେ ଏହାର ବର୍ଣ୍ଣ କୃଷ୍ଣ । ଘନ ସଦୃଶ ଶ୍ୟାମ ଶରୀର । ସଂକ୍ଷେପରେ ଏହା ହିଁ ଏହାର ଗ୍ରହ ଫଳ ।

ଏହା ଶୁଣି ନନ୍ଦ ଅତ୍ୟନ୍ତ ପ୍ରସନ୍ନ ହେଲେ । ମଣି, ମୁକ୍ତା, ସୁବର୍ଣ୍ଣ, ରତ୍ନ, ବସ୍ତ୍ରା-ଭୂଷଣାଦି ଅନେକ କିଛି ଗର୍ଗଙ୍କୁ ଦକ୍ଷିଣା ସ୍ୱରୂପ ପ୍ରଦାନ କଲେ । ଅନେକ ଗାଈ ମଧ୍ୟ ଦେଲେ । କହିଲେ—"ପ୍ରଭୁ ! ଏ ଦକ୍ଷିଣା ଆପଣ ଏଠାରେ ହିଁ ଛାଡ଼ି ଦେଇ ଯାଆନ୍ତୁ । ମୁଁ ମଥୁରା ଗଲେ ଆପଣଙ୍କ ଘରେ ପହଞ୍ଚାଇ ଦେଇ ଆସିବି । ଆପଣ ଏକଥା ଭାବନ୍ତୁ ନାହିଁ ଯେ 'ସୁଧ, ଭଡ଼ା ଆଉ ଦକ୍ଷିଣା ବାକି ରହିଗଲେ ସବୁ ଋଣ ।' ସେଇଆ ହେବ ନାହିଁ । ସବୁ କଥା ଠିକ୍ ଠିକ୍ ପହଞ୍ଚି ଯିବ ।"

ଏହା ଶୁଣି ଶ୍ରୀ ଗର୍ଗ ହସି ଦେଲେ । ଯଶୋଦା ଓ ରୋହିଣୀ ପ୍ରଣାମ କରି ବୁଲାଇଲେ । ରୋହିଣୀ ପଚାରିଲେ—"କ'ଣ କ'ଣ ସବୁ ନାଁ ରଖିଲେ ଯେ ମୁଁ ଶୁଣି ବି ପାରିଲି ନାହିଁ ।"

ଯଶୋଦା କହିଲେ—"ବଡ଼ର ନାଁ 'ବଳରାମ' ଆଉ ସାନର ନାଁ 'କୃଷ୍ଣ' । ସେଇଆ କହିଲେ । ଆଉ କ'ଣ ସବୁ ଗୀତ ଗାଇଲା ପରି ଗାଇଗଲେ ମୁଁ କିଛି ହେଲେ ବୁଝି ପାରିଲି ନାହିଁ ।"

ରୋହିଣୀ କହିଲେ—"ଏ ନାଆଁ କେମିତି ଭାରି ଭାରି ଲାଗୁଛି । ଜିଭ ଲେଉଟୁ ନାହିଁ । ମୁଁ ବଡ଼କୁ ବଳିଆ ବୋଲି ଡାକିବି ଆଉ ସାନକୁ କାଳିଆ । କହ ନା, ଠିକ୍ ହବ କି !"

ଯଶୋଦା କହିଲେ—"ହଁ, ଏ ନାଁ ମୋତେ ବି ସହଜିଆ ଲାଗୁଛି । 'କୃଷ୍ଣ କୃଷ୍ଣ' ଭାରି ଅଟପଟିଆ । ଜିଭ ତିନିଥର ମୋଡ଼ି ହୋଇ ଯାଉଛି 'କାଳିଆ' ସିଧା ନାଆଁ 'ବଳିଆ' ବି ଭଲ । ଆଜିଠାରୁ ଆମେ ଏମାନଙ୍କୁ ବଳିଆ କାଳିଆ ଡାକିବା ।"

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଯଜ୍ଞରେ ଯେଉଁମାନଙ୍କୁ କେତେ ଶ୍ରଦ୍ଧାରେ, ସମ୍ବର ବେଦ ମନ୍ତ୍ରର ଶୁଦ୍ଧତା ସହିତ ସ୍ତୁତି କଲେ ମଧ୍ୟ ଯେଉଁମାନେ ଆସନ୍ତି ନାହିଁ ସେଇମାନେ ମାଆର ବଳିଆ କାଳିଆ ଡାକ ଶୁଣି କେତେ ଆନନ୍ଦରେ ନାଚି ପକାଉ ନ ଥିଲେ !

ଏପରି ଭାବରେ ନାମ-କରଣ ସଂସ୍କାର କରି ଗର୍ଗ ମୁନି ପୂର୍ଣ୍ଣାହୁତି ହେବା ପରେ ପରେ ଚୁପ୍ ଚାପ୍ କମଣ୍ଡଳୁ ଉଠେଇ ମଥୁରା ଯିବାକୁ ବାହାରି ପଡ଼ିଲେ । ନନ୍ଦ ମହାରାଜ ତାଙ୍କ

ପାଦତଳେ ପ୍ରଣାମ କରି ଘରକୁ ଲେଉଟି ଆସିଲେ । କୃଷ୍ଣ ବଳରାମ ଗୋକୁଳରେ ମାତା-ମାନଙ୍କର ପାଖରେ ରହି ଶୁକ୍ଳପକ୍ଷ ଚନ୍ଦ୍ରମା ସଦୃଶ ବଢ଼ିବାକୁ ଲାଗିଲେ । ସେମାନେ ହୋଲ ଗୁଡ଼ ଧୀରେ ଧୀରେ ଗୁରୁଣ୍ଡିବା ଆରମ୍ଭ କରିଦେଲେ ।

## ଛପ୍‌ପୟ

ମୈୟା ପୂଛତ ଧରେୟାନାମ କା ମୁନି ଛୋରନ କୋ ।
ଯଶୁମତି ବୋଲୀଁ ନାମ କୃଷ୍ଣ—ବଳରାମ ଲଲନ କୋ ॥
ଖରୀ ହୈ କଛୁ ନାମ କହେ ହମ କନୁଆ-ବଲୁଆ ।
ଉତ୍ସବ ଭୟୋ ନ କଛୁ ପଠାଓ ଘର-ଘର ହଲୁଆ ॥
ହରି କନୁଆ-ବଲୁଆ ବନେ, ଗୋକୁଲ ମହଁ ବଢ଼ିବେ ଲଗେ ।
କଛୁକ ଦିବସ ମହଁ ରେଁଗିକେ, ଘୁଟୁଅନ ବଲ ଚଲିବେ ଲଗେ ॥

# ରାମ-ଶ୍ୟାମଙ୍କର ବାଲ୍ୟଲୀଳା

ତାବଙ୍‌ଘ୍ରିଯୁଗ୍ମମନୁକୃଷ୍ୟ ସରୀସୃପନ୍ତୌ,
ଘୋଷପ୍ରଘୋଷରୁଚିରଂ ବ୍ରଜକର୍ଦ୍ଦମେଷୁ ।
ତନ୍ନାଦହୃଷ୍ଟମନସାବନୁସୃତ୍ୟ ଲୋକମ୍,
ମୁଗ୍‌ଧପ୍ରଭୀତବଦୁପେୟତୁରନ୍ତି ମାତ୍ରୋଃ ॥
(ଶ୍ରୀ ଭା ୧୦ସ୍କ, ୮ଅ, ୨୨ ଶ୍ଳୋ)

## ଛପ୍‌ପୟ

ବନ୍ଦର ବାଲକ ସରସି ହାଥ ପାଁଇନ ବଲ ଢଲକରେଁ ।
ଇତ ଉତ ଖେଲେ ବନେ ନନ୍ଦ—ଆଁଗନ ମହଁ ବହୁରେ ॥
ଘିସଟି-ଘସିଟି କେ କବହୁଁ ଗୋଷ୍ଠ ମେଁ ଘୁଟୁଅନ ଜାବେ ।
ଗୋଶାଳ କୀ କୀଚ ଚଲତ ନିଜ ତନ ଲପଟାବେ ॥
ପଗ ନୂପୁର କଟି କିଙ୍କିଣୀ, ଝୁଲେବେ ମହ ରୁନୁ-ଝୁନୁ ବଜହୁଁ ।
ଶବ୍ଦ ସୁନତ ଇତ ଉତ ଲଖତ, ହୃଷ୍ଟ ହୁଲସତ କିଲକତ ଭଜହୁଁ ॥

ଶ୍ରୀ ଶୁକଦେବ କହୁଛନ୍ତି—'ରାଜନ୍ ଶ୍ରୀରାମ ଏବଂ ଶ୍ୟାମ ଦୁହେଁ ପାଦ ଘୋଷାର ଘୋଷାର ଯାଇ ଗୋଶାଳା କାଦୁଅରେ ଲେଟି ଯାଉଥିଲେ । ଚାଲି ଯାଉଥିବାବେଳେ ନୂପୁର ଓ ମେଖଳାର ରୁଣୁଝୁଣୁ ମଧୁର ଶବ୍ଦ ଶୁଣା ଯାଉଥିଲା । ସେହି ଶବ୍ଦ ହେତୁ ପ୍ରସନ୍ନ ହୋଇ ସେ ଲୋକବତ୍ଲୀଳା ଅନୁସରଣ କରି କେତେବେଳେ କାହା ସାଙ୍ଗରେ ଚାଲି ଯାଉଥିଲେ ତା'ପରେ ମୁଗ୍ଧ ଚକିତ ହୋଇ ମାତାଙ୍କ ନିକଟକୁ ଫେରି ଆସୁଥିଲେ ।

ସଂସାରରେ ଅନେକ ସୁନ୍ଦର ବସ୍ତୁକଥା କୁହାଯାଇଛି । ସେହି ସବୁ ସୁନ୍ଦର ବସ୍ତୁମାନଙ୍କ ମଧ୍ୟରେ ଅବୋଧ ଶିଶୁର ସରଳ ହୃଦୟ, ସରସ ଛଳନାହୀନ ସ୍ୱାଭାବିକ କ୍ରୀଡ଼ା, ତା'ର ଉଠିବା, ବସିବା, କଥା କହିବା ଏବଂ ଆଉ ସବୁ ବାଳକସୁଲଭ ଚେଷ୍ଟା ପରମ ସୁନ୍ଦର । କଏ ସେଭଳି ହୃଦୟହୀନ ଥାଇପାରେ ଯେ ସରଳ ବାଳକକୁ ଦେଖି ପ୍ରସନ୍ନ ହେବନାହିଁ । ତା'ର ଗୋଟାଏ କାରଣ ଅଛି । ଗମ୍ଭୀରତା ଓ ଶୀଳ ସଙ୍କୋଚକୁ ସର୍ବଶ୍ରେଷ୍ଠ ମନେକରି ଆମେ ଗମ୍ଭୀର ହୋଇ ବସିଯାଉ ଆଉ ଲୋକଙ୍କ ଆଗରେ ଖୋଲି ଖୋଲି ହସି ପାରୁନା । ଏଥିରେ ଆମ ଭିତରେ ସମ୍ମାନିତ ପ୍ରତିଷ୍ଠିତ ସର୍ବଜ୍ଞ ପୂଜିତ ହେବାର ବାସନାଟି ଭରି ରହିଥାଏ । ବାଳକଙ୍କର କୌଣସି ବାସନା ନାହିଁ । ସେ ସରଳ ଓ ଛଳନାହୀନ । ଯେତେବେଳେ ମନ ସେତେବେଳେ ଖିଲ୍ଖିଲ୍ ହୋଇ ହସିଉଠେ, ଯେତେବେଳେ ଚାହେଁ କାନ୍ଦି ପକାଏ । ଘଡ଼ିକ ପରେ କାନ୍ଦ ବନ୍ଦ କରି ପୁଣି ହସିଉଠେ । ଯାହାକୁ ଯାହା ମନ କହିଦିଏ, ତା' ପାଖରେ ଉଚିତ ଅନୁଚିତର କୌଣସି ଭେଦ ନାହିଁ । ତେଣୁ ସମସ୍ତେ ବାଳକର ଖନେଇ କହିଲା କଥା ଶୁଣି ହସିଦିଅନ୍ତି, ତା'ର କୌଣସି କଥାରେ ଖରାପ ଭାବନ୍ତି ନାହିଁ । ସେ ଯେତେବେଳେ ଇଚ୍ଛା ସେତେବେଳେ ସ୍ତ୍ରୀମାନଙ୍କ ଭିତରକୁ, କେତେବେଳେ ପୁରୁଷମାନଙ୍କ ଭିତରକୁ ଦଉଡ଼ି ଯାଏ । ତା' ଭିତରେ ସ୍ତ୍ରୀ-ପୁରୁଷର କୌଣସି ଭେଦ ନାହିଁ । ଯୋଉଠି ମନ ସେଇଠି ଲଙ୍ଗଳା ହୋଇ ପଡ଼ିଲା, ତା'ର କୋଉ ଚିନ୍ତା ! ତା'ଲାଗି କୋଉ ବନ୍ଧନ ଅଛି ସମାଜର ! ତେଣୁ କୌଣସି ବନ୍ଧନ ବି ସେମାନଙ୍କୁ ବାନ୍ଧି ପାରେନାହିଁ । ତା'ର ନା ଲଜ୍ଜା ଅଛି ନା ସଙ୍କୋଚ ବା ତା'ର ସାମାଜିକ ମାନାପମାନକୁ ଡର ଅଛି । ଖେଳିବା ତା'ର କାମ । ଯେ ତା' ପାଖରେ ବଡ଼ପଣ ଦେଖାଏ ତା'ଠୁ ସେ ଦୂରେଇ ଯାଏ, ତା' ପାଖ ମାଡ଼େନାହିଁ । ସେ ତା'ର ପ୍ରକୃତିବାଲାଙ୍କ ସାଙ୍ଗରେ ଖେଳେ । ତେଣୁ ବଡ଼ମାନେ ପିଲାଙ୍କୁ ଖୁଆଇବା ସମୟରେ ନିଜେ ପିଲା ପାଲଟି ଯାଆନ୍ତି । ତା' ସାଙ୍ଗରେ ପିଲାଙ୍କ ଭଳି କଥା ଆରମ୍ଭ କରି ଦିଅନ୍ତି । ପିଲାଙ୍କର ଦାଢ଼ିବାଲାଙ୍କୁ ଖୁବ୍ ଡର କାରଣ ସେମାନେ ଜାଣନ୍ତି ଯେ ଯା'ର ଲମ୍ବା ଦାଢ଼ି ସେ ଯେତେ ବଡ଼ ସେ ସେତେ ବଡ଼ । ତା' ଭିତରେ ସେତିକି ଗର୍ବ । ସେତେବେଳେ ସେମାନଙ୍କର ସ୍ଥିର ଧାରଣା ହୋଇଯାଏ ଯେ, ଲମ୍ବା ଦାଢ଼ି ଥିଲେ ହେଲେ କ'ଣ ହେଲା, ଏବେ ବି ତାଙ୍କ ପାଖରେ ପିଲା ପଣଟି ରହିଛି, ସେତେବେଳେ ପିଲାଏ ସେଇ ଲମ୍ବା ଦାଢ଼ିକୁ ଖେଳନା କରି ନିଅନ୍ତି ।

ଆଉ ତା' ସାଙ୍ଗରେ ଖେଳିବା ଆରମ୍ଭ କରି ଦିଅନ୍ତି । ପିଲାଏ ସବୁବେଳେ ତ ଜଣ ଦାଢ଼ି ନ ଥିଲା ମାଆଙ୍କ ପାଖରେ ଆଆନ୍ତି, ହଠାତ୍ ଜଣଦାଢ଼ି ଦେଖି ଡରି ଯାଆନ୍ତି । ସବୁଦିନ ଦେଖି ଦେଖି କେତେବେଳେ ସେ ଡର ଭାଙ୍ଗି ଯାଏ । ବାଳକ ଭିତରେ ଛଳ ଛିଦ୍ର ନ ଥାଏ । ତା'ର ସମସ୍ତେ ପ୍ରିୟ । ଆଉ ଯେତେବେଳେ ଭଗବାନ ନିଜେ ବାଳକ ସାଜି କ୍ରୀଡ଼ା କରି ବସିବେ ସେତେବେଳେ ଆନନ୍ଦର କୋଉ ସୀମା ରହିବନାହିଁ । ସୁବର୍ଣ୍ଣରେ ସୁଗନ୍ଧ ସଞ୍ଚାରିତ ହୋଇଯିବ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! କିଛି କାଳପରେ ଭଗବାନ ମାତୃକୋଳ ଓ ପଲଙ୍କ ଛାଡ଼ି ପବିତ୍ର ପାଦ ସ୍ପର୍ଶରେ ପୃଥିବୀକୁ ପବିତ୍ରତମ କରିବାକୁ ଲାଗିଲେ । ସେ ପୃଥିବୀକୁ ଆସିଲେ । ପୃଥିବୀ ଦେଖିଲେ, ଭାବିଲେ ଏ ମୋର ଭାଗ୍ୟ ଉଦ୍ଧାର କରିବାକୁ ଆସିଲେ ଯେନା, ରହିଛନ୍ତି ପଲଙ୍କ ନ ହେଲେ ମାଆ କୋଳରେ । ସେଠାରେ କ୍ଷୀର ସାଗରରେ ପଡ଼ି ରହୁଥିଲେ, ଏଠାରେ ପଲଙ୍କରେ । ଚରଣ ସ୍ପର୍ଶଦେଇ ପବିତ୍ର କଲେ ନାହିଁ । ଓହ୍ଲାଇ ଆସିଲେ ବି ମାଆକୋଳକୁ ଓହ୍ଲାଇ ଆସୁଛନ୍ତି । ଯିଏ ମାଆ କୋଳରେ ଶୁଏ, ତାକୁ ଦେଖିଲେ କୋଉ ପ୍ରିୟାର ପ୍ରସନ୍ନତା ଆସିବ ! ମାଆ କୋଳରୁ ଆସି ମୋ'ର ବକ୍ଷସ୍ଥଳରେ ପାଦସ୍ପର୍ଶ ଦେଲେ ଯେନା ମୁଁ ରୋମାଞ୍ଚିତା ହେବି । ସେତେବେଳ ଯାଏ ଭଗବାନ ସଙ୍କୋଚ ହେବାରୁ ଆଖି ମୁଦି ରହୁଥିଲେ । ଭୋକ ହେଲେ ମାଆର ସ୍ତନରୁ କ୍ଷୀରପାନ କରି ଦେଲେ ପୁଣି ଶୋଇଗଲେ । ଆଉ ଯେତେବେଳେ ଆଖି ଖୋଲି ଏଣିକି ତେଣିକି ଚାହିଁଲେ ସେତେବେଳେ ସ୍ନେହରେ ଭୂଦେବୀ ସଙ୍କେତ ଦେଲେ—'କେତେ ସମୟ ଆଉ ମାଆ କୋଳରେ ବିହାର କରୁଥିବ ! ମୋ' କଥା କ'ଣ ବୁଝିବ ନାହିଁ । ମୋତେ ତ ଶୂକର ସାଜି ପାତାଳରୁ ଉଠେଇ ଆଣିଲ ଅଉ ଏଇନେ ଦେଖି ଦେଖି ଆଖି ମୁଦି ନଉଛ ! ଇଏ କ'ଣ ଭଲ କଥା !

ଭଗବାନ ଭାବିଲେ—"ଆରେ ଭାଇ, ମୁଁ ତ ମାଆ ସ୍ନେହ ପାଇ କଥା ଦେଇ ଭୁଲି ଯାଉଛି । ହଉ କିଛି କଥା ନାହିଁ । ସକାଳେ ଭୁଲି ସନ୍ଧ୍ୟାକୁ ଲେଉଟି ଆସିଲେ, ଭୁଲିଗଲା ବୋଲି କୁହାଯାଇ ପାରିବ ନାହିଁ । ହଉ, ମାଆ କୋଳରୁ ଆସି ଧରଣୀକୁ ପବିତ୍ର କରିଯାଉ । ତା'ର ବକ୍ଷରେ ପାଦଦେଇ ଖୁସି କରିଯାଉ । ଏଇଆ ଭାବି ସେ ମାଆ କୋଳରୁ ବଳ ଖଟେଇ ଓହ୍ଲାଇ ଆସୁଥିଲେ । ହେଲେ ମାଆଠାରୁ ସେ କ'ଣ ଅଧିକ ବଳବନ୍ତ ! ମାଆ ଜୋର କରି କୁଣ୍ଢେଇ ନେଲାରୁ କାନ୍ଦିବା ଆରମ୍ଭ କରି ଦେଲେ । ଗୋପୀମାନେ କହିଲେ—'ରାଣୀ ! ପୁଅକୁ ଛାଡ଼, ବୁଲିବୁଲି କରୁ । ତାକୁ ସେମିତି କୋଳେଇ ରହିଥିବ ନା !"

ମା କହନ୍ତି—"ଭାରି ଦୁଷ୍ଟ । କୁଆଡ଼େ କୁଆଡ଼େ ଯିବ । ପଡ଼ିବ, ଖଣ୍ଡିଆ ଖାବରା ହେବ ।"

ଗୋପୀମାନେ ଉତ୍ତର ଦିଅନ୍ତି—"ପଡ଼ିବ ନାହିଁକି ଯେ, ଆଉ ପିଲାଏ ତ ଦୁଣି ବୁଲୁଛନ୍ତି । ନଜର ରଖିଲେ ହେଲା ।"

ରୋହିଣୀ ବି କହିଲେ । ସମସ୍ତେ କହିଲାରୁ ଯଶୋଦା ପୁଅକୁ ଭୂଇଁକୁ ଓହ୍ଲାଇ ଦେଲେ । ପୃଥ୍ୱୀ ଉଦ୍ଧାରଣ କଥା ମନେ ପଡ଼ିଗଲା ତାଙ୍କର । ଗୋଡ଼ ଆଉ ହାତ ଦୁଇଟିରେ ଚାଲିବା ଆରମ୍ଭ କରିଦେଲେ । ପାପୁଲି ଟେକି ଆଣ୍ଠୁ ମଡ଼େଇ ଧୀରେ ଧୀରେ ମାଙ୍କଡ଼ଙ୍କ ଭଳି ଗୁରୁଣ୍ଡିବାର ଆରମ୍ଭ କରିଦେଲେ । ଏହା ଦେଖି ଗୋପୀମାନେ ତାଳି ବଜେଇ ହସିବା ଆରମ୍ଭ କରିଦେଲେ । ମାତା 'କାହ୍ନାଆ' ବୋଲି ଡାକିଲେ ସେ ଲେଉଟି ଚାହାନ୍ତି । ପୁଅ ଚାହିଁଲାଣି ଖୁସିରେ ଉଚ୍ଛୁଳି ପଡ଼ନ୍ତି ମାଆ । ସତରେ ଯେମିତି ସ୍ୱା ଆଗରୁ ସେ କିଛି ହେଲେ ବୁଝୁ ନଥିଲେ । ସେ ଗୁରୁଣ୍ଡି ଗୁରୁଣ୍ଡି ବଢ଼ିଯାଆନ୍ତି ଆଗକୁ ଆଗକୁ···ପଛପଟୁ ଚଞ୍ଚଳ ଯାଇ ଉଠେଇ ନିଅନ୍ତି ମାଆ, ଅଉ ବାରମ୍ବାର ଚୁମ୍ବନ ଦିଅନ୍ତି । ଧନ ମୋର ଚାଲିଲାଣି । ଦେଖ, କେତେଦୂର ଅସିଲାଣି । ଏବେକୁ ସ୍ପଷ୍ଟକରି ମାଆବୋଲି ଡାକିଲେଣି । ମା' ଶିଖେଇ ଦିଅନ୍ତି···ଇଏ ତୋର ବାପା, ଇଏ ଦେଢ଼େଇ, ଇଏ ପିଉସୀ । କୋଉ କୋଉ ବେଳେ ଅଧାଅଧି ଅଳି କୋଉ ଶବ୍ଦର ଉଚ୍ଚାରଣ କରି ନ ପାରିଲେ ମାଆ ମୁହଁକୁ ଚାହିଁ ରହନ୍ତି । ଗୋପୀମାନେ କହନ୍ତି—"ଦେଖ ନନ୍ଦରାଣୀ, କାହ୍ନୁକୁ ଯେତେ ସବୁ ଅଳଙ୍କାର ପିନ୍ଧେଇବ ସବୁ ଯେମିତି ରୁଣୁଝୁଣୁ ହୋଇ ବାଜୁଥିବ । ସେମିତି ଶବ୍ଦ ଶୁଣିଲେ ପିଲାମାନେ ଖୁସି ହୁଅନ୍ତି । ମାତା ଯାଙ୍କେ ସାଙ୍ଗେ ହାତ ପାଦର ଖଡ଼ୁମାନଙ୍କରେ ଘୁଙ୍ଗୁର ଲଗେଇ ଦେଲେ । କଟି କିଙ୍କିଣୀ ରୁଣୁଝୁଣୁ ହୋଇ ବାଜୁଥିଲା । ସେ ସବୁ ପିନ୍ଧି ରାମ କୃଷ୍ଣ ଚାଲିଲାବେଳେ ମନେ ହେଉଥିଲା ଯେଉଁଭଳି ବାଳକୃଷ୍ଣଙ୍କର ନାଚରେ ସ୍ୱର୍ଗର ବାଦ୍ୟ ବାଜୁଥିଲେ । ଆଭୂଷଣ-ମାନଙ୍କର ମଧୁର ନିକ୍ୱଣ ଶୁଣି ପିଲାମାନେ ଚକିତ ହୋଇ ଅନେଇ ରହୁଥିଲେ, ଯେମିତି ଧ୍ୱନି କୁଆଡ଼ୁ ଆସୁଛି ଜାଣି ପାରୁ ନ ଥିଲେ । ରୁଲୁଁ ରୁଲୁଁ ନୂପୁର ଧ୍ୱନି ଶୁଣି ଖିଲି ଖିଲି ହୋଇ ହସି ଉଠୁଥିଲେ । ଏଣିକି ତ ଦୁହେଁ ଯାଏଁ ଚାଲି ପାରୁଛନ୍ତି । ବନେ ଗୁରୁଣ୍ଡି ଗୁରୁଣ୍ଡି ଏବେଣି ବନ୍ଧ ପାର ହୋଇ ଚାଲିଆସିଲେ । ସେତେବେଳେ କେହି ଜଣେ ବ୍ରହ୍ମଜ୍ଞାନୀ ବୃଦ୍ଧ ମହାତ୍ମା ସେଇବାଟ ଦେଇ ଯାଉଥିଲେ । ସେ ବ୍ରଜକୁ ଭଗବାନଙ୍କର ଦର୍ଶନ ପାଇଁ ହିଁ ଆସିଥିଲେ । ମାତ୍ର ତାଙ୍କୁ ସେ ପର୍ଯ୍ୟନ୍ତ ଦର୍ଶନର ସୌଭାଗ୍ୟ ପ୍ରାପ୍ତ ହୋଇ ନ ଥିଲା । ଲାଲ ଦୂରରୁ ଧଳା ଦାଢ଼ି ଦେଖି ବୁଝିଗଲେ ଏ ମୋର ବାବା । ଆଉ ଚଞ୍ଚଳ ପାଦ ପକେଇ ନୂପୁର ବଜେଇ ଚାଲିଲେ ପଛେ ପଛେ । ଯେମିତି ସେ ସିଏ କହୁଥିଲେ ଯେ ମୋତେ ଖୋଜି ଖୋଜି ବ୍ରଜରେ ପହଞ୍ଚେ, ମୁଁ ଲୁଚି ଲୁଚି ତା'ର ପଛରେ ବୁଲୁଥାଏଁ । କିଛି ଦୂର ବ୍ରଜର ପରମ ପାବନ ଧୂଳିରେ ପାଦ ପକେଇ ଚାଲିଲେ । ସେଇ ଦିବ୍ୟ ନୂପୁରର ସୁମଧୁର ଧ୍ୱନି ଶୁଣି ଲେଉଟି ଚାହିଁଲା ମାତ୍ରକେ ସନ୍ତ ମହାରାଜ ବୁଝିଲେ ଏଇ ସାକାର ବ୍ରହ୍ମ, ବେଦ ପ୍ରତିପାଦିତ ପରମବ୍ରହ୍ମ ହିଁ ବାଳକ ରୂପରେ ଅସିଛନ୍ତି । କେତେ ନେହରେ ଉଧାଳିକ

ରୁହିଁ ରହିଲେ । ଚନ୍ଦ୍ରମୁଖ ଉପରକୁ ଖେଳେଇ ହୋଇ ଆସିଥିବା କୁଞ୍ଚିତ କେଶର ଶୋଭାରେ ମନ ତାଙ୍କର କେଜାଣି କେଉଁଠି ହଜିଗଲା ।

ବାଳକୃଷ୍ଣ ଦେଖିଲେ —"ଆରେ ଇଏତ ବାବା ନୁହନ୍ତି । ସେଠୁ ଡର ପଳେଇବାକୁ ଲାଗିଲେ । କୋଉଠି ପାଦ ପଡ଼ୁଛି, କୋଉଠି ହାତ । ଅରୁଛନ୍ତି ଆଉ ଲୁଚି ଯିବାକୁ ଅଧୀର ହେଉଛନ୍ତି । ଭକ୍ତକୁ ଦେଖି ଭଗବାନ ପଳେଇଲେ କେମିତ ? ଆରେ ଭାଇ ଭଗବାନ ତ ସେଇ ଦୁଇଟି କାମ ତ ଜାଣନ୍ତି—ପଳେଇବା ଆଉ ଲୁଚିଯିବା । ଲୁଚିବାରେ ତାଙ୍କର ବେଶ୍ ଆନନ୍ଦ ! ସେଇଥିଲାଗି ନା ଲୁଚି ରହନ୍ତି ସଦାବେଳେ । କା ଆଗରେ ପ୍ରକଟିତ ହେଲେ ବି ପୁଣି ଲୁଚି ଯାଆନ୍ତି । କନ୍ଦେଇ ପଳେଇ ଯାଆନ୍ତି । କନ୍ଦେଇବାରେ ବି ତାଙ୍କୁ ରସପ୍ରାପ୍ତ ହୋଇଥାଏ । ଅଙ୍କାବଙ୍କା ପାଦ ପକେଇ କୁଆର ମୁହଁରେ ପହଞ୍ଚିଗଲେ ଧନା ଏଯୁଣ୍ଟିବନ୍ଧ ଡେଇଁ ପାରିଲେ ନାହିଁ । ସେଇଠାରେ ଠିଆ ହୋଇ ରହି କାନ୍ଦିବାକୁ ଲାଗିଲେ । ଡେଇଁ ଯିବାକୁ ସାହାଯ୍ୟ ପ୍ରାର୍ଥନା କରିବାକୁ ଲାଗିଲେ । ସେତେବେଳେ ସେ ବ୍ରହ୍ମଜ୍ଞାନୀ ମହାତ୍ମା ଦେଖିଲେ ଆଉ ହସି ଦେଲେ । ଭାବିଲେ—"ଦେଖ, ଆଜି ବ୍ରହ୍ମର ବି ସାହାଯ୍ୟ ଲୋଡ଼ା । ଯା'ର ନାମମାତ୍ରକର ସ୍ମରଣରେ ମନୁଷ୍ୟ ଏ ସଂସାର ସାଗର କଥାରେ କଥାରେ ପାର କରିଯାଏ, ସେଇ ଆଜି ଏଯୁଣ୍ଟିବନ୍ଧଟି ଡେଇଁ ନ ପାରି କାନ୍ଦୁଛି । ମା'କୁ ଡାକୁଛି । ସେତକବେଳେ ମା' ଦଉଡ଼ି ଆସି ଦୁଆର ମୁହଁରେ ପହଞ୍ଚିଲେ । ପୁଅକୁ ଅରି ଅରି କାନ୍ଦୁଥିବା ଦେଖି କୋଳ କରି ନେଲେ । କେତେ ନା କେତେ ଚୁମା ଦେଲେ । ସାଙ୍ଗେ ସାଙ୍ଗେ ବଢ଼େଇକୁ ଡାକି ବନ୍ଧକାଠ କଢ଼େଇ ଦେଲେ ଯେମିତି ପୁଅର ଯିବା ଆସିବାକୁ କୌଣସି ଅସୁବିଧା ହେବ ନାହିଁ । ଭଗବାନ ବାତ୍ସଲ୍ୟର କଉଳ ସରସ ଧାରା ନନ୍ଦ ଭବନରେ ବୁହାଇ ଦେଇ ନାହାନ୍ତି ! ଏଣେ ସେ ଗୁରୁଣ୍ଡି ଗୁରୁଣ୍ଡି ଗୋଷ୍ଠରେ ଆସି ପହଞ୍ଚିଗଲେ । ସେଠାରେ ଗୋ ମୂତ୍ରଲାଗି କାଦୁଅ ରହିଥିଲା । କେତେ ଆନନ୍ଦରେ ଲୋଟିଗଲେ ହାତମାରି ଥପ୍ ଥପ୍ କରିବାକୁ ଲାଗିଲେ । ଏଣେ ତେଣେ ଫିଙ୍ଗିବାକୁ ଲାଗିଲେ । ସେତକବେଳକୁ ଆସି ପହଞ୍ଚି ଗଲେ ମାଆ···'କାହ୍ନା···! ଭାରି ଦୁଷ୍ଟରେ ତୁ ! ସବୁ ଏଇଠି ଆସି କାଦୁଅ ସଲସଲ ହୋଇ ପଡ଼ିଲୁ ନା ଘଉଡ଼କେ ! କେତେ ମିହିନ୍ତରେ ତେଲ ହଳଦୀ ଲଗେଇ ଗାଧେଇ ଦେଇ ଥିଲି । ନୂଆ କାଛେଣୀ ପିନ୍ଧେଇ ଦେଇଥିଲି । କେତେ କରି ଗୋରଚନା, ଚନ୍ଦନ, କଜଳ ଲଗେଇ ଦେଇଥିଲି, ସବୁ ସାରି ଦେଲୁ···!' ଆଉ କେତେ ଗେଲରେ ଉଠେଇ କୋଳ କରି ନେଲେ । ପୁଣି ସ୍ନାନ, ପୁଣି ମଣ୍ଡନ···। ତା'ପରେ ପୁଣି କାମ ତ ଅଛି ଆଉ କେତେ । ସେ ସବୁ ଦେଖିବେ । ପୁଅର ଅନ୍ନପ୍ରାସନ ବି ହୋଇ ଯାଇଛି । ଛଅ ମାସରୁ ଅଧିକ ହେଲାଣି ବୟସ । ଘରେ କେତେ ବଡ଼ ଅନ୍ନ ପ୍ରାସନ ଉତ୍ସବ ହେଇଥିଲା । ବ୍ରଜମଣ୍ଡଳର ସବୁ ଗୋପୀ ଗୋପାଳଙ୍କୁ ନିମନ୍ତ୍ରଣ କରି ଡାକିଥିଲେ । ଷଡ଼ରସୀ ଭୋଜନରେ ସମସ୍ତଙ୍କୁ ତୃପ୍ତ କରିଥିଲେ । ଲାଲା ମୁହଁରେ ସବୁରୁ ଟିକିଏ ଟିକିଏ ଛୁଆଁଇ ଦେଇ ଗଲେ । ଖିରି ଚଟେଇ

ଥିଲେ । ଏଇନେ କ୍ଷୀର ଖାଉଛନ୍ତି, ମିଶ୍ରି ପାଟିରେ କେତେ ବାଗରେ ଖାଇ ନଉଛନ୍ତି, ବେଳେ ବେଳେ ଥୁ ଥୁ କରି ପକେଇ ଦଉଛନ୍ତି । ଲହୁଣୀ ଖାଇଲେ ତ ଖାଇଲେ, ମୁହଁରେ ଲଗେଇଲେ, କପି ପକେଇଲେ ତଳେ । ମାଆ ଏବେ ତାଙ୍କ ଲାଗି କେତେ ଜାନପ ଦେତେ ଯତନରେ କରୁଛନ୍ତି । ଅଖି ଆଗରୁ ଟିକିଏ ଦୂରେଇ ଗଲେ ତ ସେଇ ଗୁହାଳରେ ଯାଇ ପହଞ୍ଚିଗଲେ । ସେଇ ଗୋବର କାଦୁଅରେ ଲେଟି ଗଲେ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଏପରି ଭାବରେ ଭଗବାନ ପ୍ରାକୃତ ବାଳକ ସୁଲଭ ଲୀଳା କରି ନନ୍ଦ ଯଶୋଦା ଅଉ ଗୋପୀ ଗୋପାଳଙ୍କୁ ଆନନ୍ଦ ଦେବାକୁ ଲାଗିଲେ ।"

## ଛପ୍ପୟ

ସମ୍ବୃଦ୍ଧି ନନ୍ଦଲକ୍ଷ୍ମି ବୃଷ୍ଟ ସଙ୍ଗ ତାକେ ଲଗ ଜାବେଁ ।
ଜବ ମୁଁ ଦେଖେ ପୁରୁଷ ମାତୁ କେ ଢିଁକ ଭଗି ଆବେଁ
ଅମ୍ମା, ବବ୍ବା ମଧୁର ତୋତଲୀ ବୋଲୀ ବୋଲେଁ ।।
ଗୋବର ଅରୁ ଗୋ-ମୂତ୍ର ପଙ୍କମହଁ ବହୁତର ଢୋଲେଁ ।
ଜବ ଦେଖୋ ତବ ଗୋଷ୍ଠ ମହଁ, ଚଞ୍ଚଳତା ଅଦଭୁତ କରେଁ ।
ଗୌଅନ କେ ପୌରନ ପରେ, ମୈୟା ଅତ ମନ ମହଁ ଡରେଁ ।।

## ପଙ୍କକାଦୁଅରେ ଲିପ୍ତ ରାମ-ଶ୍ୟାମ

ତନ୍ମାତରୌ ନିଜସୁତୌ ଘୃଣୟା ସ୍ନୁବନ୍ତ୍ୟୌ,
ପଙ୍କାଙ୍ଗରାଗରୁଚିରାବୁପଗୁହ୍ୟ ଦୋର୍ଭ୍ୟାମ୍ ।
ଦତ୍ତ୍ୱା ସ୍ତନଂ ପ୍ରପିବତୋଃ ସ୍ମ ମୁଖଂ ନିରୀକ୍ଷ୍ୟ,
ମୁଗ୍ଧସ୍ମିତାଳ୍ପଦଶନଂ ଯୟତୁଃ ପ୍ରମୋଦମ୍ ।।

(ଶ୍ରୀ ଭା ୧୦ ସ୍କ, ୮ ଅ, ୨୩ ଶ୍ଳୋକ)

## ଛପ୍ପୟ

କର ଉବଟନ ଅନ୍ହବାଇ ମାତୁ ଝଗୁରୀ ପହିନାବେଁ ।
ଗୋରଚନ କୋ ତିଲକ ଡିଠୌନା ଭଲ ଲଗାବେଁ ॥
ଇତ ଉତ ଦୀଠି ବଚାଇ ଗୋଷ୍ଠମହଁ ଲଲ ଜାବେଁ ।
ବଛରା, ଗୋବର, ଘାସ, କୀଚତେଁ ହୃଦ ମଚାବେଁ ॥
ମାତୁ ଉଠାବତ ଭର ବୁରତ, ପୁନ-ପୁନ ଚୁମତ ମଧୁର ମୁଖ ।
ଛାତୀତେଁ ଚିପଟାଇକେଁ, ହୃଦୟ ମହଂ ପାବେଁ ପରମ ସୁଖ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ମା ମାନେ ପୁଅମାନଙ୍କୁ କାଦୁଅ ପଙ୍କରେ ଖେଳୁଥିବା ଦେଖି ସ୍ନେହ ବଶୀଭୂତ ହୋଇ ପଡନ୍ତି । ସ୍ତନରେ କ୍ଷୀର ଭରି ଆସେ ଆଉ ସେମାନେ ପଙ୍କରୂପୀ ଅଙ୍ଗରାଗ ଅନୁଲିପ୍ତ ହୋଇ ସୁନ୍ଦର ମନେ ହେଉଥିବା ବାଳକମାନଙ୍କୁ ଉଠେଇ ନେଇ, ଛାତିରେ ଭିଡ଼ିଧରି ସ୍ତନପାନ କରାନ୍ତି । ଦୁଗ୍ଧପାନ କରୁଥିବା ସମୟରେ ସେମାନଙ୍କର ମଧୁର ସ୍ମିତହାସ ଏବଂ କୋମଳ ଦନ୍ତପଂକ୍ତି ଦେଖି ଅତିଶୟ ଆନନ୍ଦ ନିମଗ୍ନ ହୋଇ ଉଠନ୍ତି ।"

ଚଞ୍ଚଳତା କରୁଥିବା ବାଳକମାନଙ୍କ ସ୍ନେହପୂରିତ ହୃଦୟରେ ସେମାନଙ୍କର ସରଳତା ମୁଗ୍ଧ ହୋଇ ବାରମ୍ବାର ମୁଖ ଚୁମ୍ବନ କରନ୍ତି; ସେହି ମାତା-ପିତା କେତେ ଭାଗ୍ୟବାନ ନୁହନ୍ତି ! ବାଳକମାନଙ୍କର ପ୍ରତ୍ୟେକ ଲୀଳାରେ ସୁଖ ଅଛି, ସକଳ ସରସତା ରହିଛି । ସାରଲ୍ୟ ସହିତ ଆକର୍ଷଣ ରହିଛି । ବାଳକମାନେ ଯାହା କରନ୍ତି ସହଜ ସ୍ୱଭାବରେ କରନ୍ତି ଏବଂ ଯାହାବି କରନ୍ତି ସେଥିରେ ଏକ ପ୍ରକାର ଅଦ୍ଭୁତ ସୁଖ ରହିଥାଏ । ସେମାନଙ୍କର ପ୍ରତ୍ୟେକ କ୍ରିୟାରେ ବିନୋଦ ଥାଏ । ସହୃଦୟୀ ମାତାମାନଙ୍କର ହୃଦୟ, ବାଳକର ଚଞ୍ଚଳତାରେ ଆମୋଦିତ ହୋଇଉଠେ । ବାଳକ ଯେତେ ଅଧିକ ଚଞ୍ଚଳ ହେବ, ସେ ମାତା-ପିତାଙ୍କୁ ସେତେ ଅଧିକ ଆନନ୍ଦ ଦେବ । ଚଞ୍ଚଳତା ହିଁ ବାଳକର ଶୋଭା । ସେଇ ତ ବାଳ-ସ୍ୱରୂପ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ବଳଦେବଙ୍କ ସହିତ ଶ୍ୟାମସୁନ୍ଦର ଆପଣାର ବାଲ୍ୟକାଳରେ ଚଞ୍ଚଳତାପୂର୍ଣ୍ଣ କ୍ରୀଡ଼ା ଦ୍ୱାରା ବ୍ରଜବାସୀଙ୍କୁ ଯେଉଁ ସୁଖ ଦେଇ ଥିଲେ ତାହା କେହିହେଲେ ବର୍ଣ୍ଣନା କରି ପାରିବ ନାହିଁ । ସେହି କ୍ରୀଡ଼ାଗୁଡ଼ିକ ବ୍ରଜବାସୀ-ମାନଙ୍କୁ ତାତ୍କାଳିକ ସୁଖ ହିଁ ଦେଇ ନ ଥିଲେ, ସେମାନେ ଯେତେବେଳେ ବି ତାହା ମନେ ପକଉ ଥିଲେ, ଆନନ୍ଦଲାଭ କରୁଥିଲେ, ଭବିଷ୍ୟତରେ ମଧ୍ୟ ତାହା ମନେପକେଇ ଆନନ୍ଦିତ ହେଉଥିବେ । ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ହିଁ ବାତ୍ସଲ୍ୟରସର ଉପାସକଙ୍କର

ଜୀବନର ଆଧାର । ବାତ୍ସଲ୍ୟରସ ଭାବନାରେ ମୁଗ୍ଧ ଭାବୁକ ଭକ୍ତ ତାହାର ସ୍ମରଣରେ ନିର୍ଭୟରେ ଭବସାଗରକୁ ଅକ୍ଳେଶରେ ପାର କରିଯାଏ, ଏବଂ ଅନନ୍ତ କାଳ ପର୍ଯ୍ୟନ୍ତ ସେହି ସୁଖାନୁଭୂତି ପ୍ରାପ୍ତ ହୋଇଥାଏ ।"

ରାମ-ଶ୍ୟାମ ଗୋଶାଳାଟି ଚେଣ୍ଢି ନେଲେଣି । ଯେମିତି ନିଧି ପାଇଗଲେଣି । ଯେତେବେଳେ ବି ସୁବିଧା ମିଳି ଯାଉଛି ଗୁରୁଣ୍ଡି ଗୁରୁଣ୍ଡି ଗୁହାଳରେ ଆସି ପହଞ୍ଚି ଯାଉଛନ୍ତି । ହାତେଇ ପାଦେଇ ବାଛୁରୀଙ୍କ ଭଳି ଚାଲି ଗାଈଙ୍କ ତଳକୁ ଚାଲି ଆସୁଛନ୍ତି । ଗାଈମାନେ ଶୁଙ୍ଘି ଦେଇ ସ୍ୱାମୀ ବୋଲି ଚିହ୍ନି ପାଇ ପ୍ରଫୁଲ୍ଲିତ ହୋଇ ଉଠନ୍ତି, ତେଣେ ମାଆ ନେହମଣିକୁ ନ ଦେଖି ଦଉଡ଼ି ଆସନ୍ତି । ତାଙ୍କୁ ଗାଈମାନଙ୍କ ତଳେ ଦେଖି କହନ୍ତି— "ଏ କାହ୍ନୁ, ଭାରି ଦୁଷ୍ଟ । କେତେ ସାଧାସିଧା ଧନାପିଲା ମୋର ବଳିଆଡ଼ି । କେତେ ଉତ୍ପାତିଆ ଏ କାହ୍ନୁ ! ଗାଈ ତଳକୁ ଆସି ବସି ଯାଇଛି । ଲାତ ମାରିଲେ, କୁଦିଲେ, ଶିଙ୍ଘ ମାରିଲେ କେମିତି ହବ ? ଏହାକୁ ଟିକିଏ ବି ଡରନାହିଁ । ମାରଣା ଗାଈ-ଗୁଡ଼ା ପିଲାଙ୍କୁ ଚିହ୍ନିଏ ବୋଲି କେଉଁଠୁ ଜଣା ? ଏଇଆ କହୁ କହୁ କାଦୁଅ ସଲବଲ ଶ୍ୟାମକୁ ମାଆ କୋଳକରି ନିଅନ୍ତି । ଆଉ ଚୁମା ଦେଇ ଦେଇ କହନ୍ତି—'କାହ୍ନୁରେ ଭାରି ଦୁଷ୍ଟ ହେଲୁଣି ତୁ ! କୋଳ କଲେ କୋଳରେ ରହୁନୁ । ଛାଡ଼ି ଦେଲେ ଯାବତ ହଇରାଣ । ଭାରି ହାଲ୍ସିଆ । ଟିକିଏ ନାଆଁକୁ ଆଖି ଆଗରୁ ଗଲୁ ତ ଏଇଠି ଆସି ହାଜର । ଟିକିଏ ବୋଲି ଡରଭୟ ନାହିଁ ତୋର ! ପଶୁଙ୍କ ମଝିରେ ଖେଳନ୍ତି !' ମାଆଙ୍କ କଥା ଶୁଣି ଶୁଣି କେତେ ସରଳ ଚାହାଣୀରେ ମାଆ ମୁହଁକୁ ଅନେଇ ରହନ୍ତି । ଆଉ କଥା ଧରି ନିଅନ୍ତି, ହାତ ଟାଣି ବତାନ୍ତି । ଯେମିତି କହୁଛନ୍ତି—"ମୁଁ ଗାଈଆଳ ନା ? ଗାଈଆଳକୁ ଗାଈ ଠିକ୍ ଚିହ୍ନେ । ମୁଁ ତ ସେମାନଙ୍କର କର୍ଣ୍ଣଧାର—ମୋ' ହାତରେ ତାଙ୍କର ନଥ । ମୁଁ ସେମାନଙ୍କ ନାଥ । ତୋ' ନାକର ନଥ ପରି ମୁଁ ତାଙ୍କର ବି । ମୋର ସବୁକଥା ସେମାନେ ମାନନ୍ତି ।"

ମା' ପୁଅର ଖେଳ ଦେଖି ମୁରୁକେଇ ହସନ୍ତି । ସ୍ତନରେ କ୍ଷୀର ଭରି ଭରି ଆସେ । ପୁଣି ଗାଧୋଇ ଦେଇ ନୂଆ କାନ୍ଥୋଟି ପିନ୍ଧେଇ, ଗୋରୋଚନା ଚନ୍ଦନ କଜଳ ଲଗେଇ କେତେ ବାଗରେ ସଜେଇ ଦିଅନ୍ତି । ଏମିତି ଦୁଇ ମାଆ ପିଲାଙ୍କ ପାଇଁ ଧନଯାର ଲାଗି ରହନ୍ତି । ଦିନେ ଯଶୋଦା କେତେ ଯତନରେ ଶ୍ୟାମସୁନ୍ଦରଙ୍କୁ ତେଲ ହଳଦୀ ଲଗେଇ ପାଣି ଗରମ କରି ଗାଧୋଇ ଦେଲେ, ପରା ଗାମୁଛାରେ ଦେହ ପୋଛି ଦେଲେ । ସେତେବେଳେ କଳାକାହ୍ନୁଙ୍କ ସୁନ୍ଦର ଚିକ୍କଣ ଦେହ ନୀଳମଣି ଭଳି କେତେ ସୁନ୍ଦର ମନେ ହେଉଥିଲା । ଦେଇ ସ୍ନିଗ୍ଧ ଶ୍ରୀଅଙ୍ଗର ସ୍ପର୍ଶରେ ମାଆଙ୍କର ଶରୀର ବାରମ୍ବାର ରୋମାଞ୍ଚିତ ହୋଇ ଉଠୁଥିଲା । ହୃଦୟରେ ବାତ୍ସଲ୍ୟ ସ୍ନେହର ଜୁଆର ଖେଳି ଯାଉଥିଲା । ପୁଅର ରୂପ ମାଧୁରୀର ରସପାନ କରିବାରେ କେତେବେଳେ ବି ତାଙ୍କୁ ତୃପ୍ତି ଲାଗୁ ନ ଥିଲା । ତାଙ୍କୁ ସେ ଅତି ସୁନ୍ଦର ରେଶମୀ ପୀତାମ୍ବର ପିନ୍ଧେଇ ଦେଲେ । ଆଖିରେ କଜଳ ଲଗେଇ

ଦେଲେ । ଚନ୍ଦନ ତିଳକ ଲଗେଇ ଦେଲେ କପାଳରେ । କଜଳ କଳା କୁଞ୍ଚିତ କେଶରେ ସୁଗନ୍ଧିତ ତେଲ ଲଗେଇ ଦେଇ ସୁନ୍ଦର କରି କୁଣ୍ଡେଇ ଦେଲେ । ଆଉ ତାଙ୍କର ସୁନ୍ଦର ମୁହଁଟିକୁ ଚାହିଁ ରହିଲେ । ଯେତେ ଦେଖିଲେ ବି ମାତାଙ୍କର ମନ ସନ୍ତୋଷ ହେଉ-ନ ଥିଲା । ନୟନ ପିତୁଳି କରିନେବେ, ହୃଦୟରେ ଲୁଚେଇ ନେବେ ବୋଲି ଭାବୁଥିଲେ ହୁଏତ ।

ତେଣିକି ଆଉ ଶ୍ୟାମସୁନ୍ଦର ମାଆ କୋଳରେ ରହିପାରିଲେ ନାହିଁ । ଶୃଙ୍ଗାର ବଢ଼ିଲା, ପେଟ ପୂରିଲା, ମାଆ କୋଳରେ ଆଉ କି କାମ ? ଭାରି ସ୍ୱାର୍ଥୀ । ଯୋଉଠି ସ୍ୱାର୍ଥ ନାହିଁ ସେପଟେ ଚାହିଁବେ ନାହିଁ । କଥା ବି କହିବେ ନାହିଁ । ନିଜର ଦରକାର ଥିଲେ ଜବରଦସ୍ତି କୋଳକୁ ଚଢ଼ି ଯିବେ । ମାଆ ଦେଖିଲେ ପୁଅ ଖେଳିବାକୁ ମନକଲାଣି । କୋଳରୁ ଓହ୍ଲାଇ ଦେଲେ । ଏବେ ତ ସେ ଆଣ୍ଠେଇ ଚଢ଼ି ଦଉଡ଼ିବାକୁ ବସିଲେଣି । ଏଣେତେଣେ ଅଗଣାରେ ବୁଲିବାକୁ ଲାଗିଲେ । ମାଆ ଝୁଲି ପଡ଼ିଥିବା ଲୁଗାକାନି ସଜାଡ଼ି ଦେଇ ପିଠି ପଟକୁ ବାନ୍ଧି ଦେଲେ, ଯେମିତି ମଇଳା ହବନାହିଁ, ଦେହରେ ଧୂଳି ଲାଗିବ ନାହିଁ । ହେଲେ, ସେ ତ ଧୂଳିକୁ ସର୍ବସ୍ୱ ମଣୁଥିଲେ । ଭାରି ଆନନ୍ଦରେ ଧୂଳି ଖେଳି ବସିଲେ । ସେତିକିବେଳେ କଣେ କେହି ଗୋପୀ କୋଉ କାମ ପାଇଁ ଡାକୁଥିଲେ ମାଆ ତା' ପାଖରେ କ'ଣ କଥା ହେଲେ, କିଛି ଜିନିଷ ଆଣି ଦେବାକୁ ଭିତରକୁ ଗଲେ । ପାଖେ ପାଖେ ଏଇଟି ବନ୍ଧ ତେଣିକି ସେ ଯାଇ ଗୁହାଳରେ ହାଜର । ସେଇଠି ଗୋମୂତ୍ର ଜମା ହୋଇ ରହିଥିଲା । ଗୋବର ଘଲବଲ କାଦୁଅ ଭର୍ତ୍ତି ହୋଇ ରହିଥିଲା । ସେ ଭାବିନେଲେ, ସେଇ କ୍ଷୀର ସାଗର । ପଶିଯାଇ ଆନନ୍ଦରେ ଖେଳିବାକୁ ଲାଗିଲେ । ସେଇ ପାବନ ପଙ୍କରେ ବିହାର କରି ବିହାରୀ ବେଶ୍ ଆନନ୍ଦ ଅନୁଭବ କରିବାକୁ ଲାଗିଲେ । ପାଟଲୁଗା କାଦୁଅ ଘଲବଲ ହୋଇଗଲା, ଦେହସାରା କାଦୁଅ । ସେ ଦୁଇ ହାତରେ କାଦୁଅ ପିଟି ଚାଲୁଥାନ୍ତି, ଆଉ ଆନନ୍ଦରେ କୁରୁଳି ଉଠୁଥାନ୍ତି । କାଦୁଅ ପିଟି ଚାଲିବାରୁ ଛିଟିକି ଆସୁଥିବା ବିନ୍ଦୁ ବିନ୍ଦୁ କାଦୁଅ କପାଳରେ ଚନ୍ଦ୍ରମା ଦେହରେ କଳଙ୍କ ଚିହ୍ନ ଭଳି ମନେ ହେଉଥାଏ । ସେତିକିବେଳେ ମାଆ ଭିତରୁ ବାହାରି ଆସିଲେ । ତାଙ୍କର ଶରୀର ଯିନା ଭିତରକୁ ଚାଲି ଯାଇଥିଲା ମନ ତ ତାଙ୍କରି ପାଖରେ ରହି ଯାଇ ଥିଲା । ଆସି ହେଲା ମାତ୍ରକେ ସେ ଅଗଣାର ଏଣେତେଣେ ଚାହିଁ ତାଙ୍କୁ କୋଉଠି ହେଲେ ଦେଖିଲେ ନାହିଁ । ସେ ବୁଝିଗଲେ ଯେ ପୁଅ ଦୁଷ୍ଟାମୀ କରି ନିଶ୍ଚୟ ଗୁହାଳକୁ ଯାଇଛି । ସେ ଗୁହାଳକୁ ଦଉଡ଼ି ଆସିଲେ । ଦେଖିଲେ ବାବୁ ପଙ୍କରେ ଲେଟି ରହିଛନ୍ତି । ସେ ହସ ରୋକି ପାରିଲେ ନାହିଁ । ଦେଖାଣିଆ ରାଗି ଧମକେଇ କହିଲେ—'ଦେଖ କାହ୍ନା, ଭାରି ଦୁଷ୍ଟ ହେଲୁଣି ଦିନୁଦିନ । ମୁଁ କେତେ ଲାଗି ତୋତେ ଗାଧୋଇପାଧୋଇ ଦେଲି ଅଉ ଏଣେ ଆସି କାଦୁଅ ଘଲବଲ ହୋଇ ଗଲୁ କି ? ଯାହା ଲାଗୁଛି ଗଲା ଜନ୍ମରେ ଶୂକର କୂପରେ ଜନ୍ମ ହୋଇଥିଲୁ ଯେ ସେଇ କାଦୁଅ ମଳି ହେବା ଯାଇନି ।

ମାତା ତାଙ୍କୁ ଶୃଙ୍ଗାର କରୁଥିବା ଦେଖି ଶ୍ୟାମସୁନ୍ଦର ବସି ରହି ଆଖିରେ ତାଙ୍କୁ ଚାହିଁ ରହିଲେ । ମାଆ ଜାଦୁଅ ଧଳବଳ ପୁଅକୁ ଉଠେଇ ନେଲେ । ପଣତ କାନରେ ମୁହଁପୋଛି ଦେଲେ । ଧୋଇ ଦେଇ ପୁଣି ସଫା ସୁତୁରା କଲେ । ନୂଆ ପୋଷାକ ପିନ୍ଧେଇ ଦେଲେ । କ୍ଷୀର ଖୁଆଇଲେ ଆଉ ଶୁଆଇ ଦେଇ ବସିଲେ । ନାନା ଉପମାରେ ବେଦ ଯା'ର ସ୍ତୁତିପାଠ କରନ୍ତି ମାଆ ତାଙ୍କୁ ଶୃଙ୍ଗାର କରି ଗାଳି ଦଅନ୍ତି, ଆଉ ଗାଳିଶୁଣି ମନ୍ଦ ମନ୍ଦ ହସୁଥିବା କାହ୍ନାକୁ ଦେଖିଲେ ଯେ କେହି ଭାବିବ ବେଦ ସ୍ତୁତିଠାରୁ ଏ ଗାଳି ଶୁଣିବାରେ ତାଙ୍କର ଆନନ୍ଦ ଅଧିକ ।

ଆଉ ଦିନେ ସେ ଗାଈମାନଙ୍କର ପାଣି ପିଆ କୁଣ୍ଡ ଉପରକୁ ଚଢ଼ିଗଲେ । ସେମାନେ ପିଇଲା ପାଣିରେ ପଶି ପଶି ଗ୍ରୁଟିବାକୁ ଲାଗିଲେ । ମାଆ ପୁଅର ଏ କାଣ୍ଡ ଦେଖି କହିଲେ—"କାହ୍ନାରେ, ତୁ ଗଲା ଜନ୍ମରେ ନିଶ୍ଚେ ମାଛ କି କଇଁଛ କ'ଣ ହୋଇଥିବୁ ନ ହେଲେ ପାଣିକି ଏତେ ଶରଧା ହୁଅନ୍ତା କୁଆଡ଼ୁ । ସବୁ ଲୁଗା ଓଦେଇ ଦେଲୁଣି । ଚାଲ ଏଣିକି ତୋତେ ବାନ୍ଧି ରଖିବି । ଆଉ ସେ ପୁଅକୁ ନେଇ ଚାଲିଲେ ।"

ଆଉ ଦିନେ ସେ ମୁହଁ ଯାକ ଧୂଳି ବୋଳି ହୋଇ ଆଣ୍ଠେଇ ପଞ୍ଚ ବେଗି ବେଗି ଚାଲିଥିଲେ । ମାଆ ଧରି ପକେଇଲାରୁ ଗୁରୁ ଗୁର୍ କରିବାକୁ ଲାଗିଲେ । ମା' କହିଲେ—"ତୁ କ'ଣ ସିଂହ ଛୁଆ ପରି ହେଣ୍ଟାଳ ହେଲୁଣି । ପୂର୍ବେ କୋଉଁ ଜନ୍ମରେ ସିଂହ ହୋଇଥିଲୁ ନା କ'ଣ ?" କେତେବେଳେ କୋଉ ଗୋପୀ ପାଖରେ କିଛି ଜିନଷ ଦେଖିଲେ ତାକୁ ମାଗି ବସନ୍ତି । ସେତେବେଳେ ମାଆ କହନ୍ତି—"ଭଲରେ ପୁଅ, ଏବଠୁଁ ଭିଖ ମାଗିବା ଆରମ୍ଭ କରି ଦେଲୁଣି । ଗଉଡ଼ ପିଲା କ'ଣ କେବେହେଲେ ଭିକ ମାଗେ ? ତୁ ନିଶ୍ଚେ କୋଉ ହେଲେ ଜନ୍ମରେ ବାମନ ହୋଇଥିବୁ ।" ଦିନେ ମାଆ ପାଖରେ ଥିବା ପରିବା କଟା ଛୁରି ନେଇ ପାଖରେ ଥିବା ମୂଳା କାଟି ବସିଲେ । ମାଆ ବ୍ୟସ୍ତ ହୋଇପଡ଼ି କହିଲେ--ଆରେ ରେ କାହ୍ନା ! କ'ଣ କରୁଛୁ ତୁ ? ଏତେ ବଡ଼ କଟେ ଅଛୁ । କଟାଛଟା ଆରମ୍ଭ କରି ଦେଲୁଣି । ଗଲା ଜନ୍ମରେ କୋଉ ନିର୍ଦ୍ଦୟୀ ହାଣକାଟ କଲାବାଲା ବ୍ରାହ୍ମଣ ହୋଇଥିଲୁ ନା କ'ଣ ?" କେତେବେଳେ ଗୋପାଳଙ୍କର ଶର ଉଠେଇ ଫିଙ୍ଗନ୍ତି, ମୁହଁରେ କାମୁଡ଼ି ଧରନ୍ତି, ହାତ ଘାଉଁଲେଇ ଆଣନ୍ତି, ତ ମାଆ ଘରି ବ୍ୟସ୍ତ ହୋଇପଡ଼ି କହନ୍ତି—'ଜାଣିଲୁ କିଛି ଆଉ ଶରମାରିବା ଆରମ୍ଭ କରି ଦେଲୁଣି । ମୃଗୟା କଲାବାଲା କ୍ଷତ୍ରିୟ ହୋଇଥିବୁ କୋଉ ଜନ୍ମରେ ।" ଏଭଳି ଭାବରେ ପୁଅ ଯୋଉ କଥା କରେ ମାଆ କିଛି ନା କିଛି ଅନୁମାନ କରି କହି ଦଅନ୍ତି । ଏଣିକି ସେ ଗେଡ଼େଇ କହିବାକୁ ଲାଗିଲେଣି । ଯାହା ମିଳିଲା ପାଟିରେ ପୁରେଇ ଦଉଛନ୍ତି । ଦେଖିଲେ ମାଆ କହନ୍ତି—କାହ୍ନା, ତୁ ସର୍ବଭକ୍ଷୀଟାଏରେ ! କେଜାଣି ତୋ ପେଟରେ କ'ଣ ଅଛି ? ଭଲ ଗୋଡ଼, ପଥର, ଚଟ୍ଟୁ, ଛୁରି, ବଟକରା ଏ ସବୁ ଖାଇବା ଜିନଷ ନା ? ଯାହା ପାଉଲୁ ପୁରେଇ ଦେଲୁ ପାଟିରେ ।"

ସୂତ କହୁଛନ୍ତି—"ହେ ମୁନିଗଣ ! ଏଭଳି ମାତାମାନଙ୍କୁ ଗୁରୁଣ୍ଡି ଗୁରୁଣ୍ଡି ନାନା ଖେଳ କରୁଥିବା ଏବଂ ଆନନ୍ଦ ଦେଉଥିବା ରାମ ଶ୍ୟାମ ବ୍ରଜ ବିହାର କରୁଥିଲେ । ଏବେ ଧୀରେ ଧୀରେ ପାହୁଣ୍ଡ ପକେଇବା ଆରମ୍ଭ କଲେଣି ।"

## ଛପ୍‌ପୟ

ଚମ୍ପଲତା କୂଁ ନିରଖି ମାରୁ ଖୀଜେଁ ହରଷାବୈଁ ।
କଛୁ ମଛ ବାରହ କବହୁଁ ବଟୁ ବପୁ ବତାବୈଁ ॥
ପା ପାଁ ପୈୟାଁ ଚଲେ ଖାଇଁ ଅବ ମାଖନ ରୋଟୀ ।
କରେଁ ମାରୁ ତୈ ସର ସେଷ ମହୁଁ ପକରେ ଚୋଟୀ ॥
ମଧୁର ମଧୁର ବତୟାଁ କରେଁ, ବ୍ରଜବାସୀନ କେ ମନ ହରେଁ ।
ରସିୟା ଗାବୈଁ ନାଚ କେ, ନିତ ନୂତନ ଲୀଲା କରେଁ ॥

•

# ଗୋବତ୍ସ ବିହାରୀ ରାମ-ଶ୍ୟାମ

ଯର୍ହ୍ୟଙ୍ଗଦର୍ଶନୀୟ କୁମାର ଲୀଲା
ବନ୍ତର୍ବ୍ରଜେ ତଦବଲାଃ ପ୍ରଗୃହୀତପୁଚ୍ଛୈଃ ।
ବତ୍ସୈରିତସ୍ତତ ଉଭାବନୁକୃଷ୍ୟମାଣୌ
ପ୍ରେକ୍ଷନ୍ତ୍ୟ ଉଜ୍‌ଝିତଗୃହା ଜହୃଷୁର୍ହସନ୍ତ୍ୟଃ ॥
(ଶ୍ରୀ ଭା ୧୦ ଅ ୮ ୨୪ ଶ୍ଳୋକ)

## ଛପ୍‌ପୟ

ବଛରନ କୀ ଗହି ପୂଁଛ ଲଟକକେ ଇତ ଉତ ଜାବୈଁ ।
ଗୈୟା ମୈୟା ଭେଁସି ବମରୟା କହି କହି ଗାବୈଁ ॥
ପକରୈଁ ଗୈୟନ ସୀଂଗ କୁଦକି ଊପର ଚଢ଼ି ଜାବୈଁ ।
ତା ତା ଥଇୟା କରେ ଲୁଗାଇନ ନାଚ ଦିଖାବୈଁ ॥
କଣ୍ଠ ମଧୁର ସ୍ୱର ମନ ହରନ, ବାଲ ସୁଲଭ କୂଜତ କଲିତ ।
ହୋହିଁ ମୁଦିତ ମନ ମାରୁ, ଅରୁ ଗୋପୀ ଲଖି ଲୀଲା ଲଲିତ ॥

ଶ୍ରୀ ଶୁକ ଦେବ କହୁଛନ୍ତି—"ରାଜନ୍ ! ଯେତେବେଳେ ରାମ ଶ୍ୟାମ ଟିକେ ବଡ଼ ହୋଇଗଲେ ସେତେବେଳେ ସେ ବ୍ରଜାଙ୍ଗନାଙ୍କ ନିମନ୍ତେ ଦର୍ଶନୀୟ କୁମାର ଲୀଳା କରିବାକୁ ଲାଗିଲେ । ଯେତେବେଳେ ବାଛୁରିମାନଙ୍କର ଲାଞ୍ଜ ଧରି ଟାଣନ୍ତି ଓ ବାଛୁରିଗୁଡ଼ିକ ବି ତାଙ୍କୁ ଏଣେ ତେଣେ ଟାଣି ନିଅନ୍ତି । ସେତେବେଳେ ଗୋପୀମାନେ ବାହାରି ଆସି ଏ ଲୀଳା ଦେଖି ଆନନ୍ଦ ବିଭୋର ହୋଇ ଉଠନ୍ତି ।"

ଯେ ଯେଉଁ ଜାତିର ବାଳକ, ସେ ପ୍ରାୟ ସେଇ ଜାତିର ଖେଳ ଖେଳେ । ମାତା ପିତା ଅବୋଧ ବାଳକଙ୍କୁ ନେଇ ଉଚିତ ଅନୁଚିତ ଅନେକ ପ୍ରକାର କଥା କୁହନ୍ତି । ସେମାନେ ଭାବନ୍ତି—ପିଲା ତ କିଛି ବି ବୁଝେ ନାହିଁ । ହେଲେ ତାହା ଏକ ଭ୍ରମ । ପିଲା ସବୁ କିଛି ବୁଝେ । ମାତା ପିତା ଯାହା ବି କରନ୍ତି, ତା'ର ସଂସ୍କାର ଚିତ୍ର ପରି ତା'ର ମନରେ ଅଙ୍କି ଯାଉଥାଏ । ଆଉ ସେ ଯେତେବେଳେ କଥା କହିବା ଆରମ୍ଭ କରେ ସେତେବେଳେ ସେ ତା'ର ନିଜ ଭଙ୍ଗୀରେ ସେହି କଥା ଖେଳବେଳରେ କହିବସେ । ଖେଳବେଳେ ବ୍ୟକ୍ତ କରୁଥିବା କଥା ବଡ଼ ହେଲେ କହିଥାଏ । ଆମେମାନେ ଗାଆଁ ଦାଣ୍ଡରେ ପିଲାଙ୍କୁ ଖେଳୁଥିବା ଦେଖୁଁ । ଅବୋଧ ବାଳକ ବାଳିକା ବାଲିଘର ତିଆରି କରନ୍ତି, ଖେତ ତିଆରି କରନ୍ତି, ଚୂଲି ବାସନ କୁସନ, ଘରକରଣା ଜିନିଷ ଯେତେ ପାରନ୍ତି କରନ୍ତି । ଗାଈ ବଳଦ ପର୍ଯ୍ୟନ୍ତ ମାଟିରେ ତିଆରି କରି ନିଅନ୍ତି । ଝିଅଟିଏ ଓଢ଼ଣା ଟାଣି ବୋହୂ, ବନିଯାଏ । ମାଟିରେ ଭାତ, ତୁଛି ରାନ୍ଧି ବସେ । ପୁଅପିଲାଟିଏ ତା' ବର ହୁଏ । ଖେତରୁ ହଳ ନେଇ ଫେରେ । ରନ୍ଧାବଢ଼ା ହୋଇ ନ ଥାଏ ବୋଲି ବୋହୂକୁ ଧମକାଏ, ମାରେ । ଏ ସବୁ କେହି ତାହାକୁ ଶିଖାନ୍ତି ନାହିଁ । ପିଲାଏ ଘରେ ଯାହା ଦେଖନ୍ତି ସେଇଆ କରନ୍ତି । ବୋହୂ ସାଜିଥିବା ଝିଅଟି ତା'ର ଭଉଣୀ ହୋଇଥିବ । ପିଲାଙ୍କୁ କି ଜଣା ବୋହୂ କିଏ କ'ଣ ? ସେମାନେ ଘରେ ଯୋଉ କଥା ଦେଖନ୍ତି ଜାଣନ୍ତି ସେ ସବୁ ଖେଳ ହେଉ ପନ୍ଥରେ କରନ୍ତି । ବଣିଆ ପିଲାଏ ସେମିତି ଦୋକାନ, ବେପାର ବଣିଜ ଖେଳ ଖେଳନ୍ତି । କ୍ଷତ୍ରିୟ ପିଲାଏ ରଜାଖେଳ ଖେଳନ୍ତି । ଗଉଡ଼ ପିଲାଏ ଆଉ ଖେଳିବେ କ'ଣ ସେଇ ଗାଈ ଖେଳ । ସାମନାରେ ଯାହାଥିବ ସେଇଆର ଖେଳ । ଏ ସଂସାର ବି ସେମିତି ଖେଳ-ପଡ଼ିଆଟିଏ । ଏଠାରେ ଜୀବ ଖେଳେ, ସ୍ୱୟଂ ଭଗବାନ ବି ଆସି ଖେଳନ୍ତି ।

ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ରୀ କୃଷ୍ଣଙ୍କର ବାଲ୍ୟଲୀଳା ଅତି ମଧୁର ଆଉ ଅନୁରାଗ ରାଗ ରଞ୍ଜିତ । ତା'ର ବର୍ଣ୍ଣନା କିଏ କରିପାରିବ ! ଶ୍ରୀକୃଷ୍ଣ ଧୀରେ ଧୀରେ ପାହୁଣ୍ଡ ପକେଇ ଚାଲି ବ୍ରଜବାସୀଙ୍କୁ ଆନନ୍ଦିତ କରିବାକୁ ଲାଗିଲେ । ଡେଣିକି ମା' ଆଙ୍ଗୁଠି ଧରି ତାଙ୍କୁ ଚାଲିବା ଶିଖେଇ ବସିଲେ । ପାଦରେ ନୂପୁର ଝୁଣୁଝୁଣୁ ଶବ୍ଦ କରୁଥାଏ । ମାଆ ତାଙ୍କର ହାତ ଧରି କହନ୍ତି—ଦେଖ, ପୁଅ କେମିତି ଚାଲୁଛି ! ବା ବାରେ···ବା ବାରେ···ଯେଇ

ଥେଇ···ଚାଲ···ଚାଲ···ଆ ଆ···ଆରେ···କାହ୍ନା···ଆ ବଳିଆ···କହି କହି ତାଳି ମାରି ମାରି କେତେ ଆନନ୍ଦରେ ପୁଅମାନଙ୍କୁ ଚାଲିବା ଶିଖାନ୍ତି ମାଆମାନେ ! ବଳରାମ ତ ବଡ଼ ହୋଇ ଗଲେଣି; ତେଣୁ ଆଙ୍ଗୁଠି ଧଇଲେ ବେଶ୍ ଆଗେଇ ଆସନ୍ତି । ଇଏତ ସାନ-! ପାରିବେ କେମିତି; କେମିତି ବା ଆଗେଇ ଯିବେ । ବଡ଼ ଭ ତାଙ୍କୁ ଆଗକୁ ଛାଡ଼ନ୍ତି ନାହିଁ । ସେତିକିରେ କାନ୍ଦ ପକାନ୍ତି କୃଷ୍ଣ । ଲୁହ ଝରି ଆସିଲେ ମାଆ ଝଅଟ କାଖେଇ ନେଇ ତାଙ୍କୁ ଆଗେଇ ଦେଇ ତାଳି ବଜେଇ ବଜେଇ କହନ୍ତି 'କନୁଆ ମୋର ଆଗକୁ ବଢ଼ିଗଲା.... ବଢ଼ିଗଲା ।' ବାସ୍ ତେଣିକି ଖୁସି ହୋଇ ଯାଆନ୍ତି ସେ । ତାପରେ ନିଜେ ଚାଲି ଯାଆନ୍ତି ଦୁ' ଚାରି ପାଦ ଚାଲି ଗଲେ ପାଦ ଟଳମଳ ପଡ଼ିଗଲେ ମା' ବାହାନା ଦେଖେଇ କହନ୍ତି··· 'ମରିଗଲା ତଳେ ପିମ୍ପୁଡ଼ିଟିଏ ।' ତେଣିକି ସିଏ କାନ୍ଦଣା ଭୁଲି ପଚାରନ୍ତି ...'ମାଆ, କୋଉଠି ମଲା ?' ମାଆ ପୁଣି କୋଳକରି ନଅନ୍ତି । ଏଣିକି ତାଙ୍କର ବ ଚାଲିବାରେ ଆନନ୍ଦ । କୋଉ ଗୋପୀ ଆଙ୍ଗୁଠି ଧରିଲା ନାହିଁ ତ ନିଜେ ନିଜେ କାନ୍ଥ ଧରି ଠିଆ ହୋଇ ପଡ଼ିବେ । ସେତିକିବେଳେ କୋଳ କରିନେଇ ମାଆ ଖୁସିରେ କହିବେ । 'ଦେଖ, କେମିତି କାହ୍ନା ମୋର ନିଜେ ନିଜେ ଠିଆ ହେଲାଣି ! ଚାଲ୍···ଚାଲ୍ ଦେଖି ! ମୋତେ ଛୁଁ···!''

ତା'ପରେ ସେ ମାଆଙ୍କୁ ଛୁଇଁବା ଲାଗି ଦଉଡ଼ି ଯିବେ, ମଝିରେ ଲଡ଼ବଡ଼ ହୋଇ ପଡ଼ି ବସିଲେ ମାଆ ଦଉଡ଼ି ଆସି କୋଳ କରିନେବେ । ଚୁମା ଦେଇ ଗେହ୍ଲେଇ କହିବେ··· 'ପିଇ ନେ ପେଟ ପୁରା କ୍ଷୀର ! ବେଶୀ ବେଶୀ କ୍ଷୀର ପିଇଲେ ଝଅଟ ଝଅଟ ଚାଲିବୁ ।' ସେ କହିବେ···'ଦେ ତା'ହେଲେ ବହୁତ କରି ।' ମାଆ ମିଶ୍ରି ପକେଇ ଦୁଧ ପିଆଇ ଦେବେ । ପିଇସାରି ସେ ପୁଣି ଚାଲିବା ଆରମ୍ଭ କରିଦେବେ ଆଉ ଗୋପୀମାନେ ହସି ହସି ଆନନ୍ଦରେ ତାଳି ମାରିବେ ।

ସୂର୍ଯ୍ୟ ଉଇଁଲା ଆଗରୁ ମାଆ ତାଙ୍କୁ ଶେଯରେ ଛାଡ଼ିଦେଇ ଆସି ଦହି ମନ୍ଥି ବସନ୍ତି । ନିଦ ଭାଙ୍ଗିଲା ମାତକେ ସେ ଖୋଜନ୍ତି ମାଆଙ୍କୁ । ଦହି ମନ୍ଥିବାର ଘର୍ ଘର୍ ଘର୍ ଘର୍ ଶବ୍ଦ ଶୁଣି ସେ ପଲଙ୍କ ବାଡ଼ ଧରି ଧୀରେ ଧୀରେ ଓହ୍ଲେଇ ପଡ଼ନ୍ତି, ଆଉ ମାଆଙ୍କୁ କୁଣ୍ଢେଇ ଧରନ୍ତି ପଛ ପଟୁ । କାନ୍ଦି କାନ୍ଦି କହନ୍ତି—''ଭୋକ ହେଲାଣି ··।''

ମାଆ କହନ୍ତି—''ଆଗ ମୁହଁ ଟା ଧୋଇପକା ! ସକାଳ ହେଉ !'' କିନ୍ତୁ ତାଙ୍କର ରାତି ତ କେବେ ବ ହୁଏନାହିଁ । ଅନ୍ଧାର କେତେବେଳେ ବ ହୁଏନାହିଁ । ସବୁବେଳେ ଆଲୁଅ ହିଁ ଆଲୁଅ । ଅଶୁଚ ହୋଇଥିଲେ ସିନା ସେ ମୁହଁ ଧୁଅନ୍ତେ । ସଦା ଶୁଚ ପାଇଁ ବାହାର ଶୌଚର କି ଦରକାର ଅଛି ? ସେ ଅଡ଼ି ବସନ୍ତି । ମାଆ ଲହୁଣୀରେ ଗ୍ରେଟିଆ ଗୋଲାଟିଏ କରି ହାତକୁ ବଢ଼େଇ ଦଅନ୍ତି । ଧାଙ୍ଗେ ସାଙ୍ଗେ ପାଟିରେ ପକେଇ ଦେଇ ପୁଣି ମାଗି ବସନ୍ତି । ମାଆ ଶିକାରୁ ପିଠା ଅଣି ଦେଥିରେ ଲହୁଣୀ ବୋଳି ଦେଇ,

ଟିକଏ ଲୁଣ ଛୁଆଁଇଦେଇ ଧରେଇ ଦେଲେ ଶ୍ୟାମ ସୁନ୍ଦର ଟିକଏ ଟିକଏ କରି ଦାନ୍ତରେ କଟୁରି କରୁରି ଖାଇ ବସନ୍ତି । ଖାଇନେଇ ପୁଣି ଆସି ମାଆ କୋଳରେ ଢଳେଇ ବସନ୍ତି । ମାଆ ଦହି ମନ୍ଥିବା ସାରିଦେଇ ଉଠିଲେ ତାଙ୍କର ଗାଧୁଆ ପାଧୁଆ କରି, ମୁଣ୍ଡ କୁଣ୍ଡେଇ ଘଷେନ କରି, ଚଲେଇ ଖେଳେଇ ବସନ୍ତି । ଏବେ ଏବେ କାହାରି ବି ସାହାଯ୍ୟ ନ ନେଇ ସେ ବଳଦେବଙ୍କ ସାଙ୍ଗରେ ଗୁହାଳକୁ ଚାଲି ଯାଉଛନ୍ତି । ସେଇଠି ପହଞ୍ଚି କୁନିକୁନି ବାଛୁରୀଙ୍କ ସାଙ୍ଗରେ ଖେଳିବା ଆରମ୍ଭ କରି ଦିଅନ୍ତି । ଦିନେ ବଳଦେବ ବାଛୁରୀଟିଏର ଲାଞ୍ଜ ଧରିନେଲେ । ପିଲାଙ୍କ ସ୍ୱଭାବ ହେଲା ଜଣେ ଯାହା କରିବ ତା' ଦେଖାଦେଖି ଆଉ ଜଣେ ବି ସେଇଆ କରିବ । ତା' ସାଙ୍ଗରେ ବଳ କହିଲା ଭଳି । ବଳଦେବ ଧରିନେଲେଣି ଯେତେବେଳେ ମୁଁ କେମିତି ପଛେଇ ଯିବି ? କାହ୍ନା ବି ଆଉ ଗୋଟାଏ ବାଛୁରୀର ଲାଞ୍ଜ ଧରିନେଲେ । ସେ ବାଛୁରୀଟି ଶ୍ୟାମ ସୁନ୍ଦରଙ୍କ ପରି ଚଞ୍ଚଳ ଥିଲା । ଲାଞ୍ଜ ଧରିବା ମାତ୍ରକେ ସେ ଡେଇଁପଡ଼ି ଦଉଡ଼ିବା ଆରମ୍ଭ କରିଦେଲା । ସେ ତ ହେଲା ମଣିଷ ! ଡରିଗଲେ ଆଉ କସିକରି ଧଇଲେ ଲାଞ୍ଜଟିକୁ । ତା' ପରେ ସେ ବାଛୁରୀ ଦଉଡ଼ିବାକୁ ଲାଗିଲା । ଆଉ ସେ ମାଙ୍କଡ଼ ପିଲାଟିଏ ପରି ଲାଞ୍ଜଧରି ଝୁଲିହେଲା ପଛିଆନ୍ତି । ଗୋପୀମାନେ ଦଳ ଦଳ ହୋଇ ତୁଣ୍ଡ ହୋଇଗଲେ । ଆଉ ତାଳି ମାରିମାରି ହସିବାକୁ ଲାଗିଲେ । ଏତିକିବେଳେ ରୋହିଣୀ ଆସି ପହଞ୍ଚିବେ । ସେ ତୁରନ୍ତ ଶ୍ୟାମଙ୍କୁ କୋଳେଇ ନେଇ କହିଲେ—"ଭାରି ଉଦଣ୍ଡ ହେଲୁଣି ତୁ କାହ୍ନୁରେ । କଏ ପୁଣି ବାଛୁରୀ ଲାଞ୍ଜରେ ଓହଳି ଯାଏ ।' ଏହା ଶୁଣି ଖିଲିଖିଲି ହସିଲେ ସେ । ସେଇଭଳି ହସ ଭିତରେ ବଳଦେବଙ୍କୁ କହିଲେ—ତୁ ବି ସେମିତି ତୋ ବାଛୁରୀକି ଚଲା ! ବଳଦେବ ଉହୁଁ କି ଆସି ଲାଞ୍ଜ ଧରନ୍ତେ କ'ଣ ଧଡ଼ାସ୍‌କିନା କଚଡ଼ି ହୋଇ ତଳେ ପଡ଼ିଗଲେ । କାନ୍ଦିବାକୁ ଲାଗିଲେ । ମାଆ କୋଳରେ ଥାଇ ଶ୍ୟାମ ସୁନ୍ଦର ହସୁଥାନ୍ତି । ଯଶୋଦା ଦଉଡ଼ି ଅସି ବଳଦେବଙ୍କୁ ଉଠେଇ ନେଲେ । ଧୂଳି ଝାଡ଼ି ପୋଛି ଦେଇ କହିଲେ—ତୁ କାହିଁକି ସେ ଦୁଷ୍ଟ କଥାରେ ପଡ଼ୁଛୁ ? ସେଟା ଭାରି ଚଗଲା । ଚୋର କ'ଣ ହେଲା ! ଦେଖ ମୁଁ କେମିତି ମାରୁଛି କାହ୍ନୁକୁ । ଆଉ ତାଙ୍କ ପଟକୁ ପାପୁଲି ଅଡ଼େଇ ରଖି ଚଟକଣାଏ ମାରିଲେ ନିଜ ହାତକୁ । ବଳଦେବ ଖୁସିରେ ହସିଲେ । ମାଆ କହିଲେ– ବଳିଆ ମୋର ରଜା । କାହ୍ନୁ ରଜା ନୁହଁ । ଏକଥା ଶୁଣି ଶ୍ୟାମସୁନ୍ଦର ରୋହିଣୀଙ୍କ କୋଳରେ ଥାଇ କହିଲେ—ମୁଁ ବି ରଜା ।"

ରୋହିଣୀ କହିଲେ—"ହଁ ହଁ, ତୁ ବି ରଜା ।"

ଶ୍ୟାମସୁନ୍ଦରଙ୍କ ଲାଗି ତେଣିକି ବାଛୁରୀ ଲାଞ୍ଜରେ ଝୁଲି ପଡ଼ିବା ମଜାକିଆ ଖେଳଟିଏ ହୋଇଗଲା । ଯେତେବେଳେ ବି ଗୋଠକୁ ଯାଆନ୍ତି ସୁବିଧାପାଇଲେ ବାଛୁରୀ ଲାଞ୍ଜ ଧରି ଝୁଲି ପଡ଼ନ୍ତି । କେବେ କେବେ ଦୁ' ତିନୋଟାର ଲାଞ୍ଜ ଏକାଥରକେ ଧରି ଦିଅନ୍ତି ।

ସେମାନଙ୍କ ଭିତରୁ ବଳୁଆ ବାଛୁରୀଟି ଲାଞ୍ଜ ଟାଣି ନେଲେ ହାତ ମୁଠା ଛିନ୍ନ ପଡ଼ିଯାଏ ତ ଶ୍ୟାମସୁନ୍ଦର ଗୋବର କାଦୁଅରେ ପଙ୍କ କାଦ ବସନ୍ତି । ଗୋପାଳମାନେ ଆସି ଉଠେଇ ଦିଅନ୍ତି । ଗୋପୀମାନେ କହନ୍ତି—"ଦେଖ୍...ଦେଖ୍ କେମିତି ଚଢ଼େଇ ଫୁର୍କିନା ଉଡ଼ିଗଲା ।"

ଶ୍ୟାମସୁନ୍ଦର କାନ୍ଦଣା ଭୁଲି ଚଢ଼େଇକୁ ଦେଖି ବସନ୍ତି । ଆଉ ଗୋପୀମାନେ ତାଙ୍କୁ କୋଳେଇ କାଖେଇ ଘେନି ଯାଆନ୍ତି ।

କେତୋଟି ଗାଈଙ୍କୁ ଯଶୋଦା ନିଜେ ଦୁହନ୍ତି । ପଦ୍ମଗନ୍ଧା ଶ୍ୟାମା ଗାଈମାନଙ୍କର ଦୁଧ ଅଲଗା କରି ରଖନ୍ତି । ତା'ର ଲହୁଣୀ ଖାଇ କାହ୍ନୁ ମୋଟା ହେବ । ମାଆ ଯେତେବେଳେ ଦୁଧ ଦୁହିଁ ଯାଆନ୍ତି ସେତେବେଳେ ରାମ ଶ୍ୟାମ ବି ଛୋଟ ଛୋଟ ଗିନାଟିମାନ ଧରି ଯାଆନ୍ତି । ଆଉ କହନ୍ତି 'ମାଆ ଆମଲାଗି ବି ଦୁହିଁ ଦେ ।' ମା' ସେମାନଙ୍କଠାରୁ ଗିନାଟିମାନ ନେଇ ପହ୍ଲାକୁ ଦୁଧ ଦୁହିଁ ପୂରେଇ ଦିଅନ୍ତି । ସେଇ ଦୁଧକୁ ସେମାନେ ଚଟାପଟ ପିଇ ଦିଅନ୍ତି । ଦିନେ ଦିନେ ଗିନାଟିମାନ ଧରି ସେମାନେ ବାଛୁରୀଙ୍କୁ ଦୁହିଁ ବସନ୍ତି । ବାଛୁରୀଗୁଡ଼ିକ ଡେଇଁବାକୁ ଲାଗିଲେ ପଚାରନ୍ତି—"ଏମାନେ କେମିତି ଦୁହେଁଇ ଦେଉ ନାହାନ୍ତି, ତୁ କେମିତି ଦୁହିଁ ଦେଉଛୁ ଏତେ ଏତେ !"

ମାଆ କହନ୍ତି—"ବାଛୁରୀ କେବେହେଲେ ଦୁଧ ଦିଅନ୍ତି କି ?"

ଶ୍ୟାମ ପଚାରନ୍ତି—"କାହିଁକି ଦିଅନ୍ତି ନାହିଁ ?"

'ଗାଈମାନେ ବାଛୁରୀଙ୍କ ମାଆ । ଯେମିତି ମୁଁ ତୋର ମା' ! ଯେମିତି ତୁ ମୋର କ୍ଷୀର ପିଉ ସେମିତି ବାଛୁରୀମାନେ ବି ସେମାନଙ୍କ ମାଆଙ୍କଠୁଁ ଦୁଧ ଖାଆନ୍ତି । ସେମାନେ ପିଇବା ଲୋକ, ଦେବା ଲୋକ ନୁହନ୍ତି ।"

କେବେ କେମିତି ଦୁଇଟି ବାଛୁରୀଙ୍କୁ ଆଣି ଦଉଡ଼ିରେ ତଳିଟିଏ ବାନ୍ଧି ଦେଇ ତା' ଉପରେ ଚଢ଼ିଯାଇ ତା' ତା' କରି ଆଡ଼େଇ ବହନ୍ତି—"ଆରେ ଉଠ ଉଠ ଗାଡ଼ି ଆଇଲା ଗାଡ଼ି ।"

ଆଉ କେତେବେଳେ ବାଛୁରୀଙ୍କ ବେକରେ ଓହଳି ପଡ଼ନ୍ତି, କେତେବେଳେ କୋଉ ବାଛୁରୀ ଉପରକୁ ଚଢ଼ି ଯାଆନ୍ତି । ବାଛୁରୀ ନାଚ କୁଦ ହେଲେ ବଲେଇ ଛୁଆ ପରି ଲାଗି ରହନ୍ତି । କେତେବେଳେ ବାଛୁରୀଙ୍କୁ ଏପଟୁ ସେପଟକୁ ଦଉଡ଼େଇ ତାଙ୍କ ପଛେ ପଛେ ନିଜେ ଦଉଡ଼ି ଯାଆନ୍ତି । ଘରୁ ପିଠା ଆଣି ଖୁଆଇ ଦିଅନ୍ତି । ନ ଖାଇଲେ ଜୋର୍ କରି ମୁହଁରେ ପୂରେଇ ଦିଅନ୍ତି । କେତେବେଳେ ବାଉଁଶ ନଳୀ ପୂରେଇ ସେମାନଙ୍କୁ ମହୁ ପିଆଇ ଦିଅନ୍ତି ଆଉ ସେମାନେ ସବୁ ତାଙ୍କର ଉପରକୁ ବାନ୍ତି କରି ପକେଇଲେ ଘରକୁ ଦଉଡ଼ି

ଯାଇ ମା'ଙ୍କ ପାଖରେ ଲୁଗା ବଦଳେଇବାକୁ ଅଳି କରନ୍ତି । ଗ୍ରୁଟ ଗ୍ରୁଟ ଦୂବ ଘାସ ନେଇ ବାଛୁରୀଙ୍କୁ ଖାଇବାକୁ ଦଅନ୍ତି । ବନ୍ଧା ହୋଇଥିବା ବାଛୁରୀଙ୍କୁ ଖୋଲିଦେଲେ ସେମାନେ ଯାଇ ମା'ଠାରୁ ଦୁଧ ପିଇ ଯାଆନ୍ତି । ତା'ପରେ ସେ ସେମାନଙ୍କୁ ଟାଣି ଧରନ୍ତି । ମାଆ ଥନରେ ମୁହଁ ମାରି ରହିଥିବା ବାଛୁରୀମାନେ ଯେତେ ଟାଣିଲେ ବି ସହଜରେ ମୁହଁକୁ ମା'ଥନ ଛାଡ଼ନ୍ତି ନାହିଁ, ଆଉ ନ ଛାଡ଼ିଲେ ସେ କାନ୍ଦି ପକାନ୍ତି । ଗୋପାଳମାନେ ଆସି ସେମାନଙ୍କୁ ପୁଣି ବାନ୍ଧି ଦିଅନ୍ତି । ବେଳେ ବେଳେ ସେ ଗାଈମାନଙ୍କର ସିଙ୍ଗ ଧରି ହଲେଇ ବସିବେ, ବାଛୁରୀ-ଗାଈର ଲାଞ୍ଜ ଏକାଠି କରି ବାନ୍ଧି ପକାନ୍ତି । ସେମାନେ ଟଣାଟଣି ହୋଇ ବାଛୁରୀ ଉପରେ ବସିଲେ ସେ ତାଳି ମାରି ହସି ହସି ନାଚନ୍ତି । କେବେ କେବେ କଅଁଳ ଛନ ଛନ ଦୂବଘାସ ନେଇ ବାଛୁରୀଙ୍କୁ ଦେଲେ, ସେତେବେଳେ ଗାଈ ତାଙ୍କ ଆଡ଼କୁ ମୁହଁାଇଲେ ଗାଈକୁ ଛୁଆଁଇ ଦିଅନ୍ତି ।

ସୂତ କହୁଛନ୍ତି—"ହେ ମୁନିଗଣ ! ଏପରି ଭାବରେ ଶ୍ରୀ ରାମ ଶ୍ୟାମ ଗୋଠକୁ ଯାଇ ଗାଈଙ୍କ ସାଙ୍ଗରେ ଖେଳିବାକୁ ଲାଗିଲେ । ସେମାନଙ୍କର ଏଇ ବାଲ୍ୟଲୀଳାର ଯେ ଶ୍ରଦ୍ଧା ସହିତ ସ୍ମରଣ କରିବ, ତା'ର ହୃଦୟ ନିଶ୍ଚିତ ଭାବରେ ଶୁଦ୍ଧ ପବିତ୍ର ହୋଇଯିବ ଓ ପ୍ରଭୁଙ୍କର ପ୍ରୀତି ଭାଜନ ହେବ ।"

## ଛପ୍‌ପୟ

କବହୁଁ ସାଁଢ଼କେ ସୀଙ୍ଗ ପକରିକେଁ ଇନତେଁ ଖେଲେଁ ।
କବହୁଁ ପକରେଁ ଶ୍ୱାନ ସର୍ପ ଇନ ମୁଖକର ମେଲେଁ ॥
କବହୁଁ ତାତା କରେଁ ଆଗିକୁଁ ପକରନ ଜାବେଁ ।
କବହୁଁ ବନ୍ଦର ମୋର ଖଗନକୁଁ ପକରି ନଚାବେଁ ॥
କବହୁଁ ଶାସ୍ତ୍ରାଗାରମହୁଁ, ଅସିପେ ହାଥ ଫିରାଇକେଁ ।
କଲକେଁ ହୋବେଁ ମଗନ ଅତି, ବସ୍ତୁ ଅନୌଖୀ ପାଇକେଁ ॥

# ବାଳ-ବିନୋଦିନୀ ଲୀଳା

ଶୃଙ୍ଗ୍ୟଗ୍ନିଦଂଷ୍ଟ୍ର୍ୟସିଜଳଦ୍ୱିଜ କଣ୍ଟକେଭ୍ୟଃ,
କ୍ରୀଡ଼ାପରାବତିଚଲୌ ସ୍ୱସୁତୌ ନିଷେଦ୍ଧୁମ୍ ।
ଗୃହ୍ୟାଣି କର୍ତ୍ତୁମପି ଯତ୍ର ନ ତଜ୍ଜନନ୍ୟୌ,
ଶେକାତ ଆପଦୁରଲଂ ମନସୋଽନବସ୍ଥାମ୍ ॥

(ଶ୍ରୀ ଭା ୧୦ ସ୍କ, ୮ ଅ, ୨୫ ଶ୍ଳୋକ)

## ଛପ୍‌ପୟ

କବହୁଁ ଖେଲନ ଚନ୍ଦ୍ର ମାବୁତେଁ ପୁନପୁନ ମାଗେ ।
କବହୁଁ ପୀକେଁ ଦୁଧ ଗୋଦତେଁ ଝଟପଟ ଭଗେଁ ॥
କବହୁଁ ଜଲମହଁ ଘୁସେଁ ଭିଗୋବେଁ ତନପଟ ସଗରେ ।
କବହୁଁ ପକ୍ଷିନ ପକର କରେଁ ଗୋପିନତେଁ ଝଗରେ ॥
କବହୁଁ ଦ୍ୱିଜନ୍ହୁଁ ଦେଖିକେଁ, କର ପ୍ରଣାମ ଭଗି ଜାତ ହେଁ ।
କବହୁଁ ପରସୀ ଖୀରନ୍ହୁଁ, ଲୂଟି ଲୂଟିକେ ଖାତ ହୌଁ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଦୁଇ ମା'ମାନଙ୍କର ମନ ଘାର ଉଚ୍ଛନ୍ନ ହୋଇ ଯାଉଥିଲା । ଆଉ ସେମାନେ ଘରକାମ ବି କରିପାରୁ ନ ଥିଲେ; ଯେହେତୁ ସେମାନେ ଏଇ ଅତି ଚଞ୍ଚଳ ପିଲା ଦୁଇଟିଙ୍କୁ ଶିଙ୍ଘଧାରୀ ପଶୁ, ନିଆଁ, କାମୁଡ଼ା ପଶୁ, ଖଣ୍ଡା, ପାଣି ପକ୍ଷୀ ବ୍ରାହ୍ମଣ ଆଉ କଣ୍ଟା ଆଦିରୁ ରକ୍ଷା କରିବାକୁ ସବୁବେଳେ ସଜାଗ ରହୁଥାନ୍ତି ।"

ଯେ ସଂସାରରେ ଜନ୍ମ ହୋଇଛି ସିଏ ବି କେବେନା କେବେ ବାଳକ ଥିଲା । ଆମେ ସମସ୍ତେ ଯେଉଁମାନେ ନିଜକୁ କିଶୋର, ଯୁବକ, ଅଧବୁଢ଼ା ବୁଢ଼ାବୋଲି କହୁଁ ସମସ୍ତେ କେବେ ନା କେବେ ପିଲାଥିଲେ । ଆଜି ଆମେ ବାଳକମାନଙ୍କର କଥାକୁ ଉପେକ୍ଷା କରି କହିଦେଉଁ—"ଆରେ ଏମାନେ ତ ପିଲାଲୋକ । ପିଲାକାଳ ଦୁଷ୍ଟାମୀ ସମୟ, ସବୁ ପିଲାଳିଆ କଥା । ସେତେବେଳେ ଆମେ ସେକଥା ଭୁଲିଯାଉଁ ଯେ କେବେ ଆମର ବି ସେମିତି ପିଲାକାଳ ଆସିଥିବ । ଆମକୁ ବି ସେମିତି ବଡ଼ମାନେ ଧମକ ଚମକ ଦେଉଥିବେ,

ଆମର ବି କାନ ମୋଡ଼ିଥିବେ, ଆମକୁ ବି 'ବେଙ୍ଗ' କରି ବସେଇ ଥିବେ । ଆମେ ବି ଗାଳି ମାଡ଼ ଖାଇଥିବା । ମଣିଷ ନଜର ଗଳ୍ପ କଥା ମନେ ପକେଇଲେ କେବେହେଲେ କାହାକୁ ଦୋଷୀ ବୋଲି କହିବ ନାହିଁ । କାରଣ ଦୋଷ ହେବା, ଭୁଲ ହେବା ସ୍ୱାଭାବିକ । ଜାଣି ଜାଣି କିଏ କ'ଣ କେବେହେଲେ ଭୁଲ୍ କରେ ! ମଣିଷ ଯାହା ବି କରେ ଆପଣା ବୁଦ୍ଧି ଅନୁସାରେ ଭଲ ପାଇଁ କରେ । ଯେଉଁ କାର୍ଯ୍ୟର ଫଳ ଭଲ ହେବବୋଲି ମନେ କରେ ନାହିଁ, ସେ କାମକୁ ତା'ର ମନ ଛୁଏନାହିଁ । ଯେ ଯେଉଁ କାମରେ ଲାଗିଗଲା ଧରିନେବା କଥା ଯେ ସେଥିରେ ସେ ତା'ର ସୁଖ ମଣିଥିଲା । ବାଳକମାନେ ଯାହା ବି କରନ୍ତି, ଖେଳ ପାଇଁ ଖୁସି ମନରେ କରନ୍ତି । ବଡ଼ଙ୍କୁ ସେ କଥା ଭଲ ନ ଲାଗିଲେ ନ ଲାଗୁ । ସେମାନେ ସେଇଭଳି ବାଳକଭାବରେ ସେ କଥା ଭାବିଲେ ବୁଝିପାରନ୍ତେ ଯେ ବାଳକମାନେ ଯାହା କରିଛନ୍ତି ଠିକ୍ କରିଛନ୍ତି । ଆମେ ବି ଏମାନଙ୍କ ଭଳି ବାଳକ ହୋଇଥିଲେ ଏଇଆ କରିଥାନ୍ତି । ନିଜକୁ ଭୁଲିଦେଲେ ଆଉ କେହି ଭୁଲ୍ କରନ୍ତି । ଅନ୍ୟର ଭୁଲ୍ ବାଛିବା ହିଁ ଭୁଲ୍ । ବାଳକମାନଙ୍କର କାମରେ କୌଣସି ପ୍ରକାର ଛନ୍ଦକପଟ ବା ସ୍ୱାର୍ଥ ନ ଥାଏ । ଯଦି ସର୍ବାନ୍ତର୍ଯ୍ୟାମୀ ଭଗବାନ ବାଳକ ରୂପରେ ଖେଳି ବସିବେ, ତେବେ ଆଉ କହିବା କ'ଣ ?"

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ରାମ ଶ୍ୟାମ ଏବେ ପାହୁଣ୍ଡ ପକେଇ ଚାଲିବା ଆରମ୍ଭ କଲେଣି, ଝେଳିବା ଦଉଡ଼ିବାକୁ ଲାଗିଲେଣି । ଭଙ୍ଗାଭଙ୍ଗା କଥା କହି ମାଆ ପାଖରେ ଅଳି କରିବା କଳି କରି ବସିଲେଣି । ଦୁହେଁ ଭାରି ଚଞ୍ଚଳ ଥିଲେ, ହେଲେ ସାନଟି ଭାରି ଦୁଷ୍ଟ । ସେ ଭିତରେ ବାହାରେ କୋଉଠି ହେଲେ ସହଜ ସରଳ ନୁହନ୍ତି । ଉଠିବା ବସିବା କ୍ରୀଡ଼ା ଲୀଳା ସବୁ କଥାରେ ଯେମିତି କିଛି ଏକ ରହସ୍ୟ ଭରି ରହିଥିଲା । ବେଦ ବି ଯା'ର ଭେଦ ଏଯାଏଁ ପାଇଲେ ନାହିଁ, ଭବିଷ୍ୟତରେ ପାଇବେ ନା ନାହିଁ ସନ୍ଦେହ । ତେବେ ଅରେ ସେ ରହସ୍ୟ କହିବାର ଚେଷ୍ଟା ବେଦ କରିଥିଲେ, ମାତ୍ର ଶେଷକୁ ନ ଇତି ନ ଇତି (ଏଏ ନୁହେ, ଇଏ ନୁହେଁ) କହି ଚୁପ୍ ହେଲେ ।

ତାଙ୍କର ଗାଈଙ୍କ ଉପରେ ଭାରି ସ୍ନେହ । ସେ ଗୋଠକୁ ଯାଇ ଗାଈଙ୍କ ସାଙ୍ଗରେ ଖେଳନ୍ତି; ଶିଙ୍ଗଧରି ଓହଳି ପଡ଼ନ୍ତି । ମାଆମାନେ ଭାରି ଡରି ଯାଆନ୍ତି । ଏସବୁ ଦୁଷ୍ଟାମୀ ଦେଖି ବାରମ୍ବାର ଆକଟ କରନ୍ତି, ହେଲେ ସେ କା' କଥା ମାନିବା ପିଲା । ଯାହା କରିବାକୁ ବୁଝିବେ କରିବେ ହିଁ କରିବେ ।

ବ୍ରଜଧାମରେ ଗୋଟାଏ ବଡ଼ ହୃଷ୍ଟପୁଷ୍ଟ ଷଣ୍ଢ ଥିଲା । ସାକ୍ଷାତ୍ ଧର୍ମରାଜ ହିଁ ଭଗବାନଙ୍କର ଅଙ୍ଗ ସ୍ପର୍ଶର ଲୋଭରେ ବୃଷଭ ପାଲଟି ଥିଲେ । ସେମିତି କାଳରେ ତ ତାଙ୍କର ଗୋଟାଏ ବୋଲି ପାଦ । ମାତ୍ର ନନ୍ଦଙ୍କର ଗୋଠରେ ତ ଚାରୋଟି ଯାକ ପାଦ

ସୁନ୍ଦର ସୁନ୍ଦର ହୋଇ ରହିଛି । ଯେଉଁଠାରେ କି ଭଗବାନ ଖେଳୁଛନ୍ତି ସେଠାରେ ଧର୍ମଙ୍କୁ କିଏ ବା ବିକୃତ କରିଦେଇ ପାରିବ ! ହେଲେ ତାଙ୍କ ପାଖକୁ କେହିହେଲେ ଯାଇ ପାରିବ ନାହିଁ ବୋଲି ତାଙ୍କର ନାଆଁ ଥିଲା । ତାଙ୍କ ସାମନାକୁ ଯିବା ଅତି କଠିଣ କାମଟିଏ ବୋଲି ସମସ୍ତଙ୍କୁ ଜଣାଥିଲା । ଦିନେ ବଳଦେବ ଆଉ କାହ୍ନା ଖେଳୁଁ ଖେଳୁଁ ସେଇ ମାରଣା ଷଣ୍ଢଟି ଆଗକୁ ଚାଲି ଆସିଲେ । ଦିହେଁ ଷଣ୍ଢର ଗୋଟିଏ ଲେଖାଏଁ ଶିଙ୍ଘ ଧରିନେଲେ । ସେ ଚୁପ୍‌ଚାପ୍ ମୁଣ୍ଡ ନୁଆଁଇ ଦେଲା । ବଳଦେବ ଖାଲି ଧରିଥିଲେ ସିନା, କାହ୍ନା କିନ୍ତୁ ତା' ଉପରକୁ ନଚଢ଼ି କୋଉ ମାନିବା ପିଲା ? ସେ ଧୀରେ ଧୀରେ ତା' ମୁଣ୍ଡ ଉପରେ ପାଦ ରଖି ତା'ର କାନ୍ଧ ଉପରକୁ ଚଢ଼ିବାକୁ ଲାଗିଲେ । ତା'ର କାନ୍ଧ ଭାରି ଉଚା ଥିଲା । ଆଉ କାହ୍ନା ତା' ଉପରକୁ ଟଳମଳ ପାଦରେ ଚଢ଼ିଗଲେ । ଆଉ ପିଲାଏ ବି ସେଇଠି ଥିଲେ । ଏମାନଙ୍କୁ ଦେଖି ହସୁଥାଆନ୍ତି । ଦୂରରୁ ମାଆଙ୍କ ଆଖିରେ ପଡ଼ିଗଲା । ଯେ ଗ୍ରନ୍ଥଆରେ ପାଟିକଲେ ଆଉ ସେଇ ମାରଣା ଷଣ୍ଢଟି ପାଖକୁ ଦଉଡ଼ି ଆସିଲେ । ରୋହିଣୀ ତ ଏମିତି ଦଉଡ଼ିଲେ ଯେ ଯଶୋଦାଙ୍କ ଆଗରୁ ଆସି ପହଞ୍ଚିଗଲେ । ପହଞ୍ଚିଲା ମାତ୍ରକେ ସେ ଶ୍ୟାମଙ୍କୁ ଟେକି କୋଳ କରିନେଲେ । ଯଶୋଦା ବଳରାମଙ୍କୁ କାଖେଇ ଷଣ୍ଢ ଭୟରେ ପଛକୁ ଦଉଡ଼ି ଆସିଲେ, ଆଉ ତାଙ୍କ କପାଳରେ ହାତ ଦେଇ କହିଲେ—ଏତେ ବଡ଼ ହେଲୁଣି ତୁ, ସାନଭାଇକୁ ମନା କରନ୍ତୁ, ଦୁଷ୍ଟ ନ ହବାକୁ କହନ୍ତୁ ସିନା ତା' କଥାରେ ଖାଲି ତୁ ଁ ଭରି ଚାଲିଛୁ । ମାରଣା ଷଣ୍ଢ ଶିଙ୍ଘ ମାରିଥିଲେ ? ବଳଦେବ ଶୁଣିଲେ ଆଉ ଶ୍ୟାମଙ୍କୁ ଦେଖି ହସିଦେଲେ । ଶ୍ୟାମସୁନ୍ଦର ବି ଭାରି ସରଳ ଭାବରେ ଚାହିଁ ଥାଆନ୍ତି । ମା' ଦୁହିଁଙ୍କୁ ଭିତରକୁ ନେଇଗଲେ ।

ଶ୍ୟାମସୁନ୍ଦର ନିଆଁ ଜଳୁଥିବା ଦେଖି ସେଠାକୁ ଦଉଡ଼ ଯାଆନ୍ତି । ନିଆଁର ଶିଖା ଦେଖିଲେ ତାଙ୍କୁ ଭାରି ଆନନ୍ଦ ଲାଗେ । ବାପା ଶୀତ ଦିନରେ ନିଆଁ ଉହେଇ କାଇ ଗଉଡ଼ଙ୍କ ସାଙ୍ଗରେ ନିଆଁ ପୁଆଉଁ ପୁଆଉଁ ଗପସପ ହେଉଥିଲାବେଳେ ଯେ ଯାଇ ତାଙ୍କ କୋଳରେ ବସି ପଡ଼ୁଥିଲେ । ନିଆଁ ଜଳଲେ ସେ ତା' ଆଡ଼କୁ ହାତ ବଢ଼ାନ୍ତି । ବାପ ଆକଟ କରନ୍ତି—ଆରେ ଛାଡ, ହାତ ପୋଡ଼ି ଯିବ । ଯେତେବେଳେ ଯିଏ ବି ନିଆଁକୁ ତାତା ତାତା ଡାକିବେ । ମାଆମାନେ ରୋଷେଇ କରୁଥିଲେ ଦଉଡ଼ି ଯାଇ କୋଳରେ ବସିଯିବେ ଆଉ ତାତା ତାତା କହି ଚୁଲିରେ ହାତ ପୁରେଇ ବସିବେ । ମାଆମାନେ ହାତ ଧରିନେଇ କହିବେ—'ତୁ କ'ଣ ଟାଏରେ କାହ୍ନା ! ନିଆଁ ଛୁଉଁଛୁ ହାତ ପୋଡ଼ି ଯିବ । କିଏ ନିଆଁକୁ ଛୁଏଁ ଭଲା ! ଜଳନ୍ତା କାଠ ଉଠେଇ ଶ୍ୟାମ ବଳଦେବଙ୍କୁ ବଢ଼େଇ ଦେବେ । ଯେତେବେଳେ ଆକଟ କରି ମାଆ କହିବେ—ଦେଖ୍ କାହ୍ନା ଭାରି ଦୁଷ୍ଟ ହେଲୁଣି ତୁ, ତୋତେ ଭିତରେ ବନ୍ଦକରି ବାହାରୁ ତାଲା ପକେଇ ଦେବି ।''

ଭାରି ସରଳ ଭାବରେ ସେ ଉତ୍ତର ଦେବେ—''ମାଆ ! ତାତା ଛୁଇଁବି ନାହିଁ ।''

ଦିନେ ସେ ଘରୁ ଗୋଠକୁ ଯାଉଥିଲେ । ବାଟରେ କୁକୁରଟିଏ ଦେଖିଲେ । ବାସ୍, ଆଉ କ'ଣ ଖେଳ ଆରମ୍ଭ ହୋଇଗଲା । କୋଉଠୁ ଦଉଡ଼ିଟିଏ ନେଇ ଆସିଲେ । କୁକୁର ବେକରେ ବାନ୍ଧି ଦେଲେ, ଲଗାମ ଭଳି ଗୋଟାଏ ଖିଅ ପାଟିରେ ପୁରେଇ ଦେଲେ । ବଳଦେବ ତା'ର ଲାଞ୍ଜ ଧଇଲେ ଆଉ ସେ ତା' ଉପରେ ଚଢ଼ିଗଲେ । ସେତିକିବେଳେ ଆଉ କୁକୁରଟିଏ କୋଉଠୁ ଆସି ପହଞ୍ଚିଲା । ବଳରାମ ଶ୍ୟାମଙ୍କର ସେଇ କୁକୁରକୁ ଛାଡ଼ି ତା' ଉପରେ ଚଢ଼ିଗଲେ, ବିନା ଲଗାମରେ । ସେ ବାହାରକୁ ଗଲା । ଆଉ ଶ୍ୟାମଙ୍କର ଭିତରକୁ । ଏହା କହି ବୁଲୁଥାନ୍ତି, ମୋ ଘୋଡ଼ା, ମୋ ଘୋଡ଼ା !

ମାଆ ଦେଖିଲେ —"ତୁ କଣଟାଏ ହେଲୁରେ କାହ୍ନୁ ! ରାମ ରାମ ଆରେ କିଏ କୁକୁର ଉପରେ ଚଢ଼େ !"

"ମା ! ମୋ ଘୋଡ଼ା ବାହାରକୁ ପଳେଇଗଲା । ଶୁଣିଲା ମାତ୍ରକେ ବାହାରକୁ ଦଉଡ଼ିଗଲେ ଯଶୋଦା । ଦେଖିଲେ ନନ୍ଦ ମହାରାଜ ବଳରାମଙ୍କୁ କାଖେଇ ଆସୁଛନ୍ତି ।"

ଯଶୋଦା କହିଲେ—"ଭାରି ଦୁଷ୍ଟାମୀ କଲେଣି ଦିହେଁ । ସବୁ ଦିନ ନୂଆ ନୂଆ ଉତ୍ପାତ । ତମ ସାନଟି ତ ଆଜି କୁକୁରଟାଏକୁ ଘୋଡ଼ା ବନେଇ ଚଢ଼ି ଆସିଥିଲା ।"

ହସି ହସି ନନ୍ଦ କହିଲେ—"ଇଏବି ତ କୁକୁରଟାଏ ଉପରେ ଚଢ଼ିଥିଲା । ମୁଁ ଧରି ଆଣିଛି । ଆଉ ସେ ଆସି ଶ୍ୟାମଙ୍କୁ ବି କୋଳେଇ ନେଲେ । କୋଳରେ ବସି ଖୁସି ଉତ୍ସାହରେ କହିଲେ ସେ—ବାବା, ମୋ' ଘୋଡ଼ା ପଳେଇଲା !"

ବ୍ରଜେନ୍ଦ୍ର କହିଲେ—"ଆରେ ସେ ଘୋଡ଼ା ନୁହେଁ, କୁକୁର । କାମୁଡ଼ିବ । ତୁ ବଡ଼ ହେଲେ ତୋ' ପାଇଁ ଘୋଡ଼ାଟିଏ ଅଣେଇ ଦେବି ।"

ବଳଦେବ ହସି ହସି କହନ୍ତି—"ବାବା ମୋ' ଲାଗି ବି । ନିଶ୍ଚୟ, ନିଶ୍ଚୟ । ତୁ ତ ମୋର ରଜାପୁଅ ।"

ଶ୍ୟାମ କହନ୍ତି—"ମୁଁ ବି ତ ରଜା ପୁଅ ।"

ବାବା କହନ୍ତି—"ତୁ...ତୁ ରଜାପୁଅ । ଆରେ ଯା', ତୁ କୋଉ ରଜା, ତୁ ଚୋର !"

ଏହା ଶୁଣି ଶ୍ୟାମ କାନ୍ଦିବାକୁ ଲାଗନ୍ତି । କାନ୍ଦ ବସିଲେ ରୋହିଣୀ ତାଙ୍କୁ ନିଜ କୋଳକୁ ଟାଣି ନିଅନ୍ତି । ଗେଲ କରି କହନ୍ତି—କାହ୍ନା ମୋର ରଜା ! ବଡ଼ ହେଲେ ମୁକୁଟ ପିନ୍ଧିବ । ଆଲଟ ଚାମର ଢଳା ହେବ । ଛତ ଲାଗିବ ।"

ଶ୍ୟାମ ମଝିରେ କହନ୍ତି—" ଅଇ ମା ! ଘୋଡ଼ାରେ ଚଢ଼ିବି ।"

ରୋହିଣୀ ହସି ହସି କହନ୍ତି—"ଘୋଡ଼ା କଅଁ ହାତୀ ! ହାତୀ ଉପରେ ଚଢ଼ିବୁ ।"

ଏମିତି, କୁକୁର, ବିଲୁଆ, ମୂଷା ଯାହା ଦେଖିଲେ ତା' ପଛରେ ଗୋଡ଼ାନ୍ତି । ଦିନେ ରାମ ଶ୍ୟାମ ବିଦ୍ଧେଁ ଯାଉଥିଲେ । ରାସ୍ତାରେ ବଡ଼ ସାପଟିଏ ଶୋଇଥିଲା । ସାପ ତ ତାଙ୍କର ଶେଯ । ଅନେକ ଦିନ ପରେ ସେ ସାପ ଦେଖି ତା' ଆଡ଼କୁ ବଢ଼ିଗଲେ । ବଳରାମ ତା'ର ଲାଞ୍ଜ ଧରି ପକେଇଲେ ଶ୍ୟାମ ମୁଣ୍ଡ ଆଉଁସିବାକୁ ଲାଗିଲେ । ସାପ ଫଣା ଉଠେଇଲା । ସେ ତାକୁ ଧରି ନେଇ ତାକୁ ହଲେଇ ଝୁଲେଇ ଖେଳିବାକୁ ଲାଗିଲେ । ସେତିକବେଳକୁ ଗୋପୀଟିଏ ଆସି ଏ ଦୃଶ୍ୟ ଦେଖିଦେଲା ଓ ଗ୍ରାମଆଡ଼େ ହୁରି ପକେଇଲା । ପାଟିକଲା— "ନନ୍ଦରାଣୀ ନନ୍ଦରାଣୀ ଆସ କାହ୍ନା ସାପ ସାଙ୍ଗରେ ଖେଳୁଛି । ଆସ ଦଉଡ଼ି ଆସ ।' ନନ୍ଦରାଣୀ ଦଉଡ଼ି ଆସିଲେ । ସାପଟି ଧୀରେ ଧୀରେ ତା' ଗାତକୁ ପଶିଗଲା । ମାଆ ଦୁଇ ପୁଅକୁ କୋଳକରି ନେଲେ । ଝଡ଼ା ଫୁଙ୍କା କରେଇଲେ । ମୁଣ୍ଡରୁ ପାଦ ଯାଏଁ ସାପକାଠି ଉତାରି ନେଲେ । ଦାସୀ ହାତରେ ଗାତ ମୁହଁରେ ସାପଲାଗି କ୍ଷୀର ଥୋଇଲେ । ଗୋପୀମାନଙ୍କ ଆଗରେ କାନ୍ଦି କାନ୍ଦି କହିବାକୁ ଲାଗିଲେ ନାରାୟଣ ରକ୍ଷାକଲେ ମୋ' ପୁଅଟିକୁ । ସାପ ତ ବିଷଧର...ଦଂଶି ଦିବ । ଇଏ ଆମର କେହି ପିତୃପୁରୁଷ ହୋଇଥିବେ, ସେଇଥିଲାଗି ପୁଅର କିଛି କ୍ଷତି କଲେ ନାହିଁ । ମୁଁ ସୋମବାର ଦିନ କ୍ଷୀର କରି ପିତୃ-ଲୋକଙ୍କ ଲାଗି ବାଣ୍ଟିବି । ମାଆ ଭାବିଲେ ମୋ' ପୁଅର ନୂଆ ଜନମ ହେଲା ।

ତେଣିକି ମାଆ ସେମାନଙ୍କୁ ବାହାରକୁ ଛାଡ଼ିଲେ ନାହିଁ । ଯେତେ ପାରିଲେ ଘରେ ଅଟକେଇ ରଖିଲେ । ସେ ତାଙ୍କୁ ଜଗାରଖା କରିବାକୁ ଲୋକ ଲଗେଇ ରଖିଲେ । କୋଉଠି ଏକୁଟିଆ ରହିଲେ ସିନା କ'ଣ ବୋଲି କ'ଣ ଦୁଷ୍ଟାମୀ କରିବେ । ଦିନେ ରୋହିଣୀ ନାରାୟଣଙ୍କ ଲାଗି ଭୋଗ ତିଆରି କରୁଥାନ୍ତି । ଯଶୋଦା ପିଲା ଦୁଇଟିଙ୍କୁ ଖୁଏଇ ଦେଉଥାନ୍ତି । ସେତେବେଳେ ରୋହିଣୀ ଭିତରୁ ଡାକିଲେ—"ନନ୍ଦରାଣୀ, ଜିରା ଦେଇ ଯିବ ଆସ । ରାନ୍ଧି ବସିଲି ଯେ ଜିରା ଆଣିବା ଭୁଲିଗଲି । ସେ ଜିରା ଦବାକୁ ଗଲେ । ଜାଣନ୍ତି, ପିଲା ଏ କେମିତି ଚଞ୍ଚଳ । ସେ ଉଠିଗଲେ ଏମାନେ ବି କଏ କୁଆଡ଼େ ଚାଲିଯିବେ, ଆଉ କ'ଣ ନା କ'ଣ କରି ବସିବେ । ତେଣୁ ବାହାରୁ କବାଟରେ ଜଞ୍ଜିର ଲଗେଇ ଦେଇ ଗଲେ ।

ସିଏ ଗଲାପରେ ଏ ଦି'ଜଣ ଘରଭିତରେ ଏଣେ ତେଣେ ଖୋଜି ବସିଲେ, କ'ଣ ଜିନିଷ ଅଛି, ଯୋଉଥିରେ ଖେଳା ଯାଇ ପାରେ । ତା'ପର ଦିନ ଦଶହରା ଥିଲା । ନନ୍ଦରାଜା ଶସ୍ତ୍ର ପୂଜା କରି ସେସବୁ ସେମିତି ଟାଙ୍ଗି ଦେଇଥିଲେ । ଯୋଉ ଘରେ ରାମ-ଶ୍ୟାମ ଥିଲେ ସେ ଘରଟୁ ଲାଗି ଶସ୍ତ୍ରାଗାର । କେତେ ଧନୁ, କେତେ ଶର କେତେ ଖଣ୍ଡା, କେତେ କଣ ଥିଲା ସେ ଘରେ । ଦି' ଭାଇ ଯାଇ ସେ ଘରେ ପହଞ୍ଚିଗଲେ । ଖୋଲା ଚକଚକ କରୁଥିବା ଖଣ୍ଡାଗୁଡ଼ିକ ଦେଖି ସେମାନଙ୍କୁ ଆଉଁସିବାକୁ ଲାଗିଲେ । ଦର୍ପଣ ଭଳି ଚକଚକ ଖଣ୍ଡାମାନଙ୍କରେ ମୁହଁ ଦେଖି ବସିଲେ ସେଥିରୁ ଗୋଟାଏକୁ ବଳରାମ ଟାଣି ନେଲେ । ସେତେବେଳେ କାନ୍ଥରେ ଟଙ୍ଗା ହୋଇଥିବା ଧନୁଟିଏ ଖସିପଡ଼ିଲାରୁ ଭାରି ଜୋର ଶବ୍ଦ

ହେଲା । ମାଆ ତ ଅଗଟୁ ଭ୍ରମଣ ରହିଥିଲେ; ଏମାନଙ୍କର କ ଭରସା ବୋଲି ଭାବୁଥିଲେ । ଧଡ଼ାସ୍ କନା କଛ ପଡ଼ିବାର ଶବ୍ଦ ଶୁଣି ଦଉଡ଼ି ଅସିଲେ । ନନ୍ଦ ମଧ୍ୟ ଦଉଡ଼ି ଆସିଲେ । ମାଆ ପିଲାଙ୍କୁ ଖଣ୍ଡା ସାଙ୍ଗରେ ଖେଳୁଥିବା ଦେଖି ସେମାନଙ୍କୁ ଧରି ଉଠେଇ ନେଲେ ଆଉ ସେମାନଙ୍କୁ କଛ ନ କହି ନନ୍ଦଙ୍କୁ ବହିବାକୁ ଲାଗିଲେ—ଏ ଖଣ୍ଡାଗୁଡ଼ା କଏ ଏମିତି ଖୋଲି ଥୁଡ଼େ । ଏ ଦୁହେଁ ହେଲେ ଉତ୍ପାତିଆ । କେତେବେଳେ ହାତ ଗୋଡ଼ କାଟି ବସିବେ ।

ନନ୍ଦ ନିଜ ଭୁଲ୍ ମାନିନେଇ କହିଲେ—"କାଲି ତରବରରେ ନା ମୁଁ ଏସବୁ ଖୋଳରେ ପୂରେଇ ପାରିଲି ନା କବାଟ କଲି କୋଳପ ପକେଇ ପାରିଲି । ଏଣିକି ସେମିତି ଭୁଲ୍ ହବ ନାହିଁ । ଆଉ ଆଉ କଥାକୁ ତମେ ବ ଟିକଏ ସାବଧାନ ରହିବ ।"

ନନ୍ଦଙ୍କ ଉପରେ ତାଙ୍କର ଅଭିମାନ ଆଉ ରାଗ ତ ଥାଏ କହିଲେ—"ଆଉ କେତେ ନଜର ଦେବ ! ନାମ ଜାଗ ଟିକଏ କାଢ଼ି ଦବାକୁ କହିଲାବୁ ଗଲି । ତା'ର ଭିତରେ ଏତେ କାଣ୍ଡ । ଏମାନେ ଦୁହେଁ କୋଉ ଗୋଟାଏ ଥାନରେ ଥିର ହେଇ ରହୁଛନ୍ତି ଯେ !"

ନନ୍ଦ କହିଲେ—"କଛ କଥା ନାହିଁ । ପିଲା ଲୋକ । ଏମାନଙ୍କର କୋଉ ଭଲମନ୍ଦ ବିଚାର କରିବାର ଶକ୍ତି ହେଲାଣି ।' ଏଇଆ କହି ସେ ପିଲା ଦୁଇଟିଙ୍କ ସାଙ୍ଗରେ ଖେଳିବାକୁ ଲାଗିଲେ । ରନ୍ଧାବଢ଼ା ସରିଲା । ନାରାୟଣଙ୍କୁ ଭୋଗ ଲାଗିଲା ଆଉ ନନ୍ଦ ଦି ପୁଅଙ୍କୁ ଧରି ପ୍ରସାଦ ପାଇବାକୁ ବସିଗଲେ ।"

ନନ୍ଦ କେବେ କେମିତି ପୁଅ ଦୁଇଟିଙ୍କୁ ଗାଧୋଇ ଦେବାକୁ ସାଙ୍ଗରେ ନେଇ ଯମୁନାକୁ ଯାଆନ୍ତି । ସେଠାରେ ଏ ଦୁହେଁ ଦୁହିଙ୍କ ଉପରକୁ ପାଣିଛାଟି ବାରବାର ଗାଧୋଇ ବସନ୍ତି । ସେମାନଙ୍କୁ ନନ୍ଦ ଧମକ ଦେଇ ଆକଟ କରନ୍ତି । 'କନୁଅ, ଏତେ ଗାଧୋଉଛୁ କଣ, ଥଣ୍ଡା ଧରିବ ।' ମାତ୍ର ତାଙ୍କର ଥଣ୍ଡା ଗରମକୁ ବା କୋଉ ଭୟ । ଗାଧୋଇବାରେ ତାଙ୍କର ବେଶ୍ ଆନନ୍ଦ । ମାଆ ଘରେ ଭରି ରଖିଥିବା ପାଣି ପର୍ଯ୍ୟନ୍ତକୁ ଅଞ୍ଜୁଳା ଅଞ୍ଜୁଳା କରି ଛାଟି ବସନ୍ତି । କେବେ କେମିତି ମାଟି ହାଣ୍ଡି ମାଠିଆକୁ କାଠ ଫାଳରେ ପିଟି କଣା କରିଦେଲେ ବାହାରି ଆସୁଥିବା ପାଣି ଦେଖି ଆନନ୍ଦରେ ନାଚନ୍ତି । ଆଉ ମାଆ ଡରରେ ଏଣେତେଣେ ଘରେ ଲୁଚି ବସନ୍ତି । ମାଆ ବୁଝି ଯାଆନ୍ତି ସେ ସବୁ ସେଇ ଉତ୍ପାତିଆର କାମ । ପଚାରିଲେ ଖୁବ ସରଳଭାବରେ କହି ଦିଅନ୍ତି—"ମାଆ, କେମିତି ମାଠିଆ । ମୁଁ ତ ସେପଟକୁ ଆଦୌ ଯାଇନ ।"

ଶରତ ପୂର୍ଣ୍ଣିମା । ସେଦିନ କେତେବଡ଼ ଉତ୍ସବ ହୁଏ ବ୍ରଜରେ । କେତେ ଯେ କ୍ଷିରି ତିଆରି ହେଲା । ଶରଦ ଶଶୀ ସବୁ କଳା ଧରି ଉଦିତ ହେଲେ । ଶ୍ୟାମ ମାଆ କୋଳରେ ଥାଇ ପଚାରି ବସିଲେ—"ମାଆ, ଶରଦ କେତେବେଳେ ଆସିବ !' ମାଆ କହିଲେ—"ରାତି ହେଲେ ।"

ସିଧା ହେଲାରୁ ପୁଣି ପଚାରିଲେ—"ମାଆ ଶରଦ ଆସିଲା ।"

ମାଆ କହିଲେ—"ଦେଖୁନୁ, ଉପରେ ଯୋଉ ଚାନ୍ଦ ଦିଶୁଛି, ସେଇ ଶରଦ !"

ସରଳ ଭାବରେ ସିଏ ପୁଣି ପଚାରିଲେ—"ଏ ଚାନ୍ଦ କିଏ କି ମା' ?"

ମାଆ କହିଦେଲେ—"ଭଗବାନଙ୍କ ଖେଳନା !"

କଣ୍ଢେଇ ନାଁ ଶୁଣିଦେଇ ସିଏ ବି ଭାରି ଉଣ୍ଠୁଣା ହୋଇ ଗଲେ । ଅଝଟ ହେଲେ—"ମାଆ, ମୁଁ ବି ଖେଳିବି !"

ମାଆ ସେଇକ୍ଷଣି ନଟୁ, ଝୁମୁ ଝୁମି, ଫିରଫିରି, କାଠ ମାଟି ତିଆରି କେତେ ସବୁ ହାତି ଘୋଡ଼ା ଆଣି ତାଙ୍କ ଆଗରେ ରଖିଲେ । ମାତ୍ର ସେ ଗୋଟି ଗୋଟି କରି ସବୁ ଫିଙ୍ଗି ଫୋପାଡ଼ି ଦେଇ କାନ୍ଦି ବସିଲେ—'ମୁଁ ତ ଚାନ୍ଦ ଖେଳିବି ।'

ମାଆ ଗେଲକରି କହିଲେ—'ବାବୁରେ ସିଏ ତ ଭଗବାନଙ୍କ ଖେଳନା ।'

ସେ କହିଲେ—"ମୁଁ ଆଉ ଭଗବାନଙ୍କଠାରୁ କିଛି କମ୍ ନା ! ମୁଁ ବି ଭଗବାନ !"

ମାଆ କାନରେ ହାତ ଦେଇ କହିଲେ—"ସେମିତି କହନ୍ତି ନାହିଁରେ କନ୍ହୁଆ ! କାନ ପାଚି ଯାଏ ।' ହେଲେ ସେ କୋଉ ମାନିଲା ପିଲା ! ଯାହା ଥରେ ମନ କଲେ ତାକୁ କଲେ ଯାଇଁ ଛାଡ଼ିବେ । ଯାହା ଥରେ ସଂକଳ୍ପ କରିନେବେ ତାହା ଅମୋଘ । ଜିଦ୍ କରି ପାଦ କଚାଡ଼ି, ହାତ ହଲେଇ, ଲୁହ ବୁହାଇ ମାଆଙ୍କର ପଣତ କାନି ଟାଣି ଜିଦ୍ କରି ବସିଲେ 'ଚାନ୍ଦ ହେଲେ ଯାଇଁ ଖେଳିବି···'ଅଉ କାନ୍ଦି କାନ୍ଦି କହୁଥାନ୍ତି···'ଆଣିଦେ ଚାନ୍ଦ'।

ମାଆ ସ୍ନେହରେ କହୁଥାନ୍ତି···'କେମିତି ପାଗଳଟାଏ, ଚାନ୍ଦ କେବେ ହେଲେ ଖେଳିବା ଜିନିଷ ! ଦେଖ ତୋର ବାହାଘର କରିବା ଚାନ୍ଦ ଭଳି ବହୂଟିଏ ଆସିବ । ତୋତେ ଖାଇବାକୁ ପରସି ଦେବ । ଦେଖ ସେ କାଳୀ ଗାଈର ବାଛୁରୀ କେମିତି କଳା ? କାହ୍ନା ତୁ ଜାଣିଛୁ, ବାବା ତୋ ଲାଗି କେମିତିଆ ଟୋପି ଆଣି ଦେବେ । ମୁଁ ସେ ଟୋପି କେବେହେଲେ ବଳିଅକୁ ଦେବି ନାହିଁ । କାହିଁକି ଜାଣିଛୁ, ଖାଲି ତୁ ମୋର ରଜାପୁଅ !' ଏମିତି ଏଣ୍ଡୁ ତେଣ୍ଡୁ କହି ସେ ପୁଅକୁ ବାହାନା ଦେଇ ଭୁଲେଇ ବସିବେ । ହେଲେ ସେ କୋଉ ଭୁଲିଯିବା ପିଲା । ଜିଦ୍ କଦାପି ହେଲେ ଛାଡ଼ିବେ ନାହିଁ···'ମୁଁ ତ ଚାନ୍ଦ ନେବି ଚାନ୍ଦ···।

ସବୁ ଗୋପୀ କହି ବସନ୍ତି—"ନନ୍ଦରାଣୀ, ତମ କାହ୍ନା ଭାରି ହଟିଆ, କେମିତି ହେଲେ ତାକୁ ଶୁଏଇ ପକା ।"

ଏଇଆ ଶୁଣି ମାଆ ତାଙ୍କୁ କୋଳେଇ ନେଇ ଆପୁଡ଼େଇ ବସିଲେ । ନାନାବାୟା ଗାଇ ବସିଲେ·· । ଏ ସବୁର କୌଣସି ପ୍ରଭାବ ତାଙ୍କ ଉପରେ ପଡ଼ିଲା ନାହିଁ । ସେ ଆଉ

ଲୁହ ଭୁହେଇ ହାତ ପାଦ ଛାଟି ବସିଲେ । ସେତେବେଳକୁ ରୋହିଣୀଙ୍କର ବୁଦ୍ଧି ହେଲା । ପରାତଟିଏରେ ପାଣି ଭରି ଆଣିଲେ ଆଉ ତାଙ୍କୁ ଡାକଲେ "ଆ କାହ୍ନା, ମୁଁ ତତେ ଚାନ୍ଦ ଦେବି" । କୋଳେଇ ନେଲେ । ପରାତ-ପାଣିରେ ଚନ୍ଦ୍ରଙ୍କର ଛାଇ ପଡ଼ୁଥିଲା । ସେଇଆକୁ ଦେଖେଇ କହିଲେ...ଦେଖ ଚାନ୍ଦ ଏଇଠି···ଧରନେ ତାକୁ ।

ପରାତରେ ଛାଇ ଦେଖି କାନ୍ଦଣା ବନ୍ଦ କରି ଭାରି ଆନନ୍ଦରେ ହାତ ବଢ଼େଇଲା-ବେଳକୁ "ଏଇନେ ଶୁଏଇ ଦେଇ ହବ" ଭାବି ଯଶୋଦା ତାଙ୍କୁ ପୁଣି କୋଳେଇ ନେଲେ ।

"କାହ୍ନା, ଚାନ୍ଦ ସାଙ୍ଗରେ ଖେଳିବି କହୁଛୁ ଅଉ ତାକୁ ଧରି ପାରୁନୁ ! ଖେଳିବୁ କେମିତି ? ସେ ବାରମ୍ବାର ହାତ ଭୁଞ୍ଚଉ ଥାଆନ୍ତି, ପାଣି ଅଣ୍ଡା ଅଣ୍ଡା ଲାଗୁଥାଏ ହାତରେ !" ମାଆ କହିଲେ—"ଆଗ ଦୁଧ ପିଇନେ ତା'ପରେ ଧରିବୁ !"

ଆଉ ମାଆଙ୍କ କ୍ଷୀର ଖାଉଁ ଖାଉଁ କେତେବେଳେ ସେଇ କୋଳରେ ଶୋଇ ପଡ଼ିଲେ ।

ନନ୍ଦବାବା ଦୁଇ ପୁଅଙ୍କୁ ଦଣ୍ଡବତ ପ୍ରଣାମ କରିବା ଶିଖେଇ ଦେଇଥିଲେ । କୌଣସି ସାଧୁ ମହାତ୍ମା ବା ବ୍ରାହ୍ମଣଙ୍କୁ ଦେଖିଲେ ବାବା ଦଣ୍ଡବତ କରି କାହ୍ନୁଙ୍କୁ ବି ଦଣ୍ଡବତ କରିବାକୁ କହନ୍ତି ।

ଯେତେବେଳେ ସେ ଦୁଇହାତ ଯୋଡ଼ି ପକେଇ କହନ୍ତି 'ଦଣ୍ଡବତ !'

ଶୁଣିଲେ ସମସ୍ତେ ହସନ୍ତି । ମନ୍ଦିରକୁ ଯାଇ ପୂଜାରୀଙ୍କୁ କହନ୍ତି···'ପରସାଦ' । ପୂଜାରୀ ତାଙ୍କ ହାତକୁ ପେଡ଼ାଟିଏ ଧରେଇ ଦେଲେ ଫାଲେ ଖାଇନେଇ ଆରଫାଳକ ପୂଜାରୀଙ୍କ ଉପରକୁ ଫୋପାଡ଼ି ଦେଇ ଦଉଡ଼ି ପଳାନ୍ତି । ପୂଜାରୀ ପଣ୍ଡିତେ ବ୍ୟସ୍ତ ହୋଇ କହନ୍ତି—"କାହ୍ନୁରେ, ଉତ୍ପାତଅଟେ ହେଲୁ ତୁ । ଦେଖ୍ ମୋତେ ପୁଣି ଥରେ ଗାଧୋଇବାକୁ ପଡ଼ିବ !" ବ୍ରାହ୍ମଣଙ୍କ ସାଙ୍ଗରେ ଏମିତି କେତେ କେତେ ଲୀଳା କରି ଚାଲିଥାନ୍ତି ଶ୍ୟାମସୁନ୍ଦର । ଜଣେ ବ୍ରାହ୍ମଣଙ୍କ ସାଙ୍ଗରେ ସେ ଏମିତି ଲୀଳା ଭିଏଇଲେ ଯେ ସେ କୃତାର୍ଥ ହୋଇଗଲେ ।

ଯଶୋଦା ମାତାଙ୍କର ପିତାଙ୍କର ଜଣେ ବୃଦ୍ଧ ପୁରୋହିତ ଥିଲେ । ଭାରି ଭଗବନ୍ତ ଭକ୍ତ । ସେ ଯଶୋଦାଙ୍କୁ ବି କୋଳେଇ ଖାଖେଇ ଖୁଏଇ ଥିଲେ । ସେ ଯେତେବେଳେ ଯଶୋଦାଙ୍କର ପୁଅ ହୋଇଥିବା କଥା ଶୁଣିଲେ ସେ ବାଡ଼ିଧରି ଧୀରେ ଧୀରେ ଆସି ଗୋକୁଳରେ ପହଞ୍ଚିଲେ । ଗୋପାଳମାନେ ବୁଢ଼ା ବ୍ରାହ୍ମଣଙ୍କର ଭାରି ଆଦର ସତ୍କାର କଲେ । ଯେତେ-ବେଳେ ଯଶୋଦା ମାତା ମାଆ ଘର ପୁରୋହିତ ଆସିଛନ୍ତି ବୋଲି ଶୁଣିଲେ, ତାଙ୍କୁ ଭାରି

ଆଦରରେ ଉଠେଇଲେ । ଘରର ଭଲମନ୍ଦ ପଚାରିଲେ ଆଉ କହିଲେ—"ବାବା, ପ୍ରସାଦ କର । ମୁଁ ତା'ର ବ୍ୟବସ୍ଥା କରି ଦେଉଛି ।"

ବୃଦ୍ଧ କହିଲେ—"ଆଜି ଆଉ କ'ଣ କରିବ ଝିଅ, କ୍ଷୀର ଟିକିଏ ପିଇ ନେଇ ଚଳେଇ ନେବ । କାଲି ଦେଖିବା ।"

ଯଶୋଦା ପୁଣି କହିଲେ—"ନାହିଁ ବାବା, ତା' କେମିତି ହବ ! ପ୍ରସାଦ କଷ୍ଟ ହବ । ମୁଁ ସବୁ ସରଞ୍ଜାମ ଯୋଗେଇ ଦେଉଛି । ମୁଁ ଦୁଧ ଗରମ କରି ଦେଉଛି ଆପଣ ସେଥିରେ ଗୁଡ଼ିଏ ଚାଉଳ ପକେଇବେ । ଅଟା ଚକଟି ଦଉଚି ପୁରି ବେଲି ଦେବ । ସେଇଥିରେ ଦି'ଖଣ୍ଡ ପିଠା କରିଦେବେ । ସେଇ କରେଇରେ ତରକାରି ଛୁଁକ କରି ଦେବେ । ମାଆଙ୍କର ଏତେ ଆଗ୍ରହ ଦେଖିବାରୁ ସେ ରନ୍ଧାରନ୍ଧ କରିବାକୁ ହଁ ଭରିଲେ । ଗୁଆ ଚାଉଳ କ୍ଷୀର, ଅଳ୍ପ ମେଥି ତରକାରି ଆଉ ପୁରି ତିଆରି ହୋଇଗଲା । ମାଆ ଆଣି କଳସୀ ଭରି ଯମୁନା ଜଳ ଥୋଇ ଦେଲେ । କହିଲେ—ମହାରାଜ ! ଆଉ ବିଳମ୍ବ କରନାହିଁ । ଅବେଳଆଟା ହେଲଣି । ନାରାୟଣଙ୍କ ଭୋଗ ଲଗେଇ ପ୍ରସାଦ ପାଆନ୍ତୁ ।"

ବ୍ରାହ୍ମଣ କ୍ଷୀର ଆଣି ଥାଳରେ ଖେଳେଇ ଶୀତଳାଇ ନେଲେ । ପୁରି ଆଣି ରଖିଲେ । ତରକାରି ବାଢ଼ି ନେଲେ ଗିନାରେ । ସବୁରି ଉପରେ ତୁଳସୀ ପତ୍ର ପକେଇ ଆଖି ବୁଜି ନାରାୟଣଙ୍କର ଧ୍ୟାନ କରିବାକୁ ଲାଗିଲେ । ସେ ଧ୍ୟାନ କରିବା ଭିତରେ ଭଗବାନଙ୍କୁ ଡାକି ଭୋଗ ସମର୍ପଣ କରୁଥାଆନ୍ତି । ଭୋକିଲା ଭଗବାନ ତ ସେଇ ନନ୍ଦ ଭବନରେ ଥିଲେ । ବିହାର କରୁଥିଲେ । ଯଶୋଦା ମାତା ଅନ୍ୟ କୋଠରୀକୁ କୋଉ କାମରେ ଯାଉଥିଲେ । ଆଉ ବ୍ରାହ୍ମଣ ଆଖି ବନ୍ଦ କରି ଧ୍ୟାନ କରୁଥିଲେ । ସେତିକିବେଳେ ବାଳ ଗୋପାଳ ପହଞ୍ଚି କ୍ଷୀର ହାପୁଡ଼ିବା ଆରମ୍ଭ କରି ଦେଲେ । ଦୁଇ ହାତରେ ସର ସର ହାପୁଡ଼ିବା ଶବ୍ଦରେ ବ୍ରାହ୍ମଣଙ୍କ ଧ୍ୟାନଭଗ୍ନ ହେଲା । ଭାବିଲେ—'ମୂଷା ତ ଆସିଲା ନାହିଁ ! ଦେଖିଲାବେଳକୁ କେଡ଼େ ବଡ଼ କଳା ମୂଷା । ସର୍‌ସର କ୍ଷୀର ହାପୁଡ଼ିବାରେ ଲାଗି ପଡ଼ିଛି । ବ୍ରାହ୍ମଣଙ୍କ ଆଖି ଖୋଲିବା ମାତ୍ରେ ମୁହଁରେ କ୍ଷୀର, ଦହି ହାତ କ୍ଷୀର 'ଗଲା ଗଲା, ଆଉ କାହ୍ନା ଛୁଁ ! ସେତେବେଳେ ଯଶୋଦା ବି ଆସି ପହଞ୍ଚିଲେ । କାହ୍ନା ହାତରେ ମୁହଁରେ କ୍ଷୀର ଦେଖି ସେ ସବୁ କଥା ବୁଝିଗଲେ । ସବୁ ସାରି ଦେଲା, ସବୁ ଅଇଁଠା କରି ଦେଲା ! ଆଉ ସେ କାହ୍ନାକୁ ମାରି ଗୋଡ଼େଇଲେ । ବ୍ରାହ୍ମଣ ମହାଶୟ ଦଉଡ଼ି ଆସି ତାଙ୍କ ହାତ ଧରି ପକେଇଲେ—'ଯଶୋଦା ତୋତେ ମୋ ରାଣ, ପୁଅକୁ ମାର ନାହିଁ । ସେ ପିଲା ଲୋକ । ସେମାନଙ୍କର କୋଉ କଥାର ହେତୁ ଥାଏ । କିଛି କଥା ନାହିଁ, ମୋର ବି ସେମିତି ବିଶେଷ ଇଚ୍ଛା ନ ଥିଲା । ବେଳ ମଧ୍ୟ ଚଢ଼ି ଗଲଣି । ପୁଣି କାଲି । ଆଜି ଖାଲି ଦୁଧ ପିଇ ନେବି ।'

ଲଜ୍ଜିତ ହୋଇ ମାଆ ଅତି ଆଗ୍ରହରେ କହିଲେ—"ନା' ବାପା, ତାହା କେମିତି ହେବ । ତମକୁ ମୋ ରାଣ । ତମେ ପ୍ରସାଦ ନ କଲେ ମୋର ଦୁଃଖ ହେବ । ମୁଁ ପୁଣି ସବୁ ସଜାଳି କରି ଦେଉଛି । ଦୁଧ ତ ଫୁଟି ସାରିଛି । ପାଖ ଚୁଲିରେ ଷୀର ବସେଇ ଦିଅ । ଅନ୍ୟଟିରେ କେଇ ଖଣ୍ଡ ପୁରି କରିନିଅ । ତରକାରି ପଛ ମନ ହେଲେ କର ନ ହେଲେ ଥାଉ ।"

ବ୍ରାହ୍ମଣ କହିଲେ—"ନା ଲୋ ଝିଅ, ମୋର ଆଦୌ ମନ ନାହିଁ । ମୁଁ ପୁଣି ଯମୁନାକୁ ଯିବ ।"

ମାଆ କହିଲେ—"ଭୋକ ନଥିଲେ ନାହିଁ, ମୋର ମନ ରଖିବାକୁ କର ହେଲେ ।"

ବ୍ରାହ୍ମଣ ଆଉ କହନ୍ତେ କଣ ? ନନ୍ଦରାଣୀଙ୍କର ଆଗ୍ରହ ଏଡ଼ାଇ ଦେଇ ପାରିଲେ ନାହିଁ । ପୁଣି ସବୁ କଲେ । ମାତା ଜଗି ଥାଆନ୍ତି, କାଳେ ପୁଣି କୁଆଡ଼ୁ ଆସି ପଡ଼ନ୍ତି ଯିବ । ଶ୍ୟାମ ସେତେବେଳକୁ ପଲଙ୍କରେ ଶୋଇ ଯାଇଥିଲେ । ମାଆ ଭାବିଲେ ଭଲ ହେଲା । ଯାକୁ ଆଉ ଉଠେଇବ ନାହିଁ । ତା'ର ଭିତରେ ପଣ୍ଡିତ ମହାଶୟ ପ୍ରସାଦ ପାଇନେବେ । ସେ ତେଣୁ କହିଲେ—'ବାପା, ଚଞ୍ଚଳ ଚଞ୍ଚଳ ସାର । ଭୋଗ ଲଗେଇ ପ୍ରସାଦ ପାଇ ନିଅ । ଅବେଳ ହେଲାଣି ।'

ବ୍ରାହ୍ମଣ ପୁଣି ତୁଳସୀ ପକେଇଲେ, ଘଣ୍ଟି ବଜେଇଲେ ଆଉ ଆଖି ବୁଜି ଧ୍ୟାନ କରିବାକୁ ଲାଗିଲେ । ହେଲେ ଧ୍ୟାନ କଲାବେଳେ ସେଇ ବାଳ ଗୋପାଳ ହିଁ ଦୃଶ୍ୟ ହେଉଥାନ୍ତି । ସେତେବେଳେ କୁଆଡ଼ୁ କୁକୁରଟିଏ ଆସି ଘରକୁ ପଶି ଆସୁଥିଲା । ମାଆ କୁକୁରକୁ ଘଉଡ଼ିବାକୁ ଆଉ ଦରଜା ବନ୍ଦ କରି ଦେବାକୁ ଯିବା ମାତ୍ରକେ, ସେ ନଟବର ପଲଙ୍କରୁ ଓହ୍ଲାଇ ପଡ଼ି ଦ' ହାତରେ ଷୀର ହାପୁଡ଼ି ବସିଲେ । ଥରକେ ଗୁର ଗୁର ପୁର ଖାଇବା ଆରମ୍ଭ କରିଦେଲେ । ଆୱାଜ ପାଇ ବ୍ରାହ୍ମଣ ଆଖି ଖୋଲିଲାରୁ ଦେଖିଲେ ଶ୍ୟାମସୁନ୍ଦର ଭୋଗ ଲଗଉଛନ୍ତି । ଶବ୍ଦ ଶୁଣି ମାଆ ମଧ୍ୟ ଦଉଡ଼ି ଆସିଲେ । ସେତେବେଳେ ଯାଏଁ ପୁଳ କଳା ଭର୍ତ୍ତି ହୋଇ ରହିଥିଲା । ହାତରେ ଷୀର ସଲବଲ । ମାଆ ଆସି ଚଟ୍‌କିନା ହାତ ଧରି ପକେଇଲେ । ପୁରି ଭରି ଫୁଲିଲା ଗାଲଟିରେ ଚୁପୁଡ଼ାଏ ଦେଇ କହିଲେ—'କେତେ ଉତ୍ପାତ କରୁଛୁ ! ବ୍ରାହ୍ମଣ ମହାପ୍ରଭୁଙ୍କୁ ବ ଛାଡ଼ୁନୁ । ଉପାସୀ ବ୍ରାହ୍ମଣ ବାଘଠାରୁ ବ ଭୟଙ୍କର । ଜାଣିନୁ ବ୍ରାହ୍ମଣ ଅଭିଶାପ ଦେବେ ।

ସେତିକିବେଳେ ବ୍ରାହ୍ମଣ ମହାଶୟ ଆସି ତାଙ୍କର ହାତ ଛଡ଼େଇ ନେଲେ । ଶ୍ୟାମସୁନ୍ଦରଙ୍କୁ କୋଳ କରି ନେଲେ ଆଉ କହିଲେ 'ଝିଅଲୋ ! କଣ ହେଲା ସେଇଠୁ ? ମୁଁ ତ ପ୍ରଥମରୁ କହୁଛି ଯେ ମୋ ଭାଗ୍ୟରେ ଆଜି ଭୋଜନ ନାହିଁ । ପିଲାକୁ ମାରିବା ଠିକ୍ ନୁହେଁ । ଆଉ ମୋତେ ପୁଣି ଥରେ କରିବାକୁ କହନା ।

ଅତ୍ୟନ୍ତ ଲଜ୍ଜିତା ଅପରାଧିନୀ ଭଳି ମା ଯଶୋଦା କହିଲେ—'ବାବା, ମୁଁ ଆପଣଙ୍କୁ ଆଉ କୋଉ ମୁହଁରେ କହିବି । ସବୁ ଦୋଷ ମୋର । ମୁଁ ଗୁଡ଼ ନେଇ ଗଲିବୋଲି ଏତେ ସବୁ ହେଲା ।'

ବ୍ରାହ୍ମଣ ଅତି ସ୍ନେହରେ କହିଲେ—"ଯଶୋଦା ତୁ ଆଉ ଏମିତି କୁହନା । ତୁ ଆଉ ମନ ଖରାପ କରନା···। ବୃଦ୍ଧାବସ୍ଥାରେ ଭୋକ ବି ସେତେ ନ ଥାଏ । ଆଣ ମୁଁ ଦୁଧ ପିଇ ନେବି । ଏ ଲଡ଼ୁ ଗୁରେଟି ନେଇଆ !

ଯଶୋଦା ଅତି ବିନମ୍ର ସହକାରେ କହିଲେ—"ବାବା ! ଦୁଧ ଆଉ ଲଡ଼ୁରେ କେମିତି ଚଳିବ । ଆପଣଙ୍କର କ'ଣ ଅଛି, ନ ଖାଇଲେ ବି ଆପଣ ରହିପାରିବେ, ହେଲେ ମୋ' ମନ ତ ମାନିବ ନାହିଁ । ମୁଁ ଆଉ ସେପରି ଭୁଲ କରିବି ନାହିଁ । ଦୁଧ ଫୁଟୁଛି, ସେଇଥିରେ ଚାଉଳ ପକେଇ ଦିଅ । ବାସ ଖାଲି ଖିରି ଟିକିଏ ହୋଇଯାଉ !"

ଟିକିଏ ବିରକ୍ତ ହୋଇ ବ୍ରାହ୍ମଣ କହିଲେ—"ଯଶୋଦା, ମୁଁ ଆସି ବୁଢ଼ା ହେଲିଣି, ଏତେ ପରିଶ୍ରମ ଆଉ ମୋ' ଦେଇ ହେବ ନା ?"

ମା' କାନ୍ଦ କାନ୍ଦ ହୋଇ କହିଲେ—"ମୁଁ ତମର ଗୋଡ଼ ଧରୁଛି, ଏଥିରେ କୌଣସି ପରିଶ୍ରମ ନାହିଁ । ଚାଉଳ ପକେଇ ସେଥିରେ ଘିଅ ଟିକିଏ ପକେଇ ଦିଅ । ଘିଅ ପକେଇ ଦେଲେ ଦୁଧ ଉତୁରି ପଡ଼ିବ ନାହିଁ । ଖାଲି ଟିକିଏ ଖିରି ହେଲେ ହେଉ !"

ସେ ଆଉ କରନ୍ତେ କ'ଣ ? ବ୍ରାହ୍ମଣ ଫୁଟିଲା ଖୀରରେ ଚାଉଳ ପକେଇଲେ । ତା'ରି ଭିତରେ ସେପେଇ ସରଞ୍ଜାମ ଆଉ ଚୂଲି ପର୍ଯ୍ୟନ୍ତ ସଜାଳ ହୋଇଗଲା । ମାତା ରୋହିଣୀ ଲପାପୋଛା କରି ଆଉ ଗୋଟାଏ ଚୂଲି ଜଳେଇ ଦେଲେ । ଅନ୍ୟ କୋଠରୀରେ ଅଟା ଦଳା ସାରି ପୁରି ବେଲି ନେଇ ଆସିଲେ । ଘିଅ ଦେଇ କଡ଼େଇ ବି ବସେଇ ଦେଲେ । ଆଉ ଅନୁରୋଧ କଲେ, "ବାବା, ଗୁରେଟି ମାଳ ପୁରି ଛାଣି ଦିଅ । ତା'ହେଲେ ଆମକୁ ପୂରା ସନ୍ତୋଷ ମିଳିଯିବ ।"

ସବୁ ସରଞ୍ଜାମ ତ ହାତପାଖରେ ଥିଲା । ଘିଅ ମଧ୍ୟ କଡ଼େଇରେ ଗରମ ହୋଇ ସାରିଥିଲା । ପୁରି ବେଲା ପର୍ଯ୍ୟନ୍ତ କାମ ସରିଥିଲା । ଖାଲି କଡ଼େଇ, ପୁରି ଛାଣିବା କଥା । ତେଣୁ ବ୍ରାହ୍ମଣ ମହାପ୍ରଭୁ ଅମଙ୍ଗ ନ ହୋଇ ଛାଣି ନେଲେ । ମାଆ ଯାଇ ଆମ୍ବ ଆଚାର ନେଇ ଆସିଲେ । ସେ ଶ୍ୟାମସୁନ୍ଦରଙ୍କୁ ଗୋଟାଏ ଘରେ ବନ୍ଦ କରି ଦେଇଥିଲେ । ଦୁଆର ମୁହଁରେ ଜଗି ବସି ପଡ଼ିଥିଲେ । ବ୍ରାହ୍ମଣ ବିନା ସମର୍ପଣ କରି କେମିତି ପ୍ରସାଦ ପାଆନ୍ତେ । ତା'ପରେ ନାରାୟଣଙ୍କର ସ୍ମରଣ କଲେ । ସେତିକିବେଳେ ମାତା ରୋହିଣୀ ରାନ୍ଧି ବସିଥିଲେ । ତରକାରୀରେ ଛୁଙ୍କ ଦେବେ ବୋଲି କଡ଼େଇରେ ଘିଅ ପକେଇ

ଦେଖିଲାବେଳକୁ ତାଙ୍କ ହାତ ଦେଖନ୍ତି ଜଳଜଳ । ଏଣେ ଘିଅ ଫୁଟି ଢଡ଼ମଡ଼ ହେଉଛି ।
ସେ ସେଇଠୁ ପାଟିକଲେ···"ନାଁ, ମେଥି ପୁଷ୍ଟି ଏ ଆଣି ଦେବ ଚଞ୍ଚଳ···!"

ମେଥି ସେଇ ଘରେ ଥିଲା ଯୋଉ ଘରେ ମାଆ ଶ୍ୟାମସୁନ୍ଦରଙ୍କୁ ବନ୍ଦକରି ରଖିଥିଲେ ।
ସେ କବାଟ ଖୋଲି ଭିତରକୁ ଗଲେ, ମେଥି ଆଣି ସେଥେଇ ପାଖରେ ପହଞ୍ଚିଲେ ।
ଚଞ୍ଚଳ ଆସିବା ଫଳରେ କବାଟ ଦେବାକୁ ଭୁଲିଗଲେ । ଆଉ କ'ଣ ? ବାଟ ଫିଟିଗଲା !
ଏଥର ବ୍ରାହ୍ମଣ ଗୋଟାଏ ବଡ଼ ପତ୍ରରେ ଖିରି ଶୀତଳେଇ ଥିଲେ । ଯେମିତି କି ଶୀଘ୍ର
ଥଣ୍ଡା ହୋଇଯିବ । ଶ୍ୟାମସୁନ୍ଦର ଏଥର ଯାଇ ଖିରି ପତ୍ର ପାଖରେ ହାଜର । ଦେଖ
ହାତ ପିନ୍ଧା କାଛେଣୀ ସବୁ ଖିରି ସର ସର ଆଉ ସେ ଦୁ' ହାତରେ ହାପୁଡ଼ ଗୁଳିଥାନ୍ତି ।

ମାଆ ଦେଖି ଛାଙ୍କ ଦେଇ ଉଠିଲାବେଳକୁ ଦେଖିଲେ, କ୍ଷୀରସାଗରଶାୟୀ ଖିରରେ
ବିହାର କରୁଛନ୍ତି । ମାଆ ଖୁବ୍ ରାଗିଗଲେ । ଶ୍ୟାମସୁନ୍ଦରଙ୍କର ଦୁଇକାନ ଧରି କହିଲେ—
"କାହ୍ନା ! ମୁଁ ତତେ ଆଜ ନ ମାରି ଛାଡ଼ିବି ନାହିଁ । ଏତେ ଦୁଷ୍ଟାମୀ !"

ସେକଥା ଶୁଣି ସରଳ ଭାବରେ ଶ୍ୟାମ କହିଲେ—"ମାଆ ! ଏଥିରେ ପୁଣି
ମୋର କି ଦୋଷ ?"

ମାଆ ଉତ୍ତର ଶୁଣି ରାଗି ଯାଇ କହିଲେ—"ତୋର ନୁହଁ ତ ଆଉ କ'ଣ
ମୋର ଦୋଷ ?"

ଶ୍ୟାମସୁନ୍ଦର କହିଲେ—"ନା ତମର ଦୋଷ, ନା ମୋର । ସବୁ ଏଇ ବାବାଙ୍କର
ଦୋଷ । ଗୃହବାଡ଼ି ଆଣି ଆଖି ବନ୍ଦକରି ମୋତେ ଆଦରରେ ଡାକୁଛନ୍ତି । ଯିଏ ବି
ମୋତେ ଶ୍ରଦ୍ଧାରେ ଡାକିବ ମୁଁ ସେଇଠି ପହଞ୍ଚି ଯାଏଁ ।"

ଏଥିରେ ଅଧିକ ରାଗିଗଲେ ମା' । ଧମକେଇ କହିଲେ—"ସିଏ ତତେ
ଡାକୁଛନ୍ତି ନା ?"

—"ହଁ, ମୁଁ ହିଁ ତ ତାଙ୍କର ଭଗବାନ !"

ଏତିକି ଶୁଣିଲା ମାତ୍ରକେ ବ୍ରାହ୍ମଣଙ୍କର ହୃଦ କୋଳପ ଖୋଲିଗଲା । ଦୃଷ୍ଟି ଦିବ୍ୟ
ହେଲା । ଭଗବାନଙ୍କୁ ଚିହ୍ନିପାରି ତାଙ୍କ ପାଦରେ ପ୍ରଣାମ କରି ଅଇଁଠା ଖିରି ଆନନ୍ଦରେ
ଖାଇବାକୁ ଲାଗିଲେ ।

ମାଆ ବିସ୍ମୟରେ କହିଲେ—"ଆହା ହା ବାବା ! ତମେ ଏ କ'ଣ କରୁଛ ?
ପିଲାର ଅଇଁଠା ଖିର ଖାଉଛ ?"

ବ୍ରାହ୍ମଣ କହିଲେ—"ଯଶୋଦା, ତୁ ଧନ୍ୟ ! ଯେ ସାକ୍ଷାତ୍ ପରଂବ୍ରହ୍ମ ପରମାତ୍ମାଙ୍କୁ ପୁଅ
ଭାବି ତାଙ୍କୁ କୋଳରେ ବସେଇ ଖୁଆଉଛୁ, ଗାଲ ମାଡ଼ ଦେଉଛୁ । ମୁଁ ମୂର୍ଖ ଏ ଯାଏଁ ଚିହ୍ନିଲି
ନାହିଁ । ମୁଁ କେଡେ ଅପରାଧୀ ।" ଏହାକହି ବ୍ରାହ୍ମଣ ଅନନ୍ଦରେ କାନ୍ଦିବାକୁ ଲାଗିଲେ ।"

ମାଆ ଭାବିଲେ ଭୋକ ପାଇଁ ବ୍ରାହ୍ମଣ ପାଗଳ ପ୍ରାୟ ହୋଇ ଯାଉଛନ୍ତି । ସେଇଥି-ପାଇଁ ବାଉଳାରେ ଏଣୁତେଣୁ କହୁଛନ୍ତି । ଏଣିକି ଭାବି ସେ ଶ୍ୟାମସୁନ୍ଦରଙ୍କୁ କୋଳକରି ନେଇଗଲେ । ବ୍ରାହ୍ମଣ ମଧ୍ୟ ସେଇ ଦ୍ରବ୍ୟ ପ୍ରସାଦ ଖିରି ଖାଇ କୃତାର୍ଥ ହୋଇ ବାରମ୍ବାର ନନ୍ଦଙ୍କର ଅଗଣାକୁ ଆସି ସେଠାର ଧୂଳି ମୁଣ୍ଡରେ ମାରି ନନ୍ଦନନ୍ଦନଙ୍କ ପାଦପଦ୍ମରେ ପ୍ରଣାମ କରି ବାହୁଡ଼ିଲେ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଏପରି ଗୋଟାଏ ନୁହେଁ । ଶ୍ରୀହରି ଦ୍ୱିଜମାନଙ୍କ ସାଙ୍ଗରେ ଏଭଳି ଅନେକ ରସମୟୀ କ୍ରୀଡ଼ା କରିବାକୁ ଲାଗିଲେ । ସେମାନଙ୍କ ସାଙ୍ଗରେ କରନ୍ତି ନାହିଁ ଯେଉଁ ଦ୍ୱିଜମାନେ ଅସୁର ସେଇ ଦ୍ୱିଜ ରୂପରେ ଜନ୍ମିଥିବା ଅସୁରମାନଙ୍କର ଗୁହଦ୍ୱାରରେ ନାଚ ଦେଇଁ ସେମାନଙ୍କୁ ଉଚିତ ମାର୍ଗକୁ ଆଣିବାକୁ ଲାଗିଲେ । କେବେ କେମିତି ଶ୍ୟାମସୁନ୍ଦର ପକ୍ଷୀମାନଙ୍କ ସାଙ୍ଗରେ ମଧ୍ୟ କ୍ରୀଡ଼ା କରନ୍ତି ।"

ଶ୍ୟାମସୁନ୍ଦରଙ୍କର ଏବେ ନୂଆ ନୂଆ ଦାନ୍ତ ଉଠୁଛି—ଗୋଟାଏ ଲେଖାଏଁ ଦୁଧିଆ ଦାନ୍ତ ପଡ଼ିବାକୁ ଲାଗିଲାଣି । ଦିନେ ସେ ରୁଟି ଖାଉଥିଲେ ଆଉ ତାଙ୍କର ଦୁଧିଆ ଦାନ୍ତଟିଏ ଝଡ଼ି ପଡ଼ିଲା । ସେ କାନ୍ଦିବାକୁ ଲାଗିଲେ···ମୋ' ଦାନ୍ତ....ମୁଁ ତ ଏବଠୁଁ ବୁଢ଼ା ହୋଇ ଗଲିଣି ।

ମା' କହିଲେ—"ଦେଖ, ଏ ଦାନ୍ତକୁ ଦୁଧରେ ରଖିଦେ । ଏଇ ବଡ଼ ହୋଇ ପୁଣି ଉଠିବ । ଏମିତି ଶୁଣି ସେ ମାଟି ପାତ୍ରଟିରେ ଦୁଧ ନେଇ ତାକୁ ରଖିଦେଇ ପ୍ରତିଦିନ ପଚାରନ୍ତି—ମା' ଦେଖ ମୋର ଦାନ୍ତ ଉଠିଲା ନା ନାହିଁ । ମାଆ କହନ୍ତି—ଧୈର୍ଯ୍ୟ ଧର, ତାହା ଧୀରେ ଧୀରେ ଉଠିବ । ସେଭଳି ଯେତେବେଳେ ବି ଦୁଧ-ଦାନ୍ତ ଭାଙ୍ଗି ଯାଉଥିଲା ତାକୁ ନେଇ ଦୁଧରେ ପକେଇ ରଖି ଦେଉଥିଲେ । ସେଇ ଜାଗାରେ ନୂଆ ଦାନ୍ତ ଉଠଲେ ଖୁସିରେ ନାଚ ଦେଇଁ ମୋ' ଦାନ୍ତ ଉଠଲାଣି, ମୋ' ଦାନ୍ତ ଉଠିଲାଣି କହି ଖୁସିରେ ଯାଇ ଦେଖି ଆସନ୍ତି ସେଇ ଦୁଧ ବଢ଼ାଉ ଦାନ୍ତଟିକୁ, ମାଆ ତାକୁ ନେଇ ମାଟିରେ ପୋତି ଦେଇ ଆସିଥାନ୍ତି ଆଗରୁ । କହନ୍ତି—"ଏଥିରେ ଆଉ କୋଉଠି ଅଛି, ସେ ତ ତୋର ପାଟିରେ ଉଠି ସାରିଲାଣି ।"

କୌଣସି ଗୋପୀ କେତେବେଳେ କହନ୍ତି—"କାହ୍ନା ! ତୁ ତ ବୁଢ଼ା ହେଇଗଲୁ । ସେ ସାଙ୍ଗେ ସାଙ୍ଗେ ଜବାବ ଦିଅନ୍ତି—ଦୁଧ ବଢ଼ାରେ ମୋ' ଦାନ୍ତ ବଢ଼ୁଛି ।" ସେ ଏହିଭଳି ବାଳଲୀଳା କରି ମାତା, ପିତା ଓ ବ୍ରଜବାସୀଙ୍କୁ ଆନନ୍ଦ ଦେବାକୁ ଲାଗିଲେ ।

ଯେ ବେଳେ ବେଳେ ଖାଲି ପାଦରେ କଣ୍ଟା ବୁଦାକୁ ଚାଲି ଯାଆନ୍ତି । କଣ୍ଟା ଆଣି ଧୂଳିରେ ପୋତି ପୋତି କ୍ଷେତ ତିଆରି କରନ୍ତି । ମାଆ ଦେଖିଲେ କହନ୍ତି—"ଏ ସବୁ ତୁ

କ'ଣ କରୁଛୁ କାହ୍ନା···କିଏ କହିବ । ତୋ ଠାରେ କି ଫୋଡ଼ ହବ । ଆସି ଏଡ଼ୁଟେ ହେଲୁଣି ହେଲେ ତୋର ବୁଦ୍ଧି ବୋଲି ଟିକିଏ ବି ହେଲାନାହିଁ ।”

ସେ କହନ୍ତି—“ମାଆ ! ଦେଖିବୁ ମୁଁ ଗୋଟାଏ ବି କଣ୍ଟା ରଖିବି ନାହିଁ । ସବୁ ବାଛି ବାଛି ଫିଙ୍ଗି ଦେବି । ନଷ୍ଟ କରି ଦେବି । ବ୍ରଜକୁ ନିଷ୍କଣ୍ଟକ କରିଦେବି ।” ତାଙ୍କର ଏଇ ସରଳ କଥା ଶୁଣି ମାଆ ହସି ଦିଅନ୍ତି ଆଉ କଣ୍ଟାତକ ନେଇ ଜାଳନ୍ତି ନିଆଁରେ ପକେଇ ଦିଅନ୍ତି । ତା'ପରେ ସେ ଧୂଳି ଖେଳି ବସିଲେ ମାଆ କହନ୍ତି—“ଧୂଳି ତୋତେ ଏତେ ଭଲ ଲାଗୁଛି । ଯେତେବେଳେ ଦେଖ, ଆସି ସେଇ ଧୂଳିରେ ଲେଟିଲୁଣି ।”

“ମାଆ, ଧୂଳି ଖରା କଅଁଳ । ଥଣ୍ଡା ଥଣ୍ଡା ଲାଗେ । ଖରା ଭଲ । ବଳରାମ ଭାଇ ବି ଖେଳନ୍ତି ଆସି । ଆମେ ସମସ୍ତେ ସାଙ୍ଗ ହୋଇ ଖେଳୁଁ । ଧୂଳି ଖେଳ ମୋତେ ଖୁବ ମଜା ଲାଗେ ।”

ମାଆ ଶ୍ୟାମସୁନ୍ଦରଙ୍କ ମୁହଁରୁ ଏମିତି ମଜା ମଜା କଥା ଶୁଣି ସ୍ନେହରେ ବିଭୋର ହୋଇ ବାରମ୍ବାର ଚୁମା ଦିଅନ୍ତି···।

ଶୌନକ ପଚାରୁଛନ୍ତି—“ହେ ସୂତ ! ମାତା ଯଶୋଦା ବାଳକୃଷ୍ଣଙ୍କର ମୁହଁରେ ଚୁମା କାହିଁକି ଦେଉଥିଲେ ।”

ସୂତ କହିଲେ—“ମହାରାଜ ! ବାତ୍ସଲ୍ୟରସର ପ୍ରଧାନ ସ୍ରୋତ ମୁହଁରେ, ଦାସ୍ୟର ପାଦରେ, ସଖ୍ୟର ମୁଖ୍ୟ ସ୍ରୋତ ବାହୁରେ ଏବଂ ମଧୁର ରସର ପ୍ରଧାନ ସ୍ଥାନ ହୃଦୟ । ଏହି ଏହି ରସମାନଙ୍କର ଆସ୍ୱାଦନ ନିମନ୍ତେ ଏଇ ଅଙ୍ଗମାନଙ୍କର ମିଳନ ଆବଶ୍ୟକ । ବାତ୍ସଲ୍ୟ ସ୍ନେହମୟୀ ମାତା ନିଜ ମୁହଁରେ ଶିଶୁର ମୁହଁ ଲଗେଇ ବାତ୍ସଲ୍ୟ-ରସର ଅନୁଭବ କରିଥାଏ । ଦାସ ଆପଣା ସ୍ୱାମୀର ଚରଣ ସ୍ପର୍ଶକରି ଦାସ୍ୟ ସୁଖ ଅନୁଭବ କରେ । ସଖାକୁ ବାହୁରେ ଭିଡ଼ିଧରି ସଖ୍ୟାନୁଭୂତି ପାଇଥାଏ ଏବଂ ମଧୁର ରସର ନାୟକ ନାୟିକା ହୃଦୟରେ ହୃଦୟ ଜଡ଼େଇ ରସାନୁଭୂତି ଲାଭ କରିଥାନ୍ତି । ରସସାଗରରେ ସ୍ନାନ କରିଥାନ୍ତି । ମାତା ଯଶୋଦା ପରଂବ୍ରହ୍ମଙ୍କୁ ପୁତ୍ରଭାବରେ ପାଇଥିଲେ । ତାଙ୍କର ହୃଦୟରେ ଐଶ୍ୱର୍ଯ୍ୟର ଗନ୍ଧ ପର୍ଯ୍ୟନ୍ତ ନ ଥିଲା । କିଏ ଲକ୍ଷେଥର ଶ୍ରୀକୃଷ୍ଣଙ୍କୁ ପରମାତ୍ମା କହିଲେ ମଧ୍ୟ ତାଙ୍କର ମନ ଉପରେ ତା'ର କୌଣସି ପ୍ରଭାବ ନ ଥିଲା । ସେ କେବଳ ତାଙ୍କୁ ପୁତ୍ରଭଳି ଦେଖୁଥିଲେ ଏବଂ ସେଇ କାରଣରୁ ସେଇ ବାତ୍ସଲ୍ୟରସର ଆସ୍ୱାଦନ ନିମନ୍ତେ ବାରମ୍ବାର ଚୁମା ଦେଉଥିଲେ ।”

ସୂତ କହୁଛନ୍ତି—“ହେ ମୁନିଗଣ ! ମୁଁ ଆପଣମାନଙ୍କ ଆଗରେ କୃଷ୍ଣଙ୍କର କେତୋଟି ମାତ୍ର ଲୀଳାର ବର୍ଣ୍ଣନା କଲି । ଏହାପରେ ତାଙ୍କର ମୃଦ୍‌ଭକ୍ଷଣ ଲୀଳା ବର୍ଣ୍ଣନା କରିବି ।”

## ଛପ୍ପୟ

କବହୁଁ ଘର କୀ ବସ୍ତୁ ଲଇକେଁ ବାହର ଖୋବେ ।
କବହୁଁ ଟୂଟେ ଦାଁତ ଦଖାବେଁ ପୁନି ପୁନି ରୋବେଁ ॥
କବହୁଁ କଣ୍ଟକାକୀର୍ଣ୍ଣ ଗୈଲ ମହଁ ଡରବଶ ଜାବେଁ ।
ମାତା ଲଢ଼ବେଁ ପକର ନହୀଁ ଆବେଁ ଲଲ୍ଲାବେଁ ॥
ବହୁବଧି ଲୀଳ ଲଲଜୀ, ଲଲିତ ଲଲିତ ନିତପ୍ରତି କରହୀଁ ।
ବ୍ରଜମହଁ ବସି ବଲଦେବ ସଁଗ, ବ୍ରଜବାସିନ କେ ମନ ହରହୀଁ ॥

# ମୃଦଭକ୍ଷଣ ଲୀଳା

**ଏକଦା କ୍ରୀଡ଼ମାନାସ୍ତେ ରାମାଦ୍ୟା ଗୋପଦାରକାଃ ।**
**କୃଷ୍ଣୋ ମୃଦଂ ଭକ୍ଷିତବାନିତି ମାତ୍ରେ ନ୍ୟବେଦୟନ ॥**

(ଶ୍ରୀ ଭା ୧୦ ସ୍କ, ୮ ଅ, ୩୨ ଶ୍ଲୋକ)

## ଛପ୍ପୟ

ଏକ ଦିବସ ବଲ ଶ୍ୟାମ ଗୋପ ବାଲକ ସଙ୍ଗ ଖେଲେଁ ।
ଯମୁନା ତଟପୈ ଜାଇ ଦଣ୍ଡ ସବ ମିଲିକେ ପେଲେଁ ॥
ପେଲ ପାଇକେ ଦଣ୍ଡ କଦମ ତର ଗୟେ କନ୍ହାଇ ।
ମୀଠୀ ମାଟି ନିରଖି ହୁବକ ଥୋରୀ-ସୀ ଖାଇ ॥
ଲଖି ବୋଲେ ବଲଦେବଜୀ, କନୂଆ ! ମାଟୀ ଖାତୁ ହୈ ।
ମୈୟାତେଁ ଅବଇ କହୂଁ, ଅବ ତୂ ବଗରଯୋ ଜାତୁ ହୈ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ଥରେ ଖେଳୁଥିବା ସମୟରେ ଶ୍ରୀକୃଷ୍ଣ ମାଟି ଖାଇଦେଇଛୁ ବୋଲି ଶ୍ରୀ ବଳଦେବ ଆଉ ଅନ୍ୟାନ୍ୟ ଗୋପବାଳକମାନେ ଆସି ମାତା ଯଶୋଦାଙ୍କୁ କହିଲେ ।"

ପୃଥିବୀକୁ ଗନ୍ଧବତୀ ବୋଲି କୁହା ଯାଇଛି । ସବୁ ପ୍ରକାର ସୁଗନ୍ଧ ଏବଂ ଦୁର୍ଗନ୍ଧର ଉତ୍ପତ୍ତି ପୃଥିବୀରୁ ହୋଇଥାଏ । ଯେଉଁଠାର ପାଣି ମିଠା ସେଠାକାର ମାଟି ମଧ୍ୟ ମିଠା;

ଯେଉଁଠାରେ ଲୁଣି ସେଠାକାର ମାଟି ମଧ୍ୟ ଲୁଣି । ମିଠା ମାଟିର ଏକ ସୁଗନ୍ଧ ଅଛି; ସେଇ କାରଣରୁ ସେଥିରେ ରଖିଲା ପାଣି ଅଉ ଦୁଧର ସ୍ୱାଦ ବି ମିଠା ହୋଇଯାଏ । ଆମର ଏ ଶରୀର ବି ମାଟି ତିଆରି । ଏହାର ଅଧା ମାଟି ଆଉ ଅଧେ ଜଳ, ତେଜ, ବାୟୁ ଏବଂ ଆକାଶ ଆଦି ଚାରି ଭୂତର ସମଷ୍ଟି । ଏମାନଙ୍କର ସ୍ଥିତି ମାଟିରୁ ଜାତ ଅନ୍ନପାଇଁ ସମ୍ଭବ ହୋଇଥାଏ । ଶେଷରେ ଏ ଶରୀର ସେଇ ମାଟିରେ ମିଶିଯାଏ । ଅର୍ଥାତ୍ ଆରମ୍ଭରେ ମଝିରେ ଓ ଶେଷରେ ଏହା କେବଳ ମାତ୍ର ମାଟି । ଯେଭଳି ମାଟି ଘରକୁ ସୁରକ୍ଷିତ ରଖିବାକୁ ମାଟି ଲିପା ଯାଇଥାଏ, ସେଭଳି ଏଇ ମାଟିର ଶରୀରକୁ ସୁରକ୍ଷିତ ରଖିବାକୁ ଆମେ ଯାହା ଖାଉଁ ତାହା ମାଟି । ଯେତେବେଳେ ମନୁଷ୍ୟ ଏହି ସତ୍ୟକୁ ଭୁଲିଯାଏ ସେତେବେଳେ ଭଗବାନ ଅବତାର ନେଇ ସତ୍ୟକୁ ଲୀଳା ମାଧ୍ୟମରେ ପ୍ରକାଶିତ କରିଥାନ୍ତି ।

ସୂତ କହୁଛନ୍ତି—"ହେ ମୁନିଗଣ ! ଏବେ ଶ୍ରୀକୃଷ୍ଣ ସଖାମାନଙ୍କ ସାଙ୍ଗରେ ଯମୁନା କୂଳ ପର୍ଯ୍ୟନ୍ତ ବୁଲି ଯାଆନ୍ତି । ସେଠାକୁ ଯାଇ ନାନାରକମର ଖେଳ ଖେଳନ୍ତି । ଏବେ ସେ ବଳଦେବଙ୍କ ସାଙ୍ଗରେ ମଧ୍ୟ ଅନ୍ୟାନ୍ୟ ଗୋପ ବାଳକମାନଙ୍କ ପରି ନିର୍ଭୟ ହୋଇ ଖେଳୁଛନ୍ତି । ସେ ପର୍ଯ୍ୟନ୍ତ ସେ ବଳଦେବ ତାଙ୍କଠାରୁ ବଡ଼ ବୋଲି ମନେ କରୁ ନ ଥିଲେ । ତାଙ୍କ ପାଖରେ ଜଗି ରଖି ରହିବା କଥା ବୋଲି ଭାବୁ ନ ଥିଲେ । କିନ୍ତୁ ସେଦିନ ଏଭଳି ଏକ ଘଟଣା ଘଟିଲା ଯାହାଫଳରେ ସେ ବଳଦେବଙ୍କ ପାଖରେ ସଙ୍କୋଚ କରିବାକୁ ଲାଗିଲେ । ଆଉ ଯେତେ ପାରିଲେ ତାଙ୍କଠାରୁ ଦୂରେଇ ରହି ଖେଳିବାକୁ ଲାଗିଲେ ?"

ଶୌନକ ପଚାରିଲେ—"ହେ ସୂତ ! ଏଭଳି କେଉଁ ଘଟଣା ଘଟିଲା ଯେ ସେ ଅଲଗା ଖେଳିବାକୁ ଭାବିଲେ !"

ସୂତ କହିଲେ—"ମହାଭାଗ ! ଦିନେ ସଖାମାନଙ୍କ ସାଙ୍ଗରେ ସେ ଯମୁନା କୂଳରେ ଖେଳୁଥିଲେ । ସାଙ୍ଗରେ ବଳଦେବ ମଧ୍ୟ ଖେଳୁଥିଲେ । କେତେ ରକମର ଖେଳ ଖେଳୁ ଥାଆନ୍ତି । ଶେଷରୁ ଶ୍ରୀକୃଷ୍ଣ ଯମୁନା କୂଳର ଗୋଟାଏ ଗହ୍ୱାରୀ ଜାଗାକୁ ଏକୁଟିଆ ବୁଲି ଆସିଲେ । ଯମୁନାର ଚିକ୍କଣ ସୁନ୍ଦର ମାଟି ଦେଖି ତାଙ୍କ ମନ ଟକ ଟକ ହେଲା । ସେ ସେଇଠୁ ଟେକାଏ ମାଟି ନେଇ ଖାଇବାକୁ ଲାଗିଲେ ।"

ଶୌନକ ପଚାରିଲେ—"ହେ ସୂତ ! ନନ୍ଦରାଜାଙ୍କ ଘରେ କେତେ ଦୁଧ, କେତେ ଦହି, ଲହୁଣୀ ଆଉ କେତେରକମର ମିଠା ଥାଉଁ ଥାଉଁ ଭଗବାନ ମାଟି ଖାଇବାକୁ କେମିତି ମନ କଲେ ?"

ଏହା ଶୁଣି ଶ୍ରୀ ସୂତ କହିଲେ—"ମହାଶୟ ! ଭଗବାନଙ୍କ କଥା ଭଗବାନଙ୍କୁ ଜଣାଥିବ । ମୋ' ବୁଦ୍ଧିକୁ ଯାହା ଦିଶୁଛି, ସେ ଭାବିଥିବେ ମୋତେ ଦୁଧ ଖୁବ ଭଲ ଲାଗେ । ସେ ଗାଈ ଥିବାରୁ ଦାହାରେ । ଗାଈମାନେ ଘାସ ଖାଇ ଦୁଧ ଦିଅନ୍ତି । ଆଉ ଘାସ ଉଠେ

ମାଟିରେ । ଯୋଉ ମାଟିରେ କ୍ଷୀରର ମାଆ ଘାସର ଜନମ ହୁଏ, ସେ ମାଟି ପୁଣି କେତେ ମିଠା ହୋଇ ନ ଥିବ । ଏଇ କଥାଟିକୁ ଜାଣିବା ପରଖିବା ଲାଗି ସେ ବୋଧହୁଏ ମାଟି ଖାଇବାକୁ ମନ କରିଥିବେ କିମ୍ବା ଯେଉଁ ଦେବତାମାନେ ଆସି ବ୍ରଜଧୂଳିକୁ ପ୍ରାର୍ଥନା କରନ୍ତି—'ଆମକୁ ବ୍ରଜଧୂଳି ମିଳୁ ।' ଭଗବାନ ଭାବିଥିବେ—'ଏ ବ୍ରଜଧୂଳି ଚାଖି ଦେଖାଯାଉ, କେମିତି ତା'ର ସ୍ୱାଦ ମିଠା । ଯୋଉଥିପାଇଁ ବ୍ରହ୍ମା ଆଦି ଦେବତାମାନେ ବି ସଗଗରେ ଲେଭେଇ ଯାଉଛନ୍ତି ବା ଭଗବାନ ଭାବିଥିବେ ଲୋକେ ଶରୀରକୁ ତ ମାଟିରେ ଶୁଦ୍ଧ କରୁଛନ୍ତି । ମନ୍ତ୍ର ପଢ଼ନ୍ତି—'ମୃତ୍ତିକେ ହର ମେ ପାପଂ ଜନ୍ମମ୍ବା ଦୁଷ୍କୃତଂ କୃତମ୍ ।' ମୋ'ପେଟରେ ତ ନାନା ପ୍ରକାର ସୁକୃତ, ଦୁଷ୍କୃତ ଭରି ରହିଛି । ଦେଖାଯାଉ ଏ ମାଟି ପେଟକୁ ଗଲେ କ'ଣ ହେବ ! ଏଇ କଥାଟିର ପରୀକ୍ଷା କରିବାକୁ ସେ ହୁଏତ ମାଟି ଖାଇନେଲେ ବା ଏଇଆ ଭାବିଥିବେ—ଆମଲାଗି ଲହୁଣୀ ପୁଳାଏ ଯେମିତି ମାଟି ଟେଳାଏ ବି ସେମିତି । ଯମୁନାର ଏଇ ମାଟି ଟେଳାକ ଖିଆଯାଉ କିମ୍ବା ଭଗବାନ ଏଇଆ ଦେଖେଇବାକୁ ଚାହିଁଥିବେ । ଶରୀରର ବାହାରେ ଭିତରେ ଖାଲି ମାଟି, ଆମେ ଯାହା ଖାଉଛୁଁ ସିଏ ବି ମାଟି । ଗର୍ଭବତୀ ସ୍ତ୍ରୀମାନେ ମାଟି ଖାଆନ୍ତି । ସେଇ ସଂସ୍କାର କେତେକ ସ୍ତ୍ରୀଙ୍କ ଭିତରେ ରହିଯାଇଥାଏ । ଆଉ ସେଇ ସ୍ୱଭାବ ଅନୁସାରେ ସେମାନେ ବି ମାଟି ଖାଆନ୍ତି । ସେ ଯାହା ହୋଇଥାଉ କୃଷ୍ଣଚନ୍ଦ୍ର ମାଟି ଖାଇ ଦେଲେ ।''

ବଳଦେବଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ବାତ୍ସଲ୍ୟ ସ୍ନେହ ଥିଲା । ବଡ଼ମାନେ ସାନମାନଙ୍କର ଯତ୍ନ ନେବା ସ୍ୱାଭାବିକ । ଯେତେବେଳେ ବଳଦେବ ଦେଖିଲେ ଯେ ଖେଳୁଥିବା ପିଲାଙ୍କ ସାଙ୍ଗରେ ଶ୍ରୀକୃଷ୍ଣ ନାହାନ୍ତି ସେତେବେଳେ ସେ ତାଙ୍କୁ ଏଣେତେଣେ ଖୋଜିବାକୁ ଲାଗିଲେ । ସେଇ ଗଡ଼ାଣୀ ପାଖରେ ପହଞ୍ଚି ଦେଖିଲେ—କୃଷ୍ଣ ଠିଆହୋଇ ମାଟି ଖାଇବାରେ ଲାଗି ପଡ଼ିଛନ୍ତି । ସେ ଆଶ୍ଚର୍ଯ୍ୟ ହେଲେ । ଅନ୍ୟାନ୍ୟ ଗୋପ ପିଲାଏ ଦେଖି ହସିବାକୁ ଲାଗିଲେ । ସେତେବେଳେ ବଳଦେବ ଓଠ ଆଗରେ ଆଙ୍ଗୁଠି ରଖି ସେମାନଙ୍କୁ ଚୁପ୍ ରହିବାକୁ ଇଙ୍ଗିତ ଦେଲେ । ପିଲାମାନେ ଚୁପ୍ ରହିଲେ । ଆଉ ସେ ପାଦ ଚପି ଚପି ଯାଇ ପଛରୁ ଚଟ୍‌କିନା ତାଙ୍କ ହାତ ଧରିପକେଇ କହିଲେ—''ଆରେ କାନୁଆ, ଏଇଆ କରୁଛୁ ।''

ଶ୍ରୀକୃଷ୍ଣ ଡରିଗଲେ । କିଛି କହିପାରିଲେ ନାହିଁ । ମୁହଁରେ ତ ମାଟି ଭରିଥିଲା । କିଛି କହି ପାରିବା ଅବସ୍ଥାରେ ବି ନ ଥିଲେ କିମ୍ବା ହଁ କି ନାହିଁ—କହିବା ଅବସ୍ଥାରେ ମଧ୍ୟ ନଥିଲେ । ଚୋର ସିନ୍ଧିକଲା ଗାତଠିଁ ଧରାପଡ଼ି ଯାଇଥିଲା ।

ବଳଦେବ ଧମକେଇ କହିଲେ—''ମୁଁ ତୋତେ ଆଜି ଛାଡ଼ିବି ନାହିଁ । ମାଆ ପାଖକୁ ନେଇଯିବି । ତୋର ମାଟିଖିଆ ଅଭ୍ୟାସ ପଡ଼ିଗଲେ କେତେ ନା କେତେ ରୋଗ ହେବ ।''

ଶ୍ରୀକୃଷ୍ଣଙ୍କ ପାଟିରୁ କଥା ବାହାରିଲା ନାହିଁ । ଗୋପ ପିଲାଏ ତାଳି ମାରି ମାରି ହସିବାକୁ ଲାଗିଲେ । ଯୋଗକୁ ପୂଜା ପାଇଁ ପାଣି ନବାକୁ ନଜେ ଯଶୋଦା ଯମୁନାକୁ ଆସିଥିଲେ । ବଳଦେବ ଶ୍ରୀକୃଷ୍ଣଙ୍କୁ ତାଙ୍କର ପାଖକୁ ନେଇଗଲେ । ନେବା ସମୟରେ ଶ୍ରୀକୃଷ୍ଣ ଉପରେ କାନ୍ଦ କାନ୍ଦ କେତେପ୍ରକାରେ ବଳରାମଙ୍କୁ ବିନୟ କରି କହୁଥିଲେ । ତା'ର ଭିତରେ ପିଲାଏ ଦଉଡ଼ି ଯାଇ ମାଆଙ୍କ ଆଗରେ କହିବା ଆରମ୍ଭ କରିଦେଲେ—"ମାଆ, ମାଆ ! କନ୍ଥୁଆ ଆଜି ମାଟି ଖାଇଛି । ବଳରାମ ଭାଇ ତାକୁ ଧରି ଆଣୁଛନ୍ତି । ସେତିକିବେଳେ ଭଗବାନଙ୍କୁ ଧରିଆଣି ବଳରାମ ମାଆଙ୍କ ପାଖରେ ହାଜର କଲେ । କହିଲେ —ଦେଖ ମାଆ, ଏ କନ୍ଥୁଆ ଏଇନେ ମାଟି ଖାଇଛି ।"

ଏଇଆ ଶୁଣି ମାଆ ମଧ୍ୟ ଡରିଗଲେ । ହୁ'ଇ ମାଟିଖିଆ ଅଭ୍ୟାସ ଏବଠୁଁ ପଡ଼ିଗଲେ ନାନା ରୋଗ ଧରିବ । ଏଇଆ ଭାବି ସେ କଷିକରି ଶ୍ରୀକୃଷ୍ଣଙ୍କ ହାତ ଧରି ପଚାରିଲେ ଧମକାଇ କହିଲେ—"କ'ଣ କାହ୍ନା ! ମାଟି ଖାଉଛୁ ?"

ମୁହଁ ପୋତି ଶ୍ୟାମସୁନ୍ଦର ଦୋଷୀ ଭଳି ଠିଆ ହୋଇଥିଲେ । ମାଆ କହିଲେ— "କହୁନୁ କଥାଁ, ଭରି ଚୁପ୍ ସଇତାନ । ମୁଁ ଯାହା ପଚାରୁଛି ତା'ର ଉତ୍ତର କଥାଁ ଦେଉନୁ ?"

ଶ୍ୟାମସୁନ୍ଦର କାନ୍ଦ କାନ୍ଦ କହିଲେ—"କ'ଣ କହିବି ?"

"ଆଚ୍ଛା ହୋ, କେଡ଼େ ସୁନା ପିଲାଟେ । ଯେମିତି କି ମୁଁ କହିଲା କଥା ଜମାରୁ ଶୁଣି ନାହିଁ ।...ହଉ କହ ଏବେ, ମାଟି ଖାଇଛୁ ?"

ମାଆଙ୍କୁ କଣେଇ କଣେଇ ଚାହିଁ ଶ୍ୟାମସୁନ୍ଦର ଉତ୍ତର ଦେଲେ—"ମୁଁ କେତେବେଳେ ମାଟି ଖାଇଛି ?"

ମା' କହିଲେ—"ଦୋଷ କରିବୁ, ମିଛ ବି କହିବୁ ? ଆଉ କ'ଣ ଏ ପିଲାମାନେ ମିଛ କହୁଛନ୍ତି ?"

ଗୋପାଳ ବାଳକମାନେ କହିଲେ—"ନାହିଁ ମା, ଆମେ ସମସ୍ତେ ମାଟି ଖାଉଥିବା ଦେଖିଛୁଁ ।"

ମା' ଶୁଖିଲା ହସ ହସି କହିଲେ—"କହ, କ'ଣ କହୁଛୁ ?"

ଏଇଆ ଶୁଣି କୃଷ୍ଣ ଗାଲୁମାରି ବସିଲେ । ବଳଦେବଙ୍କୁ ସିନା ତାଙ୍କର ଟିକିଏ ଡର । ମାଆକୁ କୋଉ ଡର ! ବିନା ସଙ୍କୋଚରେ କହିବାକୁ ଲାଗିଲେ—"ତୁ ତ ମୋ' କଥାକୁ ବିଶ୍ୱାସ କରିବୁ ନାହିଁ ! ଏଇ ମିଛୁଆଙ୍କ କଥାକୁ ସତ ମଣିବୁ । ତୋତେ କୋଉ ଜଣା ଏମାନେ ସବୁ ଆଜି କାଲି ମୋର ବଇରୀ ହେଲେଣି । ଖେଳରେ ଏମାନେ ସବୁ

ପଣ ହସୁଛନ୍ତି । ମାଗିଲେ ଦେଉ ନାହାନ୍ତି । ସେଇଥିଲାଗି ମୁଁ ଏମାନଙ୍କ ସାଙ୍ଗରେ ଲଢ଼ୁଛି । ଆଉ ଇଏ ସବୁ ମୋ' ନାଆଁରେ ଚୁଗୁଲି କରୁଛନ୍ତି । ତୋ' ହାତରେ ମାଡ଼ ମରେଇବେ ଆଉ ତୁ ପିଟିଲେ ହସିବେ ।"

ମାଆ କହିଲେ—"ଠିକ୍ କଥା, ଏମାନେ ସବୁ ତୋର ବଇରି ପିଲା, ବଳଦେବ ତ ନୁହଁ ।"

କାନ୍ଦ କାନ୍ଦ ହୋଇ କୃଷ୍ଣ କହିଲେ—"ମାଆ, ତୁ ଆଉ ଭାଇଙ୍କ କଥା ପଚାରନା । ସେ ଆଉ ମୋ' ପଟେ ନାହାନ୍ତି । ସବୁବେଳେ ପର ପଟିଆ ।"

ମାଆ ପୁଣି ଧମକେଇ କହିଲେ—"ଏ ସବୁ ମିଛୁଆ, ଆଉ ଏକୁଟିଆ ତୁ ସତଆ ! ତୁ ମାଟି ଖାଇ ନ ଥିଲେ ଏମାନେ ସବୁ ତୋତେ ତୁଚ୍ଛାକୁ କଥାଁ ଧରି ଆଣିବେ ?"

ଏଇଆ ଶୁଣି କୃଷ୍ଣ ଭାରି ଦମ୍ଭର ସହିତ କହିଲେ—"ମାଆ ! ତୁ ମୋ' କଥାକୁ ବିଶ୍ୱାସ କର । ମୋତେ ଏଡ଼େ ମିଛୁଆ ବୋଲି ଭାବନା । ମୁଁ ମାଟି ଖାଇନି, ଖାଇନି, ଖାଇନି ! ଆଉ ତୁ ମୋ' କଥାକୁ ମିଛ ମଣୁଛୁ ଯଦି ମୋ' ପାଟି ଦେଖି ପକା । ତେଣିକି ବଳେ ଜାଣିପିବୁ ।"

ଏହା ଶୁଣି ମାଆ କହିଲେ—"ଠିକ୍ ଅଛି । ତୁ ପାଟି ଖୋଲ ।"

ମାଆଙ୍କ କଥା ଶୁଣିଦେଇ ତାଙ୍କର ଦମ୍ଭ ଭାଙ୍ଗିଗଲା । କହିଲାବେଳକୁ ଭାରି ଟାଣରେ କହିଦେଲେ ପିନା ସତକୁ ସତ ଖାଇଛନ୍ତି ତ ! ମାଟି ଏଇନେ ବି କିଛି କିଛି ଲାଗିଛି । ହେଲେ ଏଇନେ ଆଉ କରନ୍ତେ କ'ଣ ? ବାଧ୍ୟ ହୋଇ ଆଁ କରିବାକୁ ହେଲା ।

ଏହା ଶୁଣି ଶୌନକ ପଚାରିଲେ—"ଭଗବାନ ତ ନିଜେ ଜାଣନ୍ତି ଯେ ସେ ମାଟି ଖାଇଛନ୍ତି, ଆଉ ପାଟିରେ ମଧ୍ୟ ମାଟି ଲାଗିଛି, ତା'ହେଲେ ପାଟି ଖୋଲି ଦେଖେଇବା କଥାଟି କାହିଁକି କହୁଥିଲେ ! କିଛି ଗୋଟାଏ ବାହାନା କରିଥାଆନ୍ତେ । କହିଥାଆନ୍ତେ ମାଆ, ମୋତେ ଭାରି ଶୋଷ ହେଲାଣି । ପାଣି ପିଇନିଏଁ, ତେଣିକି ତୋର ଯେତେ ଇଚ୍ଛା ସେତେ ମାରିବୁ ବା ଗଣ୍ଡାଧରି କାନ୍ଦିବାକୁ ଲାଗିଥାଆନ୍ତେ । ଦୋଷ ସ୍ୱୀକାର କରି କହି ଦେଇଥାଆନ୍ତେ, ମାଆ ମୁଁ ଆଉ ମାଟି ଖାଇବି ନାହିଁ ବା କହିଥାଆନ୍ତେ ଜୋର୍ ଜବର କରି ଏମାନେ ମୋ' ପାଟିରେ ପୂରେଇ ଦେଇଛନ୍ତି । ଏ ସବୁ କିଛି ନ କହି, ମୋ' ପାଟି ଦେଖିପକା ବୋଲି ସ୍ପଷ୍ଟଭାବରେ କେମିତି କହିଦେଲେ ।"

ଶ୍ରୀ ସୂତ କହିଲେ—"ମହାଭାଗ ! ଶ୍ରୀକୃଷ୍ଣ ସତରେ କ'ଣ ଦେଖିବାକୁ କହିଥିଲେ । ସିଏ ମଧ୍ୟ ଗୋଟାଏ ଦେଖାଣିଆ କଥା । ଭାବିଥିବେ, ପୁରା ଆତ୍ମବିଶ୍ୱାସରେ ଟାଣ କରି ଏ ପଦକ କହିଦେଲେ ମା ମୋ' କଥାକୁ ବିଶ୍ୱାସ କରିଯିବ । ଭାବିବ ଇଏ ମାଟି ସତକୁସତ

ଖାଉଥିଲେ ଏମିତି କହନ୍ତା ! ଏଇଆ ଭାବି ପାଟି ଦେଖେଇବାକୁ କହିବ ନାହିଁ, ତାସ୍ କହିବ ଯା' ଆଉ ଦୁଷ୍ଟ ହବୁ ନାହିଁ । ସେ କୋଉ ଭାବିଥିଲେ ଯେ ତାଙ୍କ କଥା ଶୁଣି ମା' ସେ ପାଟି ଖୋଲି ଦେଖେଇବାକୁ କହିବେ । ଯେତେବେଳେ ମାଆ ସତକୁସତ ପାଟି ଖୋଲି ଦେଖେଇବାକୁ କହିଲେ ଶ୍ୟାମ ସୁନ୍ଦର ଡରିଗଲେ ।"

ଭଗବାନଙ୍କୁ ଡରି ଯାଉଥିବା ଦେଖି ତାଙ୍କର ଐଶ୍ୱର୍ଯ୍ୟ ଶକ୍ତି ଭାବିଲା—"ବର୍ତ୍ତମାନ ମୋର ସ୍ୱାମୀଙ୍କ ଉପରେ ସଙ୍କଟ ପଡ଼ିଲା । ମାତାଙ୍କର ତ ଶିଶୁକି ବାତ୍ସଲ୍ୟଭାବ । ତାଙ୍କ ମୁହଁରେ ଟିକିଏ ନା'କୁ ମାଟି ଲାଗିଥିବା ଦେଖିଲେ ନିଶ୍ଚୟ ମାରିବେ । ଛାଡ଼ିବେ ନାହିଁ । ମାଟି ଖାଇଲେ ଭୟଙ୍କର ରୋଗହୁଏ । ମାତା ଭଲପାଇଁ ହେଉ ପଛକେ ନିଶ୍ଚୟ ମାରିବେ । ମାତା ହିତୈଷିଣୀ, ମାଟି ଖାଇଲେ ନାନାଦି ରୋଗହୁଏ ବୋଲି ସେ ଆକଟ କରିବାକୁ ନିଶ୍ଚୟ ମାରିବେ । ତେଣୁ ସ୍ୱାମୀଙ୍କର ରକ୍ଷା କରିବା ଉଚିତ ହେବ । ତେଣୁ ପାଟିରେ ଥିବା ସେଇ ଟିକିଏ ମାନ ମାଟିରେ ଐଶ୍ୱର୍ଯ୍ୟ ଶକ୍ତି ସମ୍ପୂର୍ଣ୍ଣ ଚରାଚର ବିଶ୍ୱ ସୃଷ୍ଟି କରିଦେଲେ । ଶ୍ରେଷ୍ଠ ଫରୁଆ ଭଳି ପାଟି, ଝୁଡ଼ିଲ ଭଳି କେତୋଟି ସୁନ୍ଦର ସୁନ୍ଦର ଦାନ୍ତ, ଚିକ୍କଣ ଗୋଲାପୀ ରଙ୍ଗର ଜିଭ;···ଭଗବାନ ପାଟି ମେଲେଇ ଦେଲାରୁ ମାଆ ଦେଖିଲେ ଯେମିତି ଚଳଚିତ୍ର ଭଳି ସବୁ କିଛି ଦେଖାଯାଉଛି । ଦଶଦିଗ, ସାରା ପୃଥିବୀ, ଜଳ, ତେଜ, ବାୟୁ ଆକାଶ, ନଦ ନଦୀ, ପର୍ବତ, ସମୁଦ୍ର, ସୂର୍ଯ୍ୟ, ଚନ୍ଦ୍ରଙ୍କ ତାରାମଣ୍ଡଳ ଆଉ ସମସ୍ତ ଜ୍ୟୋତିର୍ମଣ୍ଡଳ । ସମସ୍ତ ଇନ୍ଦ୍ରିୟମାନଙ୍କରେ ବୈକାରିକ ଅହଙ୍କାର ପାଇଁ ବିରାଜିତ ହୋଇଥିବା ଅଧିଷ୍ଠାତା ଦେବଗଣ ଆଉ ମନ । ରାଜସ ଅହଙ୍କାରର କାର୍ଯ୍ୟରତ ଇନ୍ଦ୍ରିୟ-ମାନେ ଏବଂ ତାମସ ଅହଙ୍କାରର କାର୍ଯ୍ୟଭୂତା । ସମସ୍ତ ତନ୍ମାତ୍ରଙ୍କ ସହିତ ସତ୍ତ୍ୱ, ରଜ ଏବଂ ତମ ଏଇ ତିନିଗୁଣ ମଧ୍ୟ ଶ୍ରୀକୃଷ୍ଣଙ୍କର ମୁଖ ମଧ୍ୟରେ ଦେଖାଗଲେ ।

ମାତା ଦେଖି ଭାବିଲେ—"ଜୀବ, କାଳ, କର୍ମ, ସ୍ୱଭାବ, ଆଶୟ ଏବଂ ଭିନ୍ନଭିନ୍ନ ଶରୀର ହେତୁ ବିଚିତ୍ର ଭେଦବନ୍ତ ଏହି ସମ୍ପୂର୍ଣ୍ଣ ବିଶ୍ୱ ମୋ' ପୁଅର ପାଟିରେ ଦିଶୁଛି । ସେ ଅଧିକ ଆଶ୍ଚର୍ଯ୍ୟ ଚକିତ ହେଲେ, ଯେତେବେଳେ ଦେଖିଲେ ଯେ ସେଥିରେ ସମସ୍ତ ବ୍ରଜମଣ୍ଡଳ ସବୁ ଗୋପୀ, ଗୋପାଳ ଓ ଗୋରୁ ଗାଈ ମଧ୍ୟ ସ୍ୱଚ୍ଛନ୍ଦରେ ବିଚରଣ କରୁଛନ୍ତି । ସେ ନିଜେ ନିଜକୁ ମଧ୍ୟ ଦେଖିଲେ ଆଉ ତାଙ୍କ ଆଗରେ ପାଟି ମେଲେଇ ରହିଥିବା ଶ୍ରୀକୃଷ୍ଣଙ୍କୁ ମଧ୍ୟ ଦେଖିଲେ । ସେଇ ପାଟି ଭିତରେ ଥିବା କୃଷ୍ଣଙ୍କ ପାଟିରେ ମଧ୍ୟ ବିଶ୍ୱବ୍ରହ୍ମାଣ୍ଡ ଦେଖା-ଯାଉଥିଲା । ସେଥିରେ ପୁଣି ଦେଖାଯାଉଥିଲେ କୃଷ୍ଣ । ମାଆ ଏସବୁ ଦେଖି ଆବାକାବା ହୋଇଗଲେ । ସେ କିଛି ସ୍ଥିର କରି ପାରିଲେ ନାହିଁ କ'ଣ ହେଲା ଏସବୁ । ଏଡ଼େ ଟିକଟେ ମୋ' ପୁଅର ମୁହଁରେ ଏମିତି ସବୁ ଆବୁରକାବୁର ହୋଇ କ'ଣ କେମିତି ଦେଖାଯାଉଛି । ସେ ବାରମ୍ବାର ଆଖି ମଳିଲେ । ସପନ ତ ଦେଖୁନାହାନ୍ତି ? ପୁଣି ଭାବିଲେ—ମୋ' ଆଖି ତ ପୂରା ଖୋଲା, ସପନ କେମିତି ହେବ ? ମୁଁ ଯମୁନା କୂଳରେ ଅଛି । ହୋଇପାରେ ଇଏ

ଭଗବାନଙ୍କର କେମିତି ମାୟା ବା ମୋର କିଛି ବୁଦ୍ଧି ଭ୍ରମ ହେଲା କି ? ବା କେମିତି କିଛି ମାଦକ ଦ୍ରବ୍ୟ ଖାଇବା ଫଳରେ ମୋତେ ଏମିତି ସବୁ ଦିଶୁଛି । ହେଲେ ମୁଁ ତ କୌଣସି ମାଦକ ଦ୍ରବ୍ୟ ଛୁଇଁ ନାହିଁ । ହୋଇପାରେ ମୋର ପୁଅର କିଛି ଜନ୍ମଜାତ ଯୋଗସିଦ୍ଧି ଅଛି ବା କୌଣସି ଭୂତପ୍ରେତ କ'ଣ କଲା କି ?"

ସୂତ କହୁଛନ୍ତି—"ହେ ମୁନିଗଣ ! ଆଉ କେଉଁ ମାଆ ହୋଇଥିଲେ ପୁଅ ପାଟିରେ ଏମିତି ବିଶ୍ୱବ୍ରହ୍ମାଣ୍ଡ ଦେଖି ସାଙ୍ଗେ ସାଙ୍ଗେ ତା'ର ଗୋଡ଼ଧରି ପୂଜା କରିଥାନ୍ତା । ମାତ୍ର ସେ ତ ଅନନ୍ୟ ବାତ୍ସଲ୍ୟ ମୂର୍ତ୍ତି; ତେଣୁ ଯଶୋଦା ମାତାଙ୍କୁ ସବୁ ଆବୁରକାବୁର ଦେଖାଗଲା । ମୋର ପୁଅର ଜନ୍ମଜାତ ଯୋଗସିଦ୍ଧି ଥାଇପାରେ ବୋଲି ସାମାନ୍ୟ ଶଙ୍କା ଅବଶ୍ୟ ହେଲା । ହେଲେ ପରମୁହୂର୍ତ୍ତିରେ ସେ ଭାବିନେଲେ ଯେ ଯାହାବି ହେଉ ଇଏ ଭଗବାନଙ୍କର ଲୀଳା । ତାଙ୍କର ସ୍ତୁତି କଲେ ସବୁ ଠିକ୍ ହୋଇଯିବ । ସେଇଆ ଭାବି ସେ ହାତ ଯୋଡ଼ି ସ୍ତୁତି କରିବାକୁ ଲାଗିଲେ—ଯେ ଭଗବାନଙ୍କୁ ଚିତ୍ତରେ, ମନରେ, ବାଣୀରେ ତଥା କର୍ମରେ ଭଲ କରି ଜାଣି ହୁଏନାହିଁ, ଯାହାଙ୍କ ମଧ୍ୟରେ ଏ ସମ୍ପୂର୍ଣ୍ଣ ବିଶ୍ୱବ୍ରହ୍ମାଣ୍ଡ ଅବସ୍ଥିତ ହୋଇ ରହିଛି । ଇନ୍ଦ୍ରିୟାଧିଷ୍ଠିତ ଏବଂ ବୁଦ୍ଧିର ପ୍ରେରକ ଶକ୍ତି ଦ୍ୱାରା ଯାହାଙ୍କର ପ୍ରତୀତି ଆସେ ସେହି ଅଚିନ୍ତ୍ୟ ଶକ୍ତି, ପରଂବ୍ରହ୍ମ ପରମାତ୍ମାଙ୍କୁ ମୁଁ ପ୍ରଣାମ କରୁଛି—ସେ ହିଁ ପରମବ୍ରହ୍ମ । ଏହି ସାରା ସଂସାର ଯା'ର ମାୟାରେ ବଶୀଭୂତ ହୋଇ ଚାଲିଛି । ମୁଁ ମଧ୍ୟ ଯା'ର ମାୟାମୋହିତ ହୋଇ ଅନୁଭବ କରୁଛି ଯେ ଏଇ ସୁନ୍ଦର ଶରୀର ମୋର । ଏଇ ବ୍ରଜର ରାଜା ମୋର ପତି, କୃଷ୍ଣ ମୋର ପୁତ୍ର । ମୁଁ ବ୍ରଜରାଜଙ୍କର ନିଖିଳ ସମ୍ପତ୍ତିର ଅଧିକାରିଣୀ ଧର୍ମପତ୍ନୀ । ବ୍ରଜର ଏହି ସମସ୍ତ ଗୋପୀ ଗୋପାଳ ଏବଂ ଧେନୁପଲ ସମସ୍ତେ ମୋର ଅଧୀନ । ସେଇ ବିଶ୍ୱମ୍ଭର ଭଗବାନ ମୋର ଏକମାତ୍ର ଗତି ଅଟନ୍ତି । ତାଙ୍କରି ମାୟାରେ ମୋ' ଭିତରେ ମୁଁ ମୋର, ତୁ ତୋ'ର ଏଭଳି କୁଭାବନା ଜାଗରିତ ହେଉଛି । ସେ ହିଁ ମୋତେ ଏହି ମୋହ ପାଶରୁ ମୁକ୍ତ କରନ୍ତୁ ।"

ଭଗବାନ ଯେତେବେଳେ ମାଆଙ୍କ ମୁହଁରୁ ଏଭଳି ଉଚ୍ଚ ତତ୍ତ୍ୱଜ୍ଞାନୀ ଭଳି କଥା ଶୁଣିଲେ ସେ ମଧ୍ୟ ବିବ୍ରତ ହୋଇ ଉଠିଲେ । ଭାବିଲେ ମୋର ମାଆ ଯଦି ଏଇ ସଂସାରକୁ ଅସାର ମନେକରି ସନ୍ନ୍ୟାସିନୀ ହୋଇ ସମାଧିରେ ମଗ୍ନ ହୋଇଯାଏ, ତା'ହେଲେ ସବୁକଥା ପଣ୍ଡ ହୋଇଯିବ । ମୋର ଲୀଳା ସମାପ୍ତ ହୋଇଯିବ । ମୋତେ କିଏ ଦୁଧ ପିଆଇବ ? କିଏ ବାଡ଼ି ଧରି ଡରେଇବ, ଧମକେଇବ, ସେ ଅନୁଭବ କଲେ ଯେ ତାଙ୍କର ଐଶ୍ୱର୍ଯ୍ୟ ଶକ୍ତି ହିଁ ଏସବୁର କାରଣ । ସେ ତୁରନ୍ତ ତାଙ୍କୁ ସେଠାରୁ ଚାଲିଯିବାକୁ କହିଲେ । ଆଦେଶ ମାତ୍ରକେ ସେ ସେଠାରୁ ଚାଲିଗଲେ । ସେ ତାଙ୍କର ବୈଷ୍ଣବୀମାୟାକୁ ଡାକିଲେ । ପତି, ସଖା, ପୁତ୍ର, ସ୍ୱାମୀ ଆଦି ନିତ୍ୟ ସମ୍ବନ୍ଧ ତା'ରି ହେତୁ ରହିଛି । ଆଦେଶ ଦେଲେ—"ତୁମେ ମୋର ମାତାଙ୍କ ମନରୁ କୁଆଡ଼େ ଚାଲି ଯାଇଥିଲ ? ସେଠାରେ ହିଁ ରହ ।"

ଭଗବାନଙ୍କର ଆଦେଶ ପାଇବା ମାତ୍ରକେ ପୁଣି ସ୍ନେହମୟୀ ବୈଷ୍ଣବୀମାୟା ମାତାଙ୍କ ହୃଦୟ ଅଧିକାର କଲେ । ତାଙ୍କର ପ୍ରଭାବରେ ମାତା ତୁରନ୍ତ ସବୁ କିଛି ପୂର୍ବଦୃଶ୍ୟ ଭୁଲିଗଲେ । ହାତରେ ଧରିଥିବା ବାଡ଼ିଟିକୁ ଫିଙ୍ଗିଦେଇ ଶ୍ୟାମସୁନ୍ଦରଙ୍କୁ କୋଳେଇ ନେଇ ତାଙ୍କୁ ଚୁମା ଦେଇ ଗେହ୍ଲେଇ ଗେହ୍ଲେଇ କହିବାକୁ ଲାଗିଲେ—"କାହ୍ନା ମୋର ରଜାପୁଅ । ବାକି ସବୁ ପିଲା ବଦମାସ୍ । ବଳଦେବ ବି ଦୁଷ୍ଟ । ମୋ' ପୁଅକୁ ଦୋଷ ଦେଉଛନ୍ତି । ଆମ ଘରେ କୋଉ ସର ଲବଣୀ କମ୍ ଯେ ସେ ମାଟି ଖାଇବାକୁ ଯିବ ! କହିବା ପିଲା ଖାଆନ୍ତି ! ତୁ ଗୁଡ଼ାଏ ଷିରି ଖାଇନବୁ ।" କହି କହି କାହ୍ନାକୁ କାଖେଇ ନେଲେ । ସେତେବେଳେ ସେ ସବୁ କଥା ଭୁଲି ଯାଇଥିଲେ । ଶ୍ୟାମଙ୍କୁ ଗ୍ରହରେ ଜଡ଼େଇ ନେଲା ମାତ୍ରକେ ତାଙ୍କ ଭିତରେ ବାତ୍ସଲ୍ୟ ସ୍ନେହର ଜୁଆର ଉଠିବାକୁ ଲାଗିଲା । ସେ ପୂର୍ବରୁ ଯେମିତି କୃଷ୍ଣଙ୍କୁ ତାଙ୍କର ଏତେ ବଡ଼ ପୁଅ ବୋଲି ଭାବୁଥିଲେ, ସେମିତି ଭାବିବାକୁ ଲାଗିଲେ । ବ୍ରହ୍ମାଣ୍ଡ ଦର୍ଶନ କଥାଟିକୁ ସେ ସ୍ୱପ୍ନଭଳି ଭୁଲିଗଲେ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ତିନି ବେଦ, ଉପନିଷଦ, ସାଂଖ୍ୟ, ଯୋଗ, ଭକ୍ତ ନିରନ୍ତର ଯାହାଙ୍କର ସୁଯଶ ଗାନ କରୁଛନ୍ତି । ବେଦ ମଧ୍ୟ ଯାହାଙ୍କର ଭେଦ ନପାଇ ନେତି ନେତି କହି ଚୁପ୍ ହୋଇଯାଏ । ଶେଷ ଶାରଦା ମଧ୍ୟ ଯାହାଙ୍କର ଗୁଣର ଅପାର ଐଶ୍ୱର୍ଯ୍ୟର ଏପର୍ଯ୍ୟନ୍ତ କଳନା ସୁଦ୍ଧା କରି ପାରି ନାହାନ୍ତି ।ସେହି ଅଖିଳ କୋଟି ବ୍ରହ୍ମାଣ୍ଡ-ନାୟକ ଶ୍ରୀହରିଙ୍କୁ ଯଶୋଦା ପୁଣି ମନେକରି ସ୍ନେହ ଦେଉଛନ୍ତି । ତାଙ୍କୁ ଧମକ ଦେଉଛନ୍ତି, ଚିଆରି କହୁଛନ୍ତି । ସୁଖ ଦୁଃଖର କଥା ବୁଝୁଛନ୍ତି; ଏହା କିଭଳି ଆଶ୍ଚର୍ଯ୍ୟ କଥା । ଯାହାଙ୍କର ମହିମା ଅନନ୍ତ । ଅସଂଖ୍ୟ ବ୍ରହ୍ମା, ବିଷ୍ଣୁ, ମହେଶ ଯାହାଙ୍କର ଶ୍ୱାସ ପ୍ରଶ୍ୱାସରେ ଜନ୍ମ ହୋଇ ମୁହୂର୍ତ୍ତିକେ ବିଲୀନ ହେଉଛନ୍ତି । ଯାହାଙ୍କର ନିର୍ଦ୍ଦେଶରେ ବାୟୁ ପ୍ରବାହିତ ହୋଇଥାଏ, ଚନ୍ଦ୍ର ସୂର୍ଯ୍ୟ ଆଲୋକ ପ୍ରଦାନ କରନ୍ତି, ସେହି ସର୍ବେଶ୍ୱର ଗୋପୀ ଯଶୋଦା ଆଗରେ ଭୟରେ ଥରୁଛନ୍ତି । ଏହା ମଧ୍ୟ ଭଗବାନଙ୍କର କେତେବଡ଼ ଭକ୍ତବତ୍ସଳତା । ସେ ଆପଣାର ଅନୁଗତମାନଙ୍କ ପାଖରେ ବିକ ହୋଇ ଯାଇଛନ୍ତି । ସେମାନଙ୍କୁ ସୁଖ ଦେବାକୁ ସେ ନିଜର ପରମ ଐଶ୍ୱର୍ଯ୍ୟକୁ ମଧ୍ୟ ଭୁଲି ଯାଆନ୍ତି । ଛୋଟ ବାଳକଟିଏ ହୋଇ ଯାଆନ୍ତି ।"

"ହେ ଋଷିଗଣ ! ମହାବନ ଗୋକୁଳ ପାଖରେ, ଯମୁନା କୂଳରେ, ଯେଉଁଠାରେ ମାତାଙ୍କୁ ଭଗବାନଙ୍କ ମୁଖରେ ବ୍ରହ୍ମାଣ୍ଡ ଦର୍ଶନ ହୋଇଥିଲା ଏବଂ ସେ ଯେଉଁଠାରେ ମାଟି ଖାଇଥିଲେ ତାହା ଏପର୍ଯ୍ୟନ୍ତ ବ୍ରହ୍ମାଣ୍ଡ ଘାଟ ନାମରେ ପରିଚିତ । ସେଠାକାର ମାଟି ଭାରି ମିଠା । ତୀର୍ଥଯାତ୍ରୀମାନଙ୍କୁ ସେଇ ମାଟି ପ୍ରସାଦଭାବରେ ଦିଆଯାଏ । ବୋଲ—ମାଟିଖିଆ ଗୋପାଳ କି ଜୟ !"

## ଛପ୍‌ପୟ

(୧)

ଯୌଁ କନ୍ହ ପକରେ ଶ୍ୟାମ ସମ ମାତା ଢିଙ୍ଗ ଲୟେ ।
ଡରେ ମାତୁକୁଁ ଦେଖି କମଲ ନୟନନ ଜଲ ଛାୟେ ॥
ପୂଛେ ମାତା କହୋ ଶ୍ୟାମ କୌଁ ମାଟୀ ଖାଈ ।
ବୋଲେ ନଟବର ତନକ ନ ଖାଈ ମାଟୀ ମାଈ ॥
ନହିଁ ପତଆବେ ଦେଖି ମୁଖ, ଦୈ ଦଖାଇ ଫାରୌ ବଦନ ।
ସୁତ ମୁଖମହଁ ମାତା ଲଖେ, ତୀନ ଲୋକ ଚୌଦହ ଭୁବନ ॥

(୨)

ଲଖି ମୁଖମହଁ ବ୍ରହ୍ମାଣ୍ଡ ଗୋପ ଗୋପୀଗଣ ବ୍ରଜକୁଁ ।
ନିରଖତ ପକରେଁ ଶ୍ୟାମ ଅକବକୀ ଠାଢ଼ୀ ନିଜକୁଁ ॥
ଜଗଦୀଶ୍ୱର କୀ ଶରନ ଗଈ ତାରୀ-ସୀ ଲଗୀ ।
ବ୍ରହ୍ମଜ୍ଞାନ କୀ ବାତ କରେ ମମତା ସବ ଭାଗୀ ॥
ପୁନି ସ୍ନେହମୟୀ ତୁରତ, ମାୟା ଫେରୀ ଶ୍ୟାମ ଜବ ।
ଫିର କନୁଆ କହବେ ଲଗୀ, ଭୂଲୀ ମୁଖ କୀ ବାତ ସବ ॥

●

# ଲବଣୀ ଚୋର ଲୀଳା

କାଲେନାଲ୍ପେନ ରାଜର୍ଷେ ! ରାମଃ କୃଷ୍ଣଶ୍ଚ ଗୋକୁଲେ ।
ଅଘୃଷ୍ଟଜାନୁଭିଃ ପଦ୍ଭିର୍ବିଚକ୍ରମତୁରଞ୍ଜସା ॥
ତତସ୍ତୁ ଭଗବାନ କୃଷ୍ଣୋ ବୟସ୍ୟୈର୍ବ୍ରଜ ବାଲକୈଃ ।
ସହରାମୋ ବ୍ରଜସ୍ତ୍ରୀଣାଂ ଚିକ୍ରୀଡ଼େ ଜନୟନ୍ ମୁଦମ୍ ॥

(ଶ୍ରୀ ଭା ୧୦ସ୍କ, ୮ ଅ, ୨୬, ୨୭ ଶ୍ଳୋକ)

## ଛପ୍‌ପୟ

ବୟସ୍ ଜବ କଛୁ କଛୁ ବଢ଼ୀ ନନ୍ଦଲଲକୀ ଥୋରୀ ।
ସୀଖୀ ବିଦ୍ୟା ପ୍ରଥମ ଦହୀ ମାଖନ କୀ ଚୋରୀ ॥
ସଙ୍ଗ ସଖା ସବ ଲୟେ ଖେଲତେ ଘର ପର ଜାବେଁ ।
କହୁଁ ମାଖନ ଦଧି ଧରୟୋ ସୈନ ତେଁ ତାଡ଼ ଲଗାବେଁ ॥
ଭାଭୀ କହୁ ଝାଁପେଁ ଭବନ, କହେଁ ନଇ ପହୁଳୀ ଚୁରୀ ।
କତୟୋଁ ବୋଲେ ମଧୁର ଅତି, ମୁଖ ମିଶ୍ରୀ ହୃୟମହୁଁ ଛୁରୀ ॥

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହୁଛନ୍ତି—"ହେ ରାଜର୍ଷି ! ଅଳ୍ପ ସମୟ ମଧ୍ୟରେ ରାମକୃଷ୍ଣ ଗୁରୁଣ୍ଡିବା ଛାଡ଼ି ଗୋକୁଳରେ ଧୀରେ ଧୀରେ ଚାଲିବାକୁ ଲାଗିଲେ । ତା'ପରେ ଭଗବାନ କୃଷ୍ଣ, ବଳରାମ ଏବଂ ଅନ୍ୟ ସମବୟସ୍କ ସାଥୀମାନଙ୍କ ସହିତ ଆନନ୍ଦରେ ଖେଳିବାକୁ ଲାଗିଲେ ।

ଥରେ ଯୋଉ କାମ କରି ରସାନୁଭୂତି ଆସିଲା ଆଉ ତାକୁ ବାରମ୍ବାର କରିବାକୁ ମନ ବଳିଲା, ତା' ବିନା ରହିହେଲା ନାହିଁ, ସେଇଆକୁ ବ୍ୟସନ ବୋଲି କୁହାଯାଏ । କେଉଁ କେଉଁ ବ୍ୟସନ ନିଜ ପ୍ରେରଣାରୁ ହୁଏ, କେତେକ ପର ପ୍ରେରଣାରୁ । ଅନ୍ୟକୁ ସୁଖ ଦେବାକୁ ମଧ୍ୟ କାମ କରାଯାଏ । ଭଗବାନ ତ ଆପ୍ତକାମ, ନା ତାଙ୍କର ବ୍ୟସନ ଅଛି ନା ଇଚ୍ଛା । ମାତ୍ର ସେ ଭକ୍ତଙ୍କୁ ସୁଖ ଦେବାକୁ ବ୍ୟସନଲିପ୍ତ ଭଳି ମନେ ହୁଅନ୍ତି । ବାସ୍ତବରେ ସେ ତ ନିରୀହ । ସେ ଯେବେ ଇଚ୍ଛା କରିବେ କାହାର କୌଣସି ବସ୍ତୁ ଆବଶ୍ୟକ ବା କୌଣସି ଜିନିଷର ଅଭାବ ଅଛି । ଭଗବାନ ତ ସବୁରି ଜନକ । ସେ କୌଣସି କଥା ଇଚ୍ଛା କରୁଥିବା ମନେହେଲେ ବୁଝିବା ଉଚିତ ଯେ ସେ କେବଳ ମାତ୍ର ଭକ୍ତଙ୍କୁ, ଆଶ୍ରିତମାନଙ୍କୁ ସୁଖ ଦେବାକୁ କ୍ରୀଡ଼ା କରିଥାନ୍ତି ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଏବେ ଶ୍ୟାମ ଚାରି ପାଞ୍ଚ ବର୍ଷର ହୋଇ ଗଲେଣି । ବାଳକମାନଙ୍କ ସାଙ୍ଗରେ ସ୍ୱଚ୍ଛନ୍ଦ ବିହାର କରୁଛନ୍ତି । ପହିଲେ ତାଙ୍କୁ ମା'ଆଙ୍କୋଳ ଯେମିତି ଭଲ ଲାଗୁଥିଲା ଏବେ କ୍ରୀଡ଼ା ସେତିକି ଭଲ ଲାଗୁଛି । ସାଙ୍ଗରେ ଶହଶହ ଗୋପାଳ ବାଳକ ଖେଳିବାକୁ ଆସନ୍ତି, ଗୋଠରେ, ଯମୁନା କୂଳରେ, ଦାଣ୍ଡ ଦୁଆରେ, ତୋଟାରେ ଖେଳନ୍ତି । ତାଙ୍କର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ପ୍ରତି ମୁହୂର୍ତ୍ତରେ ବଢ଼ି ବଢ଼ି ଯାଉଥିଲା । ଯେ କେହି ବି ତାଙ୍କୁ ଥରେ ଦେଖିଲା ସେ କୃତାର୍ଥ ହୋଇ ଯାଉଥିଲା । ସରଳତା ସହିତ ବାଲ୍ୟ ଚପଳତା ମଣିଙ୍କୁ କାଞ୍ଚନ ଭଳି ମନେ ହେଉଥିଲା । ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗରୁ ସୁନ୍ଦରତା ଫୁଟି ପଡ଼ୁଥିଲା । ଗୋପୀମାନେ ଦଳ ଦଳ ହୋଇ ଆସି ଏ ରୂପ

ଦେଖି ମୁଗ୍‌ଧ ହୋଇ ଯାଉଥିଲେ ଏବଂ ତାଙ୍କୁ ଅନେଇ ରହୁଥିଲେ । ସବୁବେଳେ ନାନା କାମର ଆଳ ଦେଖାଇ ଆସୁଥିଲେ ଏବଂ ନନ୍ଦପୁରରେ ଶ୍ୟାମସୁନ୍ଦରଙ୍କର ରୂପସୁଧା ପାନ କରି ଅବାକ୍, ପାଗଳୀ ଭଳି ଠିଆ ହୋଇ ଅନେଇ ରହୁଥିଲେ । ଯଶୋଦା ମାତା ଏସବୁ ଦେଖି ଆନନ୍ଦରେ ଫୁଲି ଉଠୁଥିଲେ ।”

ଖେଳ ଭୁଲି ଶ୍ୟାମ ଦଉଡ଼ି ଆସନ୍ତି । ମା’ଙ୍କର କାନ୍ଧଧରି ଭୋକ ହେଲାଣି କହି ଅଳି କରନ୍ତି ।

ମାଆ ଅତି ସ୍ନେହରେ ଚୁମା ଦେଇ କହନ୍ତି—“ଦୁଧ ପିଇବୁ, ଲଡ଼ୁ ମିଠେଇ ଖାଇବୁ ! କହ କ’ଣ ଖାଇବୁ ?”

ସେ କହନ୍ତି—“ମାଆ ! ମୋର ତ ଲହୁଣୀ ଲୋଡ଼ା ।”

ସେତିକରେ ମାଆ ଆଣି ଲହୁଣୀ ଦଅନ୍ତି । ପିଠାରେ ଲହୁଣୀ ଗୋଳେଇ ଖାଇବାକୁ ଦଅନ୍ତି । ତାଙ୍କର ଖାଇବାର ସେଇ ଢଙ୍ଗ ଭଙ୍ଗିମା ଦେଖି ଗୋପୀମାନେ ଆନନ୍ଦରେ ଭଗବାନଙ୍କୁ ଡାକି କହନ୍ତି—“ହେ ଅନ୍ତର୍ଯ୍ୟାମୀ ! କେବେ କ’ଣ ଆମ ଘରକୁ ଆସି ଶ୍ୟାମସୁନ୍ଦର ଏମିତି ଲହୁଣୀ ଖାଆନ୍ତେ ନାହିଁ ! ଅଉ ସେମାନଙ୍କର ଆଖି ଆନନ୍ଦରେ ଲୁହ ଛଳଛଳ ହୋଇଉଠେ । କେବେ ଆମକୁ ଏମିତି ମହୁବୋଲା ମିଠା ମିଠା କଥା କହିବେ । କେତେବେଳେ ଆମକୁ ସୁଖଦ ସ୍ପର୍ଶ ଦେଇ କୃତ୍ୟ କୃତ୍ୟ କରିବେ । ଭଗବାନଙ୍କର ଅବତାର ତ ଭକ୍ତମାନଙ୍କୁ ସୁଖୀ କରିବାକୁ ହୋଇଥାଏ । ଦଳଦଳ ଗୋପୀ ନନ୍ଦ ଭବନକୁ ଆସନ୍ତି । ଯଶୋଦା ମାତା ସମସ୍ତଙ୍କର ଆଦର ସତ୍କାର କରନ୍ତି । ସେତେବେଳେ ଶ୍ୟାମସୁନ୍ଦର ମିଛ ରାଗକରି, ମିଛ କାନ୍ଦଣା କାନ୍ଦି, ଗୋଡ଼ କଚାଡ଼ି; ମାଆଙ୍କର କାନ ଭିଡ଼ି ଏମିତି ଅଳି ଅଝଟ କରନ୍ତି ଯେ ଗୋପୀମାନେ ଆନନ୍ଦ ବିଭୋର ହୋଇ ଉଠନ୍ତି । ଦଧି ସାମାନ୍ୟ ଟିକିଏ ଖଟା ହୋଇଥିଲେ ତାହା ଫିଙ୍ଗି ଦଅନ୍ତି, ଲୁଚି ବସନ୍ତି । ମାଆଙ୍କର ବେଣୀ ଧରି ଝୁଲି ପଡ଼ନ୍ତି । ସେ ସବୁ ଖେଳ ଦେଖି ଗୋପୀମାନଙ୍କର ଚିତ୍ତ ଆନନ୍ଦରେ କୁରୁଳି ଉଠେ । ସେମାନେ ନିଜେ ନିଜକୁ ଭୁଲି ଯିବାକୁ ଇଚ୍ଛା କରନ୍ତି । କୃଷ୍ଣ କ’ଣ ଆମ ପାଖରେ ଏମିତି ଅଳି ଅଝଟ କରିବେ ନାହିଁ ! କେବେହେଲେ ଆମକୁ ଆପଣାର ମଣିବେ ନାହିଁ ! ଏଣେ ଗୋପୀମାନଙ୍କର ଉତ୍କଣ୍ଠା ତେଣେ ଭଗବାନଙ୍କର ଭକ୍ତ ବତ୍ସଳତା ବଢ଼ି ବଢ଼ି ଯାଉଥାଏ । ଏ ଦୁଇ କଥାର ଯେତେବେଳେ ବନ୍ଧ ଭାଙ୍ଗିଲା, ସେବେଳଠାରୁ ଲହୁଣୀ ଚୋରି ଲୀଳା ଆରମ୍ଭ ହେଲା ।

ପ୍ରେମର ସମ୍ବନ୍ଧ ଉଭୟ ପକ୍ଷରୁ ହୋଇଥାଏ । ଆମେ ଯାହାକୁ ଭଲପାଉ, ସେ ଆମକୁ ଭଲ ପାଇବ ନାହିଁ ଏକଥା ଅସମ୍ଭବ । ଜଣା ଅଜଣାରେ ପ୍ରେମ ଯେମିତି ବି କର, ଲୁଚି ରହେନାହିଁ । କସ୍ତୁରୀ ଗନ୍ଧ ଓ ପ୍ରେମ ସମ୍ବନ୍ଧକୁ ଯେତେ ଲୁଚେଇ

ରଖିଲେ ବି ତାହା ଆପେ ଆପେ ପ୍ରକାଶିତ ହୋଇଯାଏ । ମନ ତ ଗୋଟିଏ । ଆମେ ତାଙ୍କୁ ହୃଦୟ ଦେଇ ଇଚ୍ଛା କଲେ ସେ ନ ଗ୍ରହି କେମିତି ବା ରହି ପାରିବ ? ଚୈତନ୍ୟ ପ୍ରାଣୀ ମଧ୍ୟରେ ହୃଦୟ ନାମକ ଗୋଟାଏ କୋମଳ ବସ୍ତୁ ରହିଛି, ପ୍ରେମ ତ ପାଷାଣ ଆଦି ଜଡ଼ ବସ୍ତୁକୁ ମଧ୍ୟ ତରଳାଇ ଦେଇପାରିବ । ଗୋପୀମାନେ ଭାବୁଥିଲେ, କୃଷ୍ଣ କେତେ ମୋହକ ଲୁହନ୍ତି, କେତେ ସରଳ, କେତେ ଚଞ୍ଚଳ; ତାଙ୍କର ପ୍ରତ୍ୟେକ କଥାରେ ଅନ୍ୟର ମନକୁ ଟାଣିନେବାର ଶକ୍ତି ଅଛି । ଆମେ ତାଙ୍କୁ ହୃଦୟ ଦେଇ ଭଲପାଉଁ; କିନ୍ତୁ ସେ ଆମକୁ ଆଖି ଉଠେଇ ଦେଖେ ନାହିଁ କି ଆମକୁ ଜାଣେ ନାହିଁ । ସେଇଠି ମାଆ ପାଖରେ ଥିଲାବେଳେ ଆମ ମୁହଁରୁ କଥା ପଦେ ବାହାରେ ନାହିଁ, ଗୁରୁରେ ଉତ୍ତରଧରି ଗେଲ କରି ହୁଏନାହିଁ । ସେ ବା ଆମ ଘରକୁ କାହିଁକି ଆସିବ ? ଆମେ କାଙ୍ଗାଳୁଣୀ, ସେ ରଜା ପୁଅ । ଏମାନଙ୍କର କି ଭାବ ? ଭୋଜନ, ଭଜନ ଆଉ ପ୍ରେମ ଏକାନ୍ତରେ ସୁଖକର । କୃଷ୍ଣ ଏକାନ୍ତରେ କୋଉଠି ମିଳିବ ! ଯେଉଁପରି ବ୍ରଜାଙ୍ଗନାମାନେ ଐକାନ୍ତିକ ମିଳନ ଲାଗି ବ୍ୟାକୁଳ ହେଉଥିଲେ ସେହିପରି ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କ ପାଇଁ ବ୍ୟାକୁଳ ହେଉଥିଲେ । ମାଆ ତାଙ୍କୁ ଏଣେତେଣେ ଛାଡ଼ୁ ନ ଥିଲେ । ସେ ଖେଳିବାକୁ ଯାଉଥିଲେ ମାତ୍ର ଗୋପୀମାନଙ୍କ ଘରକୁ ଯାଉ ନ ଥିଲେ ।

ମାଆ ଗ୍ରହୁଁଥିଲେ, ପୁଅ ମୋର ବେଶୀ ଦୁଧ ପିଉ, ଲହୁଣୀ କମ୍ ଖାଉ । ଅଧିକ ଲହୁଣୀ ଖାଇଲେ ଭୋକ ମରିଯାଏ । ଦୁଧ ପିଇଲେ ବଳହୁଏ । ହେଲେ ଲହୁଣୀ ଶ୍ୟାମର ଅଧିକ ପ୍ରିୟ । ଆଉ ମାଆ ଦୁଧ ଅଧିକ ଖାଉ ବୋଲି ଗ୍ରହୁଁଥିଲେ । ଏପରି ଭାବରେ ଦୁହିଙ୍କ ଭିତରେ ଏଇ ବିଷୟଟିକୁ ନେଇ ମତଭେଦ ଥିଲା । ଦୁଧ ପିଇବା ଡରରେ ଶ୍ୟାମସୁନ୍ଦର ସକାଳୁ ସକାଳୁ ଶୋଇ ପଡ଼ନ୍ତି । ସେତେବେଳେ ମାଆ କୋଳେଇ ନେଇ ଦୁଧରେ ମିଶ୍ରି ପକେଇ ପିଆଇ ଦିଅନ୍ତି । ନିଦରେ ଥିଲେ ତ ପିଇ ନିଅନ୍ତି, ଚେଇଁ ଥିଲେ ବଡ଼ା ଆଡ଼େଇ ଦିଅନ୍ତି ବସନ୍ତି । ମାଆ ଅନେକ ପ୍ରକାର ଗପ କହି କହି ଶ୍ୟାମସୁନ୍ଦରଙ୍କୁ ଦୁଧ ପିଇବାକୁ ବଳେଇ ବସନ୍ତି । କହନ୍ତି—"କାହ୍ନୁ ! ଦେଖ୍ ବଳିଆର ବାଳ କେତେ ଲମ୍ବା ଆଉ ତୋର ଛୋଟ ଛୋଟ । ତୁ ଦୁଧ ପିଉନୁ ବୋଲି ଏତେ ଛୋଟ ଛୋଟ । ତୁ ଯଦି ଗ୍ଭରିଥର ବଢ଼ାଏ ଲେଖେଁ କ୍ଷୀର ଖାଇନବୁ ନା, ତା'ହେଲେ ତୋର ବାଳ ସେମିତି ବଡ଼ ବଡ଼ ହେଇଯିବ । ସେଇ ଲୋଭରେ ସେ ଦୁଧ ପିଇ ନିଅନ୍ତି ଆଉ ବାଳକୁ ଦେଖି ଦେଖି ମାଆକୁ ପଚାରନ୍ତି—"ମାଆ ମୋ' ବାଳ ବଢ଼ିଲା ନା ?"

ମାଆ ସେତେବେଳେ ବୁଝେଇ କହନ୍ତି—"କାହ୍ନୁରେ ! ତୁ ପାଗଳଟିଏ । ଦିନକରେ କ'ଣ ବଢ଼ିବ ! କିଛିଦିନ ଆହୁରି ପିଇ ଦେଖ ।"

ଦ' ଗ୍ଭରି ଦିନ ପିଇଲା ପରେ ବି ବାଳ ଯେତେବେଳେ ବଢ଼େନାହିଁ, ସେ ଦୁଧ ପିଇବା ଛାଡ଼ି ଦିଅନ୍ତି । ତେଣିକି ମାଆ କହନ୍ତି—"ତୁ ଦେଖିଲୁ, ଆଉ ପିଲାମାନେ କେତେ

ସୁନ୍ଦର । ଆଉ ତୁ କେମିତି କଳା । ଧଳା ଗାଈର କ୍ଷୀର ପିଇଲେ ତୁ ବି ସେମିତି ଗୋରା ହବୁ । ଦ' ଘୃରଦନ ଏଇ ଗୋରା ହବା ଲୋଭରେ ଦୁଧ ଖାଆନ୍ତି । ଆଉ ଦେହର ରଙ୍ଗ ବଦଳୁ ନଥିବା ଦେଖିଲେ ପୁଣି ଦୁଧ ଛାଡ଼ି ଲହୁଣୀ ପାଇଁ ଅଡ଼ି ବସନ୍ତି । ମା' ସକାଳବେଳା ଟଟକା ଲହୁଣୀ ଖାଇବାକୁ ଦଅନ୍ତି, କିନ୍ତୁ ବାରମ୍ବାର ମାଗି ବସିଲେ ବୁଝେଇବସନ୍ତି— ସବୁବେଳେ ଲହୁଣୀ ଖାଇବା ଭଲ ନୁହେଁ ।"

ଯେଉଁ କଥାକୁ ମନା କରିବ ସେଇଆକୁ ମନ ବଳିବ, ଇଏ ପ୍ରକୃତିର ନିୟମ । ଅଭାବବେଳେ ବସ୍ତୁପ୍ରତି ଆକର୍ଷଣ ଅଧିକ ହୁଏ । ଦିନେ ଶ୍ୟାମ ସକାଳୁ ସକାଳୁ ଉଠିଲା ମାତ୍ରକେ ଲହୁଣୀ ପାଇଁ ଜିଦ୍ ଧରି ବସିଲେ । ମାଆ ଥରେ ଦେଲେ । ତାକୁ ସେ ଖାଇ ନେଲେ । ପୁଣି ଥରେ ମାଗିଲେ । ଆଉ ଥରେ ଦେଲେ । ଆଉ ଥରେ ମାଗିଲାରୁ କହିଲେ- ଅଧିକ ଲହୁଣୀ ଖାଇଲେ ପେଟରେ ପଙ୍କ ବସିଯାଏ, ବୁଝିଲୁ ?"

ତା'ପରେ ସେ ଆଉ କ'ଣ କରନ୍ତେ । ମନ ମାରି ବସିଲେ । ମା' ଶ୍ୟାମଙ୍କୁ ଟଟକା ଦୁଧ ମିଶ୍ରି ପକେଇ ଦେଲେ । ସେ ତାହା ଉଠେଇ ଫିଙ୍ଗିଦେଲେ । କହିଲେ—"ଯା' ମୁଁ ଦୁଧ ଖାଇବି ନାହିଁ ।"

ମାଆ ତାଙ୍କୁ ଛାତିରେ ଭିଡ଼ି ଧରି ଗେଲ କରି କହିଲେ—"ଏମିତି ଦୁଧକୁ ଫିଙ୍ଗନ୍ତି ନାହିଁ । ଦୁଧ ମାଟିରେ ପଡ଼ିବା ଭାରି ଅମଙ୍ଗଳ କଥା । ଏମିତି ଦୁଧ ପକେଇଲେ ତୋ' ଭାଇଟି ତୋଠାରୁ ବଡ଼ ହେବ ଆଉ ତୋତେ ମାରିବ ।"

ଏଇଆ ଶୁଣି ଶ୍ୟାମସୁନ୍ଦର ଚିଡ଼ିଯାଇ କହନ୍ତି—"ହଉପଛେ ବଡ଼, ମୁଁ ଦୁଧ କଦାପି ପିଇବି ନାହିଁ । ମାଆ କେତେଭଳି ବୁଝେଇ ଶୁଝେଇ କ୍ଷୀର, ଖିରି ଖୁଆନ୍ତି । ସେ ଦୁଧ କୋରୁଅ ପାଇଁ ଅଳି କରନ୍ତି । ବୁଝିଲୁ ପୁଅ ! ତୁ କୋରୁଅ ଖାଇବୁ ଯଦି, ତୋ' ବାହାଘର-ବେଳକୁ ଝଡ଼ ତୋଫାନ, ବର୍ଷା ହେବ ।"

ଏଇଆ ଶୁଣି ଶ୍ୟାମ ରାଗ କରନ୍ତି । ମାଆ କ୍ଷୀର କୋରୁଅ ବି ଦେଉନି, ପେଟପୂରା ଲହୁଣୀ ବି ଦେଉନି । ଠିକ୍ ଅଛି, ମୁଁ ମାଆକୁ ଲୁଚେଇ ଖାଇବି ।

ଦିନେ ମାଆ ଦହି ମନ୍ଥି ଲହୁଣୀତକ ଗୋଟାଏ ବଢ଼ାରେ ରଖିଦେଇ କୋଉ କାମରେ ବାହାରକୁ ଗଲେ । ଶ୍ୟାମ ତ ଓର ଉଣ୍ଡି ବସିଥିଲେ । ଆଜି ସେ ଚେଇଁ ଥିଲେ ବି ଆଖି ବୁଜି ବିଛଣାରେ ପଡ଼ି ରହିଥିଲେ । ମାଆ ଭାବୁଥିଲେ—"ଠିକ୍ ହେଲା ଏ ଉତ୍ପାତିଆ ଆଜି ଏ ଯାଏଁ ଶୋଇଛି । ନ ହେଲେ ମୋତେ କାମ କରେଇ ଦିଅନ୍ତା ନାହିଁ । ସେ ବଢ଼ାଟି ରଖିଦେଇ ଗଲାମାତ୍ରକେ ଶ୍ୟାମ ପାଦ ଚିପି ଚିପି ଉଠିଲେ । ବଢ଼ାଟି ତ ଭଲେ ଥୁଆ ହୋଇଥିଲା, ମାଇଲେ ଗେଫାଏ । ଶ୍ରୀକୃଷ୍ଣଙ୍କୁ ଆଶ୍ଚର୍ଯ୍ୟ ଲାଗିଲା, ଆଜି ଲହୁଣୀଟି କେଡ଼େ ମିଠା । ମୁଁ ତ ଏତେ ମିଠା ଲହୁଣୀ ଆଗରୁ କେବେହେଲେ ଖାଇ ନ ଥିଲି । ସେତେବେଳେ

ଏଇ କଥାଟି ତାଙ୍କ ମନରେ ଘର କରିନେଲା, ଶ୍ୟେରେଇ ଖାଇଲେ ଲହୁଣୀ ଲାଗେ ମିଠା। ଆଉ ସେପାଏ ମାରିବାକୁ ବସିଛନ୍ତି ମାଆ ଅସି ହାତର। ମାଆ ଘର ଭିତରେ ଝଡ଼ ଝାଡ଼ ଶବ୍ଦ ଶୁଣି ମନେକଲେ ବିଲେଇ ପଶିଛି, ହେଲେ ଘର ଭିତରେ ତ କଳାକାହ୍ନୁ, ଲହୁଣୀ ଭୋଗ ଲଗାଉଛି।...ମାଆ ବାହାରୁ ଥାଇ ଡାକିଲେ—'କିଏ !' ଚେତିକି ଲହଣୀ ଶ୍ୟେରଙ୍କ ଅକଲ ଗୁଡ଼ୁମ୍। ଓଠ ବାଗିଲେ। ଶାରଦା ଦେଖିଲେ, କଥାଟି ତ ଗୋଳମାଳିଆ ଧଇଲଣି। ଏଣିକି ମୋ' ସ୍ୱାମୀଙ୍କ ଉପରେ ମାଡ଼ ହେବ। ଅଉ ଏହା ଭାବି ସେ ଲୁଚି ଲୁଚି ଯାଇ ଭଗବାନଙ୍କ କଣ୍ଠରେ ବିରାଜିତ ହେଲେ। ଭଗବାନ ତୁରନ୍ତ କହିଲେ—କେହି ନୁହେଁ ମାଆ, ମୁଁ ଅଛି।"

ମାଆ ବୁଝିଲେ ସେ କ'ଣ ଖୋଜୁଛି। ପଚାରିଲେ—'କିଏ, କାହ୍ନା ! ଆରେ କ'ଣ ଖଟର ଖଟର କରୁଛୁ ଭିତରେ। ଲହୁଣୀ ବଢ଼ାରେ ହାତ ପୂରେଇଛୁ ନା କ'ଣ ?"

କୃଷ୍ଣ ମୁହଁ ଶୁଖେଇ କହିଲେ—"ନା ! ତୋତେ ମୋର ସୁଖ ଦୁଃଖର କୋଉ ଚିନ୍ତା ଅଛି ? ମୋ' ହାତରେ ଏ ପଦ୍ମରାଗ ମଣିର କଙ୍କଣ ପିନ୍ଧେଇ ଦେଇଛୁ ଯେ ହାତ ଗରମ ହୋଇ ଯାଉଛି। ଏତେ ଗରମ ଯେ ତାକୁ ଥଣ୍ଡା ଲହୁଣୀ ବଢ଼ାରେ ପୂରେଇ ଥଣ୍ଡା କରୁଛି।"

ମାଆ କହିଲେ—"ଆଚ୍ଛା ! ତେବେ ତୋ' ଗାଲରେ ଏ ଲହୁଣୀ କେମିତି ଲାଗିଛି ?"

ଶ୍ୟାମ କହିଲେ—"ମୁଁ ଲହୁଣୀରେ ହାତ ବୁଡ଼େଇ ରଖିଥିଲି। ଅଳକ୍ଷରେ ମୋ' ହାତ ବାଳ ଲହୁଣୀ ଲାଗିଛି। ସେତେବେଳେ ମୋର ଗାଲ କୁଣ୍ଡେଇ ହେଲା। ଆଉ ମୁଁ କୁଣ୍ଡେଇଲାବେଳେ ଲାଗି ଯାଇଛି। ମାଆ ହୃଦୟରେ ବ ଭାବ ନ ଥିଲେ ଯେ ପୁଅ ମୋର ଶ୍ୟେର କରିବ। ସେ ଶ୍ୟାମ କଥା ମାନିନେଲେ। ସେଇଠି କଥା ତୁଟିଲା। ହେଲେ କୃଷ୍ଣଙ୍କ ପାଟିରେ ତ ଶ୍ୟେରେଇ ଖାଇଲା ଲହୁଣୀ ଲାଗି ସାରିଥିଲା। ଶ୍ୟେର କରି ଖାଇଲା ଲହୁଣୀରେ ଯୋଉ ସ୍ୱାଦ ଅଛି, ମା' ଦେଲା ଲହୁଣୀରେ ସେ ସ୍ୱାଦ କୁଆଡ଼ୁ ଆସିବ ?"

ଦିନେ ମାଆ କୌଣସି କାମପାଇଁ ଆଣିବାକୁ ପଡ଼ୋଶୀ ଘରକୁ କୃଷ୍ଣଙ୍କୁ ପଠେଇଲେ। ଯା' ଘରକୁ ଶ୍ରୀକୃଷ୍ଣ ଗଲେ ସେ ତାଙ୍କର ମାଉସୀ ହେବ। ସେତିକିବେଳେ ମାଉସୀ ଦହି ମନ୍ଥିସାରି କୋଉ କାମରେ ବାହାରକୁ ଯାଇଥିଲା। ମାଉସୀ ଘରେ ତ ସେମିତି କିଛି କଟକଣା ନାହିଁ। ଝରକା ଖୋଲି ଶ୍ୟାମ ଘର ଭିତରେ ପଶିଲେ। ସେ ଦେଖିଲେ ମନ୍ଥିଲା ହାଣ୍ଡିରେ ବୋଳ ହୋଇ ଲହୁଣୀ ରହିଛି। ପାଖରେ ଥାଳିଟିଏରେ ସାମାନ୍ୟ ପାଣି ଉପରେ ବଡ଼ ମେଞ୍ଚାଏ ଲହୁଣୀ ଭାସୁଛି। ଯାର ଯୋଉ କଥାକୁ ମନ ସେକଥା ଏକାନ୍ତରେ ମିଳିଗଲେ ଆଉ କ'ଣ ମନ ସ୍ଥିର ହୋଇ ରହିବ ? ତାହାର ଉପଭୋଗ କରିବାକୁ ଚିତ୍ତ ଚଞ୍ଚଳ ହୋଇ

ଉଠିବ । ଶ୍ରୀକୃଷ୍ଣ ଦେଖିଲେ ସଜ ତଟକା ଲହୁଣୀ ଅଛି । ଏଣେତେଣେ ଚାହିଁଲେ । ଘରେ କେହି କେଣେ ବି ନ ଥିଲେ । ସେ ଲହୁଣୀ ମେଞ୍ଚାଟି ଉଠାଇନେଇ ଖାଇଦେଲେ । ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ; ଘର ଲହୁଣୀଠାରୁ ଏ ଲହୁଣୀ କେଡ଼େ ମିଠା । ତା'ପରେ ତାଙ୍କର ଦୃଢ଼ ଧାରଣା ହୋଇଗଲା ଯେ, ଏବେ ଦେଇ ଲହୁଣୀଠାରୁ ଚୋରେଇ ଖାଇଲା ଲହୁଣୀ ବେଶୀ ମିଠା । ଲହୁଣୀ ପାଟିରେ ପାଟିଏ ଥିଲା, ସେତକବେଳେ ଗୋପୀ ଆସି ପହଞ୍ଚିଲା । ଲହୁଣୀ ଖିଆ ଶ୍ୟାମସୁନ୍ଦରଙ୍କୁ ଯେ ଦୂରରୁ ଦେଖିଦେଇ ସେ କୃତ୍ୟକୃତ୍ୟ ହୋଇଗଲା । ତା'ର ମନୋବାଞ୍ଛା ଥିଲା ଏତେ ଦିନକେ ପୂରଣ ହେଲା । କାଳେ ମୁଁ ଭିତରକୁ ଗଲେ ଶ୍ୟାମସୁନ୍ଦର ସଙ୍କୋଚ କରିବେ; ତେଣୁ ସେ ବାହାରେ ରହିଗଲା । କେତେ ଦିନର ସେ ଏଇ କଥା ମନାସି କରି ରହିଥିଲା ଆଜି ଏତେ ଦିନକେ ଅନ୍ତର୍ଯ୍ୟାମୀ ପ୍ରଭୁ ତା'ର ଅଭିଳାଷ ପୂରଣ କରିଛନ୍ତି । ଚୋରର ମନ ଖୁବ ଟାଣ । ତେଣୁ ସିନା ସେ ସଭିଏଁ ଶୋଇଲାବେଳେ ଘରେ ପଶେ ; ହେଲେ ତା' ପାଦ ଖୁବ ଦୁର୍ବଳ । ଟିକିଏ ଧଡ଼କଗଲେ ଟଳମଳେଇ ଯାଏ । ମାଉସୀ ଆସୁଥିବା ଶ୍ୟାମସୁନ୍ଦର ବି କଣେଇ ଚାହେଁଇ ଦେଖିନେଲେ । ଆଉ ବାଡ଼ି ଉଠେଇ 'ଖଗ୍ ଖଗ୍' ପାଟିକରି ଜୋରରେ ଦଉଡ଼ିବାକୁ ଲାଗିଲେ । ବାଡ଼ି ମାରି ମାଟି ହାଣ୍ଡିଟିଏ ବି ଭାଙ୍ଗିଦେଲେ । ଏହା ଦେଖି ଗୋପୀ ହସି ହସି ଗଡ଼ିଗଲା ।

ଘର ଭିତରକୁ ଆସି ପଚାରିଲା—"କାହ୍ନା ! କଥା କ'ଣ ?"

ସେ ଖୁବ ସରଳ ପୁଅ ପରି କହିଲେ—"ଏଇନେ ଏତେବଡ଼ ବିଲେଇଟିଏ ଆସିଥିଲା । ତୁ' ତ ଘର କବାଟ ମେଲାକରି କୁଆଡ଼େ ନା କୁଆଡ଼େ ଯାଉଛୁ । ସେ ଚୋର ଲହୁଣୀତକ ନେଇ ପଳେଇଲା । ମୁଁ ଛାଟ ଉଠେଇ ତା' ପଛରେ ଦଉଡ଼ୁଥିଲି । ହେଲେ, ସେ ଚଟାପଟ ଭାଡ଼ି ଉପରକୁ ଚଢ଼ିଯାଇ ଛପର ବାଟେ ଚାଲିଗଲା ।"

ହସି ହସି ଗୋପୀ ପଚାରିଲା—"ସିଏ ବିଲେଇ ଥିଲା ନା ବିଲ୍ଲା !"

ଶ୍ୟାମସୁନ୍ଦର ବି ଚଟାପଟ କହିଦେଲେ—"ମୁଁ ପିଲା ଲୋକ, ବିଲେଇ ବା ବିଲ୍ଲା ଚିହ୍ନିବି କେମିତି ? ମୁଁ ସବୁକୁ ବିଲେଇ କହେଁ ।"

ଗୋପୀ ପଚାରିଲା—"ଆଚ୍ଛା ସେ ବିଲ୍ଲାର କେଇଟା ଗୋଡ଼, ଦୁଇ ନା ଚାରି ?"

ହସି ହସି ଶ୍ୟାମସୁନ୍ଦର କହିଲେ—"ମାଉସୀ ! ମୁଁ କ'ଣ ପାଦ ଗଣିଛି । ଲାଗୁଛି ତା'ର ଦୁଇଟି ଗୋଡ଼, ଦୁଇଟି ହାତ ।"

ଗୋପୀ କହିଲା—"ଛାଡ଼୍ ସେ ବିଲେଇ କଥା, ତୁ ତୋ'ର ଲହୁଣୀ ଖାଇ ନେ ।"

ମୁହଁ ବଙ୍କେଇ ଶ୍ୟାମସୁନ୍ଦର କହିଲେ—"ମାଉସୀ ! ମୋତେ ତ ଲହୁଣୀ ଗନ୍ଧ ବି ଭଲ ଲାଗେନାହିଁ । ମା' ଆଗରେ ମୋର ସବୁଦିନ ଏଇ କଥା ଲାଗି ଖିଟ୍‌ଖିଟ୍ । ସେ କହେ

ଲହୁଣୀ ଖା’ ; କିନ୍ତୁ ମୋତେ ତ ଲହୁଣୀ ଭଲ ଲାଗେନାହିଁ । ମା’ ତମକୁ ମୋ’ ହାତରେ ଡକେଇ ପଠେଇଛନ୍ତି । କହି ସେ ସେଠାରୁ ତୁରନ୍ତ ଚାଲିଗଲେ । ଗୋପୀର ଆନନ୍ଦର-ସୀମା ରହିଲା ନାହିଁ ।”

ତେଣିକି ଶ୍ୟାମସୁନ୍ଦର ସ୍ଥିର କଲେ ଯେ ବ୍ରଜର ସବୁ ଗୋପୀଙ୍କ ଘର ଲହୁଣୀ ଚୋରି କରାଯାଉ । ଚୋରି କଲା ଲହୁଣୀ ଖିଆଯାଉ । ଏକୁଟିଆ ଖାଇଲେ ସୁଆଦ ମିଳେନାହିଁ; ତେଣୁ ଗୋଟାଏ ସମିତି ଗଢ଼ାଯାଉ । ସମିତିରେ ମିଳିମିଶି କାମ କଲେ ସବୁକଥା ଠିକ୍ ଠିକ୍ ହୋଇଯାଏ । ଏହା ଭାବି ସେ ଯମୁନା କୂଳରେ ଗୋଟାଏ ଗୁପ୍ତ ସଭା ଡାକିଲେ । ବଳଦେବଙ୍କୁ ସେ ସଭାକୁ ଡାକିଲେ ନାହିଁ । ସଭା ଆଗ ଶ୍ୟାମସୁନ୍ଦର ମୁଣ୍ଡର ବଡ଼ ପାଗଟି ଖୋଲିଲେ । ସେ ପାଗ ଭିତରେ ପତର ଠୋଙ୍ଗାରେ ଲହୁଣୀ ଲୁଚେଇ ଆଣିଥିଲେ । ଶ୍ୟାମସୁନ୍ଦରଙ୍କୁ କେହି ସନ୍ଦେହ କରିବ ନାହିଁ ବୋଲି ପାଗ ଭିତରେ ପୁରେଇ ଆଣିଥିଲେ । ସେଠାରେ ସମିତିର ଯେତେ ସଭ୍ୟ ଥିଲେ ସମସ୍ତଙ୍କୁ ମେଞ୍ଚାଏ ମେଞ୍ଚାଏ ଦେଇ କହିଲେ ‘ଖାଇନିଅ ।’

ସମସ୍ତେ ଲହୁଣୀ ଖାଇନେଲେ । ତା’ପରେ ଶ୍ରୀକୃଷ୍ଣ ପଚାରିଲେ—“ଧର୍ମଙ୍କୁ ସାକ୍ଷୀ ରଖି କହ, ଏମିତି ଲହୁଣୀ ଆଉ ଆଗରୁ କେବେ ଖାଇଛ ?”

ସମସ୍ତେ ଏକା ସାଙ୍ଗରେ କହିଲେ—“ନା, ଆମେ ଆଜି ଖାଇଲୁଁ । ଏତେ ସୁଆଦିଆ କେମିତି ହେଲା ?”

ଶ୍ରୀକୃଷ୍ଣ କହିଲେ—“ଆରେ ଇଏ ଏମିତି ସେମିତି ଲହୁଣୀ ନୁହେଁ । ଚୋରେଇ ଆଣିଲା ଲହୁଣୀ । ଚୋରି ଲହୁଣୀରେ ଯେତେ ସୁଆଦ ସେମିତି ଆଉ କୋଉଥିରେ ନାହିଁ । ଯଦି ତମେମାନେ ମୋ’ କଥା ଅନୁସାରେ କାମ କରିବ, ମୋ’ କଥା ମାନିବ ତ ତମକୁ ସବୁଦିନ ଏଭଳି ସୁଆଦିଆ ଲହୁଣୀ ପେଟପୁରା ଖାଇବାକୁ ମିଳିବ ।”

ସମସ୍ତେ ସମସ୍ୱରରେ କହିଲେ—“ତୁ ଯାହା କହିବୁ ଆମେ ସେଇଆ କରିବୁଁ । ତୁ ଆମକୁ ଏମିତି ଲହୁଣୀ ସବୁଦିନ ଖୁଆଇବୁ । ଏ ବିଦ୍ୟା ତୁ କୋଉଠୁ ଶିଖିଲୁ ।”

ଶ୍ରୀକୃଷ୍ଣ କହିଲେ—“ଆରେ ମୁଁ ଏ ସବୁ ମାଆ ପେଟରୁ ଶିଖି ଆସିଛି । ତମେମାନେ ଏସବୁ କଥା କାହାକୁ ହେଲେ କହିବ ନାହିଁ । ମୁଁ ଯେମିତି କହିବି ସେମିତି କରିବ । ତମମାନଙ୍କ ଭିତରୁ କାହା ଘରକୁ ଚୋରେଇବାକୁ ଗଲେ ବି କହିବ ନାହିଁ । ଆମେ ଯଦି ଧରାପଡ଼ି ଯାଉ ତା’ହେଲେ ଘରବାଲାଙ୍କ ପଟିଆ ନ ହୋଇ ପିଲାଙ୍କ ପଟୁ କଥା କହିବ ।”

ସମସ୍ତେ କହିଲେ—“ହଁ ତୁ ଯାହା କହିବୁ ଆମେ ସେଇଆ କରିବୁଁ । ଯମେ ତୋତେ ଆମର ନେତା ମାନିନେଲୁଁ । ଆମେମାନେ ସମସ୍ତେ ଘର ଗୁମର ଫିଟେଇ କହିବୁଁ । ଚୋରି ପାଇଁ ଅନେକ ଭେଦ ଗୁମର ଜାଣିବା ଦରକାର ।

ସାଙ୍ଗମାନେ କହିଲେ—"ଆରେ ଭାଇ ! ଧରା ପଡ଼ିଲେ କ'ଣ ହେବ ?"

ଭଗବାନ କହିଲେ—"ଧରା କେମିତି ପଡ଼ିବ ? ଧରା ଯେତେବେଳେ ପଡ଼ିବ ସେତେବେଳେ ମୁଁ ତମ ସାଙ୍ଗରେ ନ ଥିବି । ମୁଁ ଯେତେବେଳ ପର୍ଯ୍ୟନ୍ତ ତମ ସାଙ୍ଗରେ ଅଛି ସେ ଯାଏଁ ତମର ଚିନ୍ତା ନାହିଁ । ମୁଁ ସବୁକଥା ସମ୍ଭାଳି ନେବି । ମୋ' ଉପରେ ବିଶ୍ୱାସ ରଖ ।"

ସମସ୍ତେ କହିଲେ—"ତୋ' ଉପରେ ଆମର ପୂରା ବିଶ୍ୱାସ ଅଛି । ଭଲମନ୍ଦ, କଳା, ଧଳା ସବୁ ତୋର । ତୁ ଯାହା କହିବୁ ଆମେ ସେଇଆ କରିବୁ । ତୋ'ର ହଁରେ ହଁ ଭରିବା କାମ ଆମର ।"

ସୂତ କହୁଛନ୍ତି—"ହେ ମୁନିଗଣ ! ଏଭଳି ଭାବରେ ଲବଣୀ ଗ୍ରେର ସମିତି ଗଢ଼ା ହୋଇଗଲା । ସମିତିର ସର୍ବସମ୍ମତିକ୍ରମେ ସଭାପତି ହୋଇ ଗଲେ ଶ୍ୟାମସୁନ୍ଦର । ସମସ୍ତେ ଶ୍ୟାମସୁନ୍ଦରଙ୍କୁ ପୂର୍ଣ୍ଣ ବିଶ୍ୱାସ କରୁଛନ୍ତି ବୋଲି କହିଲେ ଆଉ ତାଙ୍କୁ ସବୁ ଅଧିକାର ଦେଲେ । ତା'ପରେ କିପରି ଭାବରେ ଲହୁଣୀ, କ୍ଷୀର, ଦହି, ଦୁଧ ଗ୍ରେର କରାଯିବ ମୁଁ ସେସବୁ ଏହାପରେ କହିବି ।"

## ଛପ୍ପୟ

ଗ୍ରେରୀକେ ସବ ସାଜ ସଜେ ସଙ୍ଗୀ ଶିଶୁ କୀହ୍ନେ ।
ଭେଦ ଲଗାବେଁ କଛୁ କଛୁ, ଇତ ଉତ କର ଦୀହ୍ନେ ॥
କଛୁ ବହାନେ କରେ ସରଳତା ମୁଖପେ ଲାବେଁ ।
ଇତ ଉତ ବାତ ବନାଇ ଶ୍ୟାମ ଘର ମାହିଁ ଘୁସାବେଁ ॥
ଗ୍ରେର କଳମହିଁ ନିପୁଣ ଅତି, ନନ୍ଦନନ୍ଦନ ଘନଶ୍ୟାମ ହେଁ ।
ଗ୍ରେରେଁ ମନ, ମାଖନ ମଦନ, ମୋହନ ଶୋଭାଧାମ ହେଁ ॥

# ଅଭିଯୋଗ ନିମନ୍ତେ ଗୋପୀଙ୍କ ଗମନ

କୃଷ୍ଣସ୍ୟ ଗୋପ୍ୟୋ ରୁଚିରଂ ବୀକ୍ଷ୍ୟ କୌମାରଚାପଲମ୍ ।
ଶୃଣ୍ୱନ୍ତ୍ୟାଃ କିଲ ତନ୍ମାତୁରିତି ହୋଚୁଃ ସମାଗତାଃ ॥

(ଶ୍ରୀ ଭା ୧୦ ସ୍କ, ୮ ଅ, ୨୮ ଶ୍ଳୋକ)

## ଛପ୍ପୟ

ଟେଢେ ବଦନ ବନାଇ ବହୁଁସି ଘରମହୁଁ ଘୁସି ଜାବୈଁ ।
ଗୃହୀ ଭାଭୀ କହେଁ ପ୍ୟାରତେଁ ଗହକ ବୁଲବୈଁ ॥
ଯଦ ଦେଖେଁ ନହୁଁ ଡ଼ୋଲ ଲୌଟିକେ ପୂନପୁନ ଆବୈଁ ।
ଜବ ଘର ସୁନୋ ଲଖେ ଚୋରୀ ଦଧି ମାଖନ ଖାବୈଁ ॥
ଗୋପୀ ଅତ ଉତ୍ସୁକ ରହଇଁ କଥା କୃଷ୍ଣକୀ ହୀ କହହିଁ ।
ଜଗହିଁ ବଧିତେଁ ସତତ ବର, କବ ହରକୀ ସାଁସତ ସହହିଁ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ରୁଚିର ବାଲ୍ୟ-ଚପଳତା ଦେଖି ବ୍ରଜ ଗୋପୀମାନେ ମାତା ଯଶୋଦାଙ୍କ ପାଖକୁ ଆସି ତାଙ୍କୁ ଶୁଣାଇ ଶୁଣାଇ ନାନାଭାବରେ ଖୁଣ୍ଟା ଦେବାକୁ ଲାଗିଲେ ।"

ପ୍ରେମର ଭାଷାର ଅର୍ଥ ଶବ୍ଦରୁ କିମ୍ବା କାର୍ଯ୍ୟରୁ ଜଣାଯାଏ ନାହିଁ । ତାହା ଭାବଗମ୍ୟ । ହୃଦୟ ହିଁ କେବଳ ତା'ର ଅର୍ଥ ବୁଝିପାରେ । ପ୍ରେମର ଭାଷାର ଅର୍ଥ ସବୁବେଳେ ପ୍ରାୟ ଓଲଟା । ଗାଳିଦେବା ଖରାପ କଥା; କିନ୍ତୁ ଶାଶୁର ଦର ଗାଳି, ପ୍ରେମ ଗାଳିରେ କେତେ ଆନନ୍ଦ ନ ଥାଏ ! ବିନା ସ୍ନେହରେ ପିଲାକୁ ଅନେଇଦେଲେ ସେ କାନ୍ଦ ପକେଇବ । ଡରିଯିବ । ମାତ୍ର ସ୍ନେହରେ ଚିପୁଡ଼ାଏ ଦେଲେ ବି ସେ ଖୁସିରେ ହସିଦେବ । ତା'ର ମନ ଆନନ୍ଦରେ ନାଚି ଉଠିବ । ବାଳକକୁ ଭିଡ଼ି ଧରିବା, ପିଟିବା, ମାରିବା ଭଲକାମ ନୁହେଁ । ମାତ୍ର ପିଲାଙ୍କୁ ସ୍ନେହରେ ଯେମିତି ମାର, ସେମାନେ ତାକୁ ଆଦର ବୋଲି ଭାବିବେ । ଆପଣ ଶବ୍ଦ ସମ୍ମାନ ସୂଚକ, ଶ୍ରେଷ୍ଠ ଶବ୍ଦ ଓ ସୁନ୍ଦର ଶବ୍ଦ । ମାତ୍ର କୌଣସି ପିଲାକୁ ଆପଣ କହିଲେ ସେ ଡରିଯିବ । ଭାବିବ, ନିଶ୍ଚୟ ମୋ' ଦ୍ୱାରା କୌଣସି ନା କୌଣସି ଅପରାଧ ହୋଇଛି; ତେଣୁ ମୋର ଗୁରୁଜନ ମୋତେ 'ଆପଣ' କହିଲେ । କାହା ପଛରୁ ଆସି

ତା' ଅଜାଣତରେ ହଠାତ୍ ଆଖି ବନ୍ଦ କରିଦେବା ଖରାପ କଥା । ମାତ୍ର ସେହି କାମକୁ ଅତି ସ୍ନେହୀ ଲୋକ କେହି କଲେ ତାହା ତା'ର ଶ୍ରେଷ୍ଠ କାମ ବୋଲି ଧରାଯିବ । କା'ର ସଫା ଲୁଗାରେ କାଦୁଅ, ମାଟି, ରଙ୍ଗ ଆଦି ପକେଇ ଦେବା ତାହା ଖରାପ କଥା; ମାତ୍ର ତାହା ହୋରି ଖେଳବେଳେ, ସାଙ୍ଗ, ଶାଳୀ, ଭାଉଜ ଆଦି କଲେ ସୁଖକର ହୋଇଥାଏ । ଚୋରି କରିବା ସେଭଳି ମନ୍ଦ କାମଟିଏ; କିନ୍ତୁ ସେହି ଚୋରି ସ୍ନେହୀର, ଅତିପ୍ରିୟ ବସ୍ତୁର ହୋଇଥିଲେ ତାହା ପ୍ରିୟ ମନେହୁଏ । ପ୍ରେମ ହୃଦୟର ଜିନିଷ ଆମ୍ଭ ଆପଣାର ସ୍ନେହୀର ସବୁ କାମ ସୁଖପ୍ରଦ ହୋଇଥାଏ ; ତେଣୁ ଯେଉଁମାନେ କାର୍ଯ୍ୟର ଭାବ ନ ବୁଝି କାର୍ଯ୍ୟର ସମାଲୋଚନା କରନ୍ତି, ସେହି ଶୁଷ୍କିଲା ମନର କର୍ମାସକ୍ତ ମଣିଷକୁ ରସଜ୍ଞ ବୋଲି କୁହାଯିବ ନାହିଁ । ପ୍ରେମର ଲୀଳା ରସିକ ଭାବୁକଙ୍କୁ ହିଁ ସୁଖ ଦିଏ । ରସହୀନ କୁତର୍କୀ ତ ତହିଁରୁ ଓଲଟା ଅର୍ଥ ବାହାର କରିବ ଆଉ ଅପରାଧର ଭାଗିଦାର ହେବ । ଶ୍ରୀକୃଷ୍ଣଙ୍କର ବାଲ୍ୟ-ଲୀଳାରେ ଲବଣୀ ଚୋରି ପ୍ରସଙ୍ଗ ସବୁଠାରୁ ସରସ ପ୍ରସଙ୍ଗ । ଶୁଷ୍କ ହୃଦୟ ବ୍ୟକ୍ତି ଏ ପ୍ରସଙ୍ଗ ଶୁଣିବାର ଅଧିକାରୀ ନୁହନ୍ତି । ଯାହାର ରସ ଶାସ୍ତ୍ରରେ ପ୍ରବେଶ ଅଛି ସେହି ଏଥିରୁ ଆନନ୍ଦ ପାଇପାରିବ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ରୀକୃଷ୍ଣ ବାଳ ଚୋର ସମିତି ଗଠନ କଲେ । ତା'ପରେ ଚୋରି କରିବା କାର୍ଯ୍ୟ ଆରମ୍ଭ ହୋଇଗଲା । ବାଳକମାନଙ୍କର ଖେଳିବା ଓ ଖାଇବା ଏ ଦୁଇଟି କାମ ଅଧିକ ପ୍ରିୟ । ଏସବୁ ଲାଗି ସେମାନେ ସତ ମିଛ ସବୁ କହି ପାରନ୍ତି, କାନ୍ଦି ପାରନ୍ତି । ଘରଲୋକଙ୍କ ପ୍ରତି ବଳୁଛି ବ୍ୟବହାର ମଧ୍ୟ କରିପାରନ୍ତି । ଘରର ଜିନିଷ ନେଇ କେଉଁଠି ଲୁଚେଇ ଦେଇ ପାରନ୍ତି । ଭାଙ୍ଗି ଭୁଜି ପାରନ୍ତି । ସେତେ-ବେଳେ ସେମାନଙ୍କ ଭିତରେ ପର ଆପଣାର ଭାବ ନ ଥାଏ । ଜିନିଷପ୍ରତି ଲୋଭ ନ ଥାଏ, ମମତା ନ ଥାଏ, ଭବିଷ୍ୟତ ଚିନ୍ତା ମଧ୍ୟ ନ ଥାଏ । ଅଙ୍କାର କାମ ଚଳିଯାଉ ତା'ପରେ ଯାହା ହେବ ଦେଖାଯିବ । ଦେଖାଯିବ କ'ଣ ଭବିଷ୍ୟତରେ କିଛି ନୂଆ କାମ ବି ହେବ । ଏ କଥାକୁ ବି ସେମାନେ ସ୍ମରଣ କରନ୍ତି ନାହିଁ । ପିଲାଙ୍କୁ ହସ ଖୁସିର କଥା ଭାରି ଭଲଲାଗେ । କାହାକୁ ଦେଖି ହସିଦେବା, ଅନ୍ୟର ଅନୁକରଣ କରିବା, ଗୁପ୍ତକଥା ଜାଣିବାର ଇଚ୍ଛା ହେବା, ପ୍ରାୟ ବାଳକଙ୍କର ସ୍ୱଭାବ । ପିଲାମାନେ ସେମାନଙ୍କର ହସିବା, କାନ୍ଦିବାର ଇଚ୍ଛାକୁ ରୋକି ପାରନ୍ତି ନାହିଁ । ହସ କଥା ଶୁଣିଲେ ଖିଲିଖିଲି ହୋଇ ହସନ୍ତି, କାନ୍ଦିବା କଥା ହେଲେ ସେମାନଙ୍କୁ ପର ଅପଣା କଥା ଦିଶେନାହିଁ । କୌଣସି କଥାକୁ ମନ ଭିତରେ ଲୁଚେଇ ରଖି ପାରନ୍ତି ନାହିଁ । ଯାହା ବି କଥା ହୁଏ ସବୁ ଖୋଲି କହି ଦିଅନ୍ତି । ଲହୁଣୀ ଚୋରି ଖେଳଭଳି, ସେଥିରେ ରହସ୍ୟ ଅଛି, ହସ ଖୁସି ଅଛି ସୁଆଦିଆ ଜିନିଷ ବି ଖାଇବାକୁ ମିଳୁଛି । ଏଭଳି କାମକୁ କିଏ ବା ପସନ୍ଦ କରିବ ନାହିଁ । କେତେଜଣ ମୁହଁ ଫୁଲେଇଲା ପିଲା ବାଲ୍ୟାବସ୍ଥାରେ ବୁଢ଼ାଙ୍କ ଭଳି କଥା କହନ୍ତି ସେମାନଙ୍କୁ ଛାଡ଼ିଦେଲେ ଏସବୁ କାମରେ

ସବୁ ପିଲା ନନ୍ଦଘରୁ ଆସି ମିଶିବେ । କୃଷ୍ଣଚନ୍ଦ୍ର ସେଭଳି ପିଲାଙ୍କୁ ତାଙ୍କ ସମିତିରେ ମିଶେଇ ନ ଥିଲେ । ଯେ ଚଞ୍ଚଳ ସ୍ୱଭାବର ହସ ହସ, ଖେଳ ବିନୋଦପ୍ରିୟ । ଆଉ ଯେ ତାଙ୍କର ବୋଲ ମାନିବା ପିଲା ସେ ତାଙ୍କୁ ହିଁ ନେଇଥିଲେ । ସବୁ ଘରର ଖବର ତାଙ୍କୁ ମିଳିଗଲା । କେଉଁ ଘରେ କେତେ ଲୋକ, କେତେ ଗୋରୁଗାଈ କ'ଣ କେଉଁଠି ଥାଏ, କାହା ଘରେ କେତେ ଦୁଧ ଲହୁଣୀ ହୁଏ, କିଏ କେତେବେଳେ ଘରେ ନ ଥାଏ ଇତ୍ୟାଦି ସବୁ ଖବର ତାଙ୍କର ପାଖରେ । କେମିତି ଲହୁଣୀ ମିଳିବ ସେ ଉପାୟ ବି ଭାରି ଦୋରସ୍ତ । ଗୁପ୍ତଚର ବିଭାଗ ବେଶ୍ ଟାଣୁଆ । ଘରେ ଘରେ ତାଙ୍କର ଅନୁଚର ଥିଲେ ଯେଉଁମାନେ ଗୋପେଇଶାଳ, ଭଣ୍ଡାରଘର ସବୁ କଥା ଆସି ଜଣେଇ ଦେଉଥିଲେ । ତା'ପରେ ସେ ଘରେ ଘରେ ପଶି ଚୋରି ଆରମ୍ଭ କରିଦେଲେ ।

ଜଣେ ଅତି ଭାବମୟୀ ଗୋପୀ ଥିଲା । ସେ ଶ୍ରୀକୃଷ୍ଣଙ୍କ ରୂପମାଧୁରୀର ଭାରି ଭକ୍ତ । ସବୁବେଳେ ଶ୍ରୀକୃଷ୍ଣଙ୍କର ରୂପର ଚର୍ଚ୍ଚା କରୁଥାଏ । ପ୍ରତିଦିନ କୌଣସି ନା କୌଣସି ବାହାନାରେ ଶ୍ରୀକୃଷ୍ଣଙ୍କୁ ଦେଖିବ ବୋଲି ଯଶୋଦାଙ୍କ ପାଖକୁ ଆସେ । ଶ୍ରୀକୃଷ୍ଣଙ୍କୁ ଦେଖିଲେ କୃତାର୍ଥ ହୋଇଯାଏ । ସେ ଚାହିଁଥାଏ ଯେ କୃଷ୍ଣ କେବେ ଥରେ ତା'ଘରେ ଲହୁଣୀ ଖାଆନ୍ତୁ । ନନ୍ଦ ରାଜା ଗୋକୁଳରେ ମୁରବି । ଯେ ତା'ର କାକା ତ ତା'ର ଭାଇ ବା ପୁତ୍ର । ତେଣୁ ଅଧିକାଂଶ ଗୋପୀ କୃଷ୍ଣଙ୍କର ଖୁଡ଼ୀ, ମାଉସୀ, ଭାଉଜ ହିସାବ ହେବେ । ହଁ ସେଇ ଭାବମୟୀ ଗୋପୀ ଶ୍ରୀକୃଷ୍ଣଙ୍କର ଭାଉଜ ହେବ । ସେ ଘରେ ପହଞ୍ଚିଲେ ଶ୍ରୀକୃଷ୍ଣ ମାଆ କୋଳରେ ଥାଇ ଭାଉଜ ବୋଲି ଡାକନ୍ତି, ଆଉ ମାଆଙ୍କ ପଣତ କାନିରେ ମୁହଁ ଲୁଚେଇ ଦିଅନ୍ତି । ସେ କହେ—"କାହ୍ନା ! ମୋ' କୋଳକୁ ଆସ ! ସେଇଆ ଶୁଣିଲେ ସେ ମାଆଙ୍କ କୋଳରେ ଥାଇ ଲାଜେଇ ଯାଆନ୍ତି । ମାଆ କହନ୍ତି—"ଆରେ କାହ୍ନା ! ତୁ ତୋ'ର ଭାଉଜମାନଙ୍କ ଆଗରେ ବି ଲାଜ କରୁଛୁ । ଦେଖ୍ ତୋତେ କେତେ ଆଦରରେ ଡାକୁଛି ।" ହେଲେ ସେ ଯାଆନ୍ତି ନାହିଁ ।

ଦିନେ ସେ ତା' ଘରକୁ ଗଲେ । ତା' ଗୁହାଳରେ ଅନେକ ଗାଈ । ଆଗ ଗୁହାଳର ବାଛୁରିମାନଙ୍କୁ ଖୋଲି ଦେଇ ଘର ଭିତରକୁ ଦଉଡ଼ି ଯାଇ ଧଇଁସଇଁ ହୋଇ କହିଲେ— "ଦେଖ ଭାଉଜ ! ତମର ବାଛୁରି ସବୁ ପଘା ଖୋଲି ଏଣେତେଣେ ହେଲେଣି । ମୁଁ ବାନ୍ଧିବାକୁ ଚେଷ୍ଟାକଲି ; ହେଲେ ସେମାନଙ୍କୁ ମୁଁ କେଉଁ ସମ୍ଭାଳି ପାରିବି ? ଜଲ୍‌ଦି ଯାଅ, ନ ହେଲେ ସବୁ ଦୁଧ ସେମାନେ ପିଇଯିବେ ।"

ଏଇଆ ଶୁଣି ଗୋପୀ ଗୁହାଳକୁ ଦଉଡ଼ି ଗଲା । ଗଲାବେଳେ କହିଦେଇ ଗଲା— "ଦେଖୁଥିବ କାହ୍ନା ! ନ ହେଲେ ଘର ଭିତରକୁ କୁକୁର, ବିଲେଇ ପଶିବେ ।"

ସେ କହିଲେ—"ଠିକ୍ ଅଛି ଭାଉଜ ! ତମେ ଯାଅ, ମୁଁ ଜଗିଛି ଏଇଠି ।"

ଗୋପୀ ଗୁହାଳକୁ ଗଲାମାତ୍ରକେ ସେ ତାଳି ମାରିଲେ, ତାଳି ଶବ୍ଦ ଶୁଣି ଲୁଚି ରହିଥିବା ଦାମ, ସୁଦାମା, ସ୍ତୋକକୃଷ୍ଣ, କିଙ୍କିଣୀ, ମନସୁଖା, ମଧୁମଙ୍ଗଳ, ରେଣ୍ଡା, ମେଣ୍ଡା, ସେଣ୍ଡା, ଘରକୁଆ, ଭଟ୍‌କୁଆ, ଚଟକୁଆ, ଲଟକୁଆ ଆଦି ଶହେ ସରିକି ପିଲା ବାହାରି ଆସିଲେ ଆଉ ଲହୁଣୀ ଘେରେଇଲେ । ଶ୍ରୀକୃଷ୍ଣ ଭିତରୁ ବଡ଼ା ବଡ଼ା କରି ଲହୁଣୀ ଆଣି ବାଣ୍ଟିବାକୁ ଲାଗିଲେ । ଶ୍ରୀକୃଷ୍ଣ ଦୂରରୁ ଗୋପୀ ଆସୁଥିବା ଦେଖିଲେ, ସେ ସଙ୍କେତ କରି କହିଦେଲେ—ପଳାଅ ଖସି···। ଚଟାପଟ କିଏ ପାଟିରେ ପାଟିଏ, କିଏ ଆଞ୍ଜୁଳା ଭର୍ତ୍ତି ଲହୁଣୀ ଧରି ସେ ଯୁଆଡ଼େ ଦଉଡ଼ି ପଳେଇଲେ । ଶ୍ରୀକୃଷ୍ଣ ପାଟିକଲେ"···ଏ···ଏ··· ଘେରଗୁଡ଼ା, କୁଆଡ଼େ ପଳାଉଛ ।"

ଗୋପୀ ଦେଖିଲା ତା'ର ଦୁଧ, ଦହି, ଲହୁଣୀ, କ୍ଷୀର ବଡ଼ାଗୁଡ଼ିକ ମେଲା ପଡ଼ିଛି । ସେ ରୁଟିପିଟି ହୋଇ କହିଲା—"କାହ୍ନା ! କ'ଣ କଲୁ !"

"ମୁଁ କିଛି କରିନାହିଁ ଖାଉଜ ! ତମେ କୁକୁର ବିଲେଇ ଜଗିବାକୁ କହି ଯାଇଥିଲ ସେଥିରୁ ଗୋଟାଏ ହେବେ ପଶିନି ।"

"ଆଉ ଏ ଫାଜିଲ ପିଲା ଦଳ ? ସେମାନଙ୍କୁ କେମିତି ମନା କଲ ନାହିଁ ?"

"ମୁଁ କେତେ ମନାକଲି, କିଏ ମାନୁଛି ? ସେମାନେ ହେଲେ ପଲେ ଆଉ ମୁଁ ହେଲି ଜଣେ । ଏକୁଟିଆ କେମିତି ଓଗାଳି ପାରନ୍ତି ?"

"ତମେ କୋଉଠି ସେମାନଙ୍କୁ ଓଗାଳୁ ଥିଲ ? ତମେ ତ ବଡ଼ା ବଡ଼ା ଲହୁଣୀ ଆଣି ସେମାନଙ୍କୁ ଖୁଆଉ ଥିଲ, ଆଉ ନିଜେ ବି ଖାଉଥିଲ ।"

"ତମ ରାଣ ଖାଉଜ ! ମୁଁ ଲହୁଣୀକି ଟିପ ଲଗେଇ ନାହିଁ ।"

ଗୋପୀ କହିଲା—"ଏ ମାଁ·· ମିଛ ରାଣ ପକଉଛ, ମୁଁ ନିଜ ଆଖିରେ ତମକୁ ସବୁରି ସାଙ୍ଗରେ ଖାଇବା ଦେଖିଛି । ତମ ଗାଲରେ ପାଟିରେ ଏଇନେ ବି ଲାଗିଛି ।"

ଶ୍ରୀକୃଷ୍ଣ କହିଲେ—"ଖାଉଜ ! ତମେ ବିନା ଦୋଷରେ ମୋତେ ମିଛୁଆ କରୁଛ । ମୁଁ ତମ ଲହୁଣୀ ଦେଖିନାହିଁ ବି । ଗୋଟିଏ ପିଲା ଲହୁଣୀ ଖାଉଥିଲା, ହାତରେ ଧରିଥିଲା, ମୁଁ ତାକୁ କଣିକି ଚୁପୁଡ଼ାଏ ଦେଲିରୁ ପଡ଼ିଗଲା, ଆଉ ହଠାତ୍ ଉଠିପଡ଼ି ମୋତେ ଭିଡ଼ି ଧରିଲା । ମୋ' ମୁହଁ ମୋଡ଼ି ପକେଇଲା, ମୋ' ପାଟି ଏମିତି ବନ୍ଦକରି ଦେଲା ଯେ ମୁଁ ତମକୁ ଡାକି ବି ପାରିଲି ନାହିଁ । ସେତେବେଳେ ମୋ' ପାଟିରେ ଓ ଗାଲରେ ଲହୁଣୀ ଲାଗି ଯାଇଥିବ । ହୋମ କଲାବେଳେ ହାତ ପୋଡ଼ିଯାଏ, ଉପକାର କଲେ ଅପକାର ହୁଏ । ତମ ଘର ମୁଁ ଜଗି ବସିଲି, ଆଉ ଫଳ ହେଲା ଅପବାଦ । ମୁଁ ଆଉ ତମ ଘରକୁ କେବେହେଲେ ଆସିବି ନାହିଁ । ଏଇଆ କହି ସେ ସେଠାରୁ ପଳେଇଲେ । ଅବାକାବା ହୋଇ ଗୋପୀ ତାଙ୍କୁ ଅନେଇ ରହିଲା ।"

ଧୀରେ ଧୀରେ ଗୋପର ସବୁ ଗୋପୀ ଜାଣିଦେଲେ ଯେ, ଶ୍ରୀକୃଷ୍ଣ ଘରେ ଘରେ ପଶି ଲହୁଣୀ ଚୋରି କରୁଛନ୍ତି । ସମସ୍ତେ ମନାସ କରନ୍ତି ମୋ' ଘରକୁ ଆସନ୍ତେ କି ! ଏମିତି ଥାନରେ ଲହୁଣୀ ରଖନ୍ତି ଯେମିତି ସହଜରେ ନେଇଆସି ପାରିବେ । କାମ କରୁଥାନ୍ତି, ଏଣେତେଣେ ଅନାଉ ଥାଆନ୍ତି, ଆସିଲେ କି ବୋଲି କାଣେଇ ଚାହାନ୍ତି । ଯୋଉଦିନ ଯାହା ଘରୁ ଚୋରେଇ ଖାଆନ୍ତି; ସେଦିନ ସେ ଗୋପୀ ନିଜକୁ ଧନ୍ୟ ମନେକରେ । ଗୋପୀମାନେ ଥରେ ଭାବିଲେ—"ଏକଥା ଠିକ୍ ନୁହଁ, ସେ ଚୋରେଇ ଚାଲିଥିବେ ଆଉ ଆମେ ଧରିବା ନାହିଁ । ଥରେ ଧରାଯାଉ । ଗାଲ ହଲେଇ ଧମକେଇ ଦେବା । ଭଲ ଓଳିଆ କନ୍ଦାକଟା କଲେ ଛାଡ଼ିଦେବା । ଏଇଆ ଭାବି ସେମାନେ ତାଙ୍କୁ ଧରିବେ ବୋଲି ଜଗି ବସିଲେ । ଡଉଲ ଡାଉଲ ଗୋପୀଟିଏ ଚନ୍ଦହେଲା, ଯେମିତି ହେଉ ସେ ତାଙ୍କୁ ଧରିବ ହିଁ ଧରିବ ।"

କିଏ ଧରିବ ବୋଲି ପ୍ରତିଜ୍ଞା କଲେ ସେ ଆପେ ଆପେ ଆସି ଧରାଦିଅନ୍ତି । ଗୋପୀଟି ଛକି ବସିଲା ଧରିବ ବୋଲି । ସବୁରି ମନକଥା ଜାଣୁଥିବା ଘନଶ୍ୟାମ ସେଇ ଘରକୁ ପଶିଲେ । କବାଟ ଆଢୁଆଳରେ ଥାଇ ଗୋପୀଟି ଦେଖିଲା ଶ୍ରୀକୃଷ୍ଣ ଏଣେତେଣେ ଚାହିଁ ଲହୁଣୀ ବଢ଼ାରେ ହାତ ପୁରେଇଲେ । ଗେଣ୍ଡାଏ ମାଇଲେ । ଆଉ ଗେଣ୍ଡାଏବେଳକୁ ଗୋପୀ ପାଦ ଚିପିଚିପି ଆସି ଚଟ୍‌କିନା ହାତ ଧରିନେଲା । କହିଲା—"କ'ଣ ହଉଛି କାହ୍ନା !"

ଶ୍ରୀକୃଷ୍ଣ ଅଡ଼ି ବସିଲେ । ଚୋରି ବିଦ୍ୟାରେ ସେ ବେଶ୍ ଧୁରନ୍ଧର । ଖୁବ୍ ଦମ୍ଭର ସହିତ ଚଟାପଟ୍ କହିଲେ—"ମୋ' ମନକୁ ଯାହା ଆସିଲା ସେଇଆ କରୁଛି । ତମେ କହିବାକୁ କିଏ ?"

ଗୋପୀ କହିଲା—"ମୁଁ ଏ ଘରର ମାଲିକାଣୀ, ତମେ ମୋ' ଘରେ ପଶିଲ କେମିତି ?"

ଶ୍ରୀକୃଷ୍ଣ ଖର ଟାଣରେ କହିଲେ—"କ'ଣ କହୁଛ ତମେ ! ଇଏ ତମ ଘର ! ମୋ' ମୁଣ୍ଡ କ'ଣ ହେଲା କେଜାଣି, ମୁଁ ଆମ ଘର ଭାବି ପଶି ଆସିଛି ।"

ଗୋପୀ କହିଲା—"ହେଲା, ହେଲା ଏବେ ତମ ଘର । ହେଲେ ଏ ଲହୁଣୀ ବଢ଼ାରେ ହାତ କାହିଁ ପୁରେଇଛ ?"

ଶ୍ରୀକୃଷ୍ଣ କହିଲେ—"ଲହୁଣୀକୁ ଏମିତି ମେଲରେ କିଏ ରଖେ । ମେଲା ରଖିଛ ଯେ ପିମ୍ପୁଡ଼ି ଲାଗିଛନ୍ତି । ମୁଁ ବସି ପିମ୍ପୁଡ଼ି ବାଛୁଛି ।"

ଗୋପୀ କହିଲା—"ଭଲ କରୁଛ; ହେଲେ ଏ ଗାଲରେ କେମିତି ଲହୁଣୀ ଲାଗିଛି ?"

ଶ୍ରୀକୃଷ୍ଣ କହିଲେ—"ଏଇ ବଡ଼ାରୁ ମୋ' ମୁହଁ ଉପରକୁ ପିମ୍ପୁଡ଼ିଟିଏ ଚଢ଼ି ଆସିଥିଲା ତାକୁ ଆଡ଼େଇଲାବେଳକୁ ଲାଗି ଯାଇଥିବ ।"

ଗୋପୀ କହିଲା—"ପିମ୍ପୁଡ଼ି ଯଦି ଲଗେଇଲା, ମୁଁ ବି ଟିକିଏ ଲଗେଇ ଦେଉଛି ।" ଏଇଆ କହି ସେ ମେଞ୍ଚାଏ ଲହୁଣୀ ଆଣି ଶ୍ରୀକୃଷ୍ଣଙ୍କ ମୁହଁରେ ବୋଳିବାକୁ ଲାଗିଲା । ଶ୍ରୀକୃଷ୍ଣ ଦଉଡ଼ି ପଳେଇଲେ । ଗଲାବେଳେ କହି କହି ଗଲେ ମୁଁ ଯାଇ ମାଆକୁ କହିବି, ତୁମେ ମୋତେ ଘରେ ବନ୍ଦକରି ମାରୁଛ !" ତାଙ୍କୁ ଦେଖି ଗୋପ ପିଲାଏ କହିଲେ—ସବୁତକ ଏକୁଟିଆ ଖାଇଗଲୁନା ! ଆମକୁ ଟିକେ ବି ଦେଲୁ ନାହିଁ !"

ଶ୍ରୀକୃଷ୍ଣ କହିଲେ—"ଆରେ ମୁଁ ଏକୁଟିଆ ଫେରି ଆସିଲି ସିଏ ବଡ଼ କଥା । ମୋ' ମୁହଁରେ ଲହୁଣୀ ବୋଳି ସିଏ ମୋତେ ଛେଳି ବନଉ ଥିଲା । ସିଏ ଯାଦୁବିଦ୍ୟା ଜାଣେ । ପଳାଅ ପଳାଅ ଏଠୁ, ନ ହେଲେ ସେ ସମସ୍ତଙ୍କୁ ଛେଳି ବନେଇ ଦବ । ଏଇଠି ସଭିଏଁ ମେଁ ମେଁ ହଉଥିବ ।" ଏଇଆ ଶୁଣି ରୈନ୍ଦା, ପୈନ୍ଦା, ସୈନ୍ଦା ସବୁ ଯେ ଯୁଆଡ଼େ ଦଉଡ଼ି ପଳେଇଲେ ।

ଥରେ କୃଷ୍ଣ ଗୋଟାଏ ଘରେ କେହି ନଥିବା ଦେଖି ଜଞ୍ଜିର ଫିଟେଇ ଭିତରକୁ ପଶିଗଲେ । ଘରେ ସତୁମୁହା ଘଡ଼ିଟିଏରେ ଲହୁଣୀ ଥିଲା । ସେଥିରୁ ଲହୁଣୀ କାଢ଼ି ଖାଇବାକୁ ଲାଗିଲେ । ଗୋପୀଟି ତ ଜାଣି ଜାଣି ଲୁଚି ରହିଥିଲା । ସେ ଦେଖିଲା ଶ୍ୟାମ ପେଟପୁରି ଲହୁଣୀ ଖାଇ ସାରିଲେଣି । ଆଉ ଏଥର ପଳେଇବା ଫିକରରେ ରହିଲେଣି । ଧୀରେ ଧୀରେ ଆସି ପଛପଟୁ ହାତ ଧରି ପକେଇଲା । କହିଲା—"କାହ୍ନା ! ସମ୍ ସାମ୍, କହ କ'ଣ କରୁଛ ?"

ଶ୍ରୀକୃଷ୍ଣ କହିଲେ—"ମୋ' ବାଛୁରୀଟି କୁଆଡ଼େ ହଜି ଯାଇଛି, ତାକୁଇ ଖୋଜୁଛି ।"

ଗୋପୀ ହସି ଦେଇ କହିଲା—"ବାଛୁରୀ ଖୋଜି ଆସି ଏ ଲହୁଣୀ ଘଡ଼ିରେ ହାତ ପୁରେଇଛୁ କ'ଣ ?"

ଶ୍ରୀକୃଷ୍ଣ କହିଲେ—"ଭଉଜ ! ସେଇଆକୁ ତ ଏ ଘଡ଼ି ଭିତରେ ଖୋଜୁଛି । ମୋ' ବାଛୁରୀ ଲହୁଣୀପରି ଏଡ଼େ ବଢ଼କଟେ, ସେ ଲହୁଣୀ ଖାଏ । ନାଚ ନାଚ ଆସେ ଆଉ ଲହୁଣୀ ବଡ଼ା ଦେଖିଲେ ଡେଇଁ ପଶିଯାଏ ।"

ଗୋପୀ ହସି ଦେଇ କହିଲା—"ସିଏ ଯଶୋଦା ମାଆର ପୁଅଟି, ଧଳା ଲହୁଣୀର ନୁହଁ, କଳା ଲହୁଣୀ ।"

ଶ୍ରୀକୃଷ୍ଣ ଫିକ୍‌କିନା ହସି ଦେଲେ । ଗୋପାଳୁଣୀ ସେ ହସରେ କୃତକୃତ୍ୟ ହୋଇଗଲା ।

ଦିନେ ଶ୍ୟାମସୁନ୍ଦର ସାଙ୍ଗମାନଙ୍କ ସାଙ୍ଗରେ ଜଣେ ଗୋପୀ ଘରକୁ ପଶିଲେ । ମରଦ ପିଲାଏ ବୃଷ କାମକୁ ଯାଇଥିଲେ ଅଉ ଗୋପାଳୁଣୀ ଘସି ପାରିବ ବୋଲି ଯାଇଥିଲା । ସେ ସେତିକିବେଳେ ତାଙ୍କର ସୈନ୍ୟ ନେଇ ହାଜର ହେଲେ । ଏଣେତେଣେ ସାଙ୍ଗମାନଙ୍କୁ ଲୁଚେଇ ଦେଲେ । ଆଉ ନିଜେ ଲହୁଣୀ ବଡ଼ା ଟେକି ଅଣି ଭୋଗ ଲଗେଇବା ଆରମ୍ଭ କରିଦେଲେ । ସେତେବେଳକୁ ଗୋପୀଟି ଆସି ପହଞ୍ଚିଲେ । ବାହାରେ ଲୁଚିଥିବା ପିଲାଏ ତ ଯେ ଯୁଆଡ଼େ ପଳେଇଲେ ଏକା ଶ୍ରୀକୃଷ୍ଣ ରହିଗଲେ । ଘର ଭିତରେ ଏଣେତେଣେ ଲୁଚିଥିବା ଦଶ ପନ୍ଦର ଜଣ ବି ପଳେଇ ନ ପାରି ରହିଗଲେ ।

ଏତେଜନକେ ଶ୍ୟାମସୁନ୍ଦର ଆସିଲେ ବୋଲି ସଖୀ ବୁଝିଗଲା ।

ସିଏ ଧମକେଇଲା ଭଳି ପାଟି କଲା—"ଆରେ ! ଘର ଭିତରେ କିଏରେ !"

ସେ ସେଇଠୁ କହିଲେ—"ଭାଉଜ ! ମୁଁ ।"

ଜାଣି ନ ଜାଣିଲା ଭଳି ଗୋପୀଟି କହିଲା—"ମୁଁ ବୋଇଲେ କିଏ ?"

ଶ୍ୟାମସୁନ୍ଦର କହିଲେ—"ଭାଉଜ ! ମୁଁ·· କୃଷ୍ଣ ।"

ଗୋପୀ ସ୍ନେହମିଶା ରାଗ ଦେଖେଇ ପଚାରିଲା—"କୃଷ୍ଣ ଯାଦୁ, ଘରେ କାହିଁ ପଶିଛ ?"

ଶ୍ୟାମସୁନ୍ଦର ଧୀରେ ଧୀରେ କହିଲେ—"ଆରେ ତୁନି ପଡ଼ ଭାଉଜ ! ଧୀରେ କହ । ମାଆ ମୋ' ଉପରେ ଭାରି ରାଗିଛି । କହୁଛି ମୋତେ ପାଇଲେ ନ ମାରି ଛାଡ଼ିବ ନାହିଁ । ସେଇଥିଲାଗି ମାଆ ଡରରେ ଆସି ଏଇଠି ଲୁଚିଛୁ । ମୋ' ଉପରେ କୃପା ହେଉ ତମର । ମାଆକୁ ଏକଥା କହିବ ନାହିଁ । ମୁଁ ଅଉ ଘଡ଼ିଏ ଲୁଚିରହି ପଳେଇବି ।"

ଗୋପୀ କହିଲା—"ଲୁଚିଛ ଯେ, ଭଲ କଲ । ଏ ଲହୁଣୀ ହାଣ୍ଡି ଗୁଡ଼ା ବାହାରେ କେମିତି ?"

ଶ୍ୟାମସୁନ୍ଦର କହିଲେ—"ତମ ଘରେ ଲୁଚିଛୁ ଯେତେବେଳେ, ଘର ପାଇଁ କିଛି ତ କରିଦେବି ? ବଡ଼ାଗୁଡ଼ାକ ଟେକି ଆଣି ଘର ସଫା କରୁଛୁ ।"

ଗୋପୀ କହିଲା—"ଘର ସଫା ନା ଲହୁଣୀ ସଫା !"

ଶ୍ୟାମସୁନ୍ଦର କହିଲେ—"ଲହୁଣୀ କେମିତିଆ ଜିନିଷ କି ଭାଉଜ ! ମୁଁ ଭାବିଲି, ତମେ ଆଉ ପରିଶ୍ରମ କରି କେତେ ସଫା କରୁଥିବ । ହାଣ୍ଡି ବି ସଫା କରି ପକାଏଁ । ଦେଖୁନ, ମହିଚଳ୍ପା ଉପରେ ଯୋଉ ମଇଳା ଭାସେ ସେଥିରୁ ଗୁଡ଼ାଏ ଭର୍ତ୍ତି । ମୁଁ ସେଇ ହାଣ୍ଡି ଗୁଡ଼ା ବାହାରେ ରଖିଦେଲାରୁ ଏ କାଙ୍ଗାଳିଆ ଗୁଡ଼ା ସେଇ ମଇଳାଗୁଡ଼ା ଖାଇଗଲେ ।"

ଗୋପୀ ପଚାରିଲା—"ମାଆ ଡରରେ ଲୁଚିଲ ଯଦି ଏତେ ସାଙ୍ଗସାଥୀ ନେଇ ଲୁଚିବା କି ଦରକାର !"

ଶ୍ରୀକୃଷ୍ଣ କହିଲେ—"ତମେ ନ ଥିଲ । ମୁଁ ଏକୁଟିଆ ଆସି ଲୁଚେଇ ଯିବ, କିଏ ଚୋର କହିବ ନାହିଁ । ସେଇଥିଲାଗି ସାକ୍ଷୀ ରହିବେ ବୋଲି ଏମାନଙ୍କୁ ବି ଆଣିଛୁ ।"

ଗୋପୀ କହିଲା—"ଚୋର ଚୋର ! ମାଉସୀ ପୁଅ ଭାଇ । ଇଏ ସେମିତି କଥା । ତମେ ଯେମିତି ଲୁଚେଇ ପିଲା ସେମିତି ତମର ସାଙ୍ଗ । ଲହୁଣୀ ତ ତମେ ବି ଖାଇଛ ଆଉ ଗୋପ ପିଲଙ୍କୁ କାଙ୍ଗାଳିଆ କହୁଛଣି ।"

ଭାବ ସୂଚାଇଲା ଭଳି ଶ୍ରୀକୃଷ୍ଣ କହିଲେ—"ଗ୍ୱାଳନି ! ଦେଖ, ତମେ ମୋତେ ଚୋର ବୋଲି କହୁଛ । ଏଇନେ କୁକୁରଟେ ଆସିଥିଲା । ହଠାତ୍ ମଝିରୁ ଏମିତି ଆସିଲା ଯେ ମୁଁ ଡରଯାଇ ହାଣ୍ଡି ଉପରେ ହାମୁଡ଼ି ପଡ଼ିଲି । ହାଣ୍ଡି ଭାଙ୍ଗିଗଲା । ସେଇ ପଡ଼ିଗଲାରୁ ମୁହଁରେ ଲହୁଣୀ ଲାଗିଥିବ ।"

ଏଇଆ ଶୁଣି ଗୋପୀ ଧୀରେ ଧୀରେ ଯାଇ ବାହାର କବାଟ କିଳିଦେଇ କହିଲା—"ଠିକ୍ ଅଛି, ଲୁଚିବ ପଶ, ଲୁଚିଆ । ଶ୍ରୀକୃଷ୍ଣ କୋଠରି ଭିତରେ ବନ୍ଦ ହୋଇ ରହିଯିବା ଦେଖି ସମସ୍ତେ ଯେ ଯୁଆଡ଼େ ପଳେଇଲେ । ଶ୍ରୀକୃଷ୍ଣ ଏକାକୀ ରହି ଗଲେ ; କିନ୍ତୁ ତାଙ୍କର ସାଙ୍ଗମାନେ ବି ଚୋର ବିଦ୍ୟାରେ ଓସ୍ତାଦ୍ ବନି ସାରିଥିଲେ । ସେମାନେ ପଛପଟେ କାନ୍ଥ ଉପରେ ଚଢ଼ି ଉପର କଣା କରି ସେଇଠୁ କହିଲେ—କାହ୍ନା ! ବେଶ୍ ଫାନ୍ଦରେ ପଡ଼ିଗଲୁ ନା !"

ଭିତରେ ଥାଇ ଠାରରେ ଠାରରେ ଶ୍ୟାମସୁନ୍ଦର କହିଲେ—"ଆରେ ବାହାର କର ମତେ !"

ପିଲାଏ ତାଙ୍କ ଧୋତି ଖୋଲି ଗୋଟି ଗୋଟି କରି ଗଣ୍ଠି ପକେଇ ଗ୍ରନ୍ଥରୁ ଝୁଲେଇ ଦେଲାରୁ ଶ୍ରୀକୃଷ୍ଣ ତାକୁ ଧରି ଧରି ଭିଡ଼ରେ ପାଦ ଦେଇ ଗ୍ରନ୍ଥ ଦେଇ କଣାବାଟେ ବାହାରି ଆସିଲେ । ଆଉ ଦଉଡ଼ି ଦଉଡ଼ି ମାଆ ପାଖରେ ପହଞ୍ଚିଗଲେ । କହିବାକୁ ଲାଗିଲେ—"ବୁଝିଲୁ ମାଆ ! ତୋର କୋଉ କଥାକୁ ନଜର ନାହିଁ । ଗୁହାଳରୁ ଗୋପୀମାନେ ଆସି ଗୋବର ଚୋରେଇ ନେଉଛନ୍ତି । ଦୁହାଁ ଚୋରେଇ ନେଉଛନ୍ତି । ଗୋବର କଡ଼ା ଫାଉଡ଼ା ନେଇ ପଳଉଛନ୍ତି ।"

ମାଆ କହିଲେ—"ଆମର କୋଉ ଗୋବର କମ୍ ଯେ, କିଏ ଯେ ଯାହା ନେବ ।"

ଶ୍ରୀକୃଷ୍ଣ କହିଲେ—"ମୁଁ ତ କାହାକୁ ନବାକୁ ମନା କରୁନି । ତେବେ ଚୋରେଇ ନବାଟା କ'ଣ ଭଲ କଥା । ତାଙ୍କୁ ପଚାର, ସେମାନେ ଏମିତି ଲୁଚେଇ ଲୁଚେଇ କାହିଁ ନଉଛନ୍ତି ।"

ମାଆ କହିଲେ—"କିଏ କହୁଛି, ତା' ନାଁ କହୁନୁ ! ମୁଁ ତାକୁ କହିଦେବ ଯାହା କବାକଥା କେ, ଗୋରେଇ କେ ନା ।"

ଶ୍ରୀକୃଷ୍ଣ କହିଲେ—ଏଇ ଦୁଇଏ ହେଲ ଘର କଣ ଗୋବର ଗୋରେଇ କହୁଥିଲେ । ମୋତେ ଦେଖି ଚାନକଣ ପଳେଇଗଲେ । ଗୋଟେ ଯୁଆନ ଝିଅ ମୋ' ସାଙ୍ଗରେ କଳକର ବସିଲ । ସେ କେଡ଼େ ବଡ଼ ଆଉ ମୁଁ ଛୁଆ ବଳଟେ । ମୁଁ କ'ଣ କରିପାରିବ । ସେ ଓଲଟି ମୋତେ ଧମକେଇ ବସିଲ ।"

ମାଆ କହିଲେ—"କିଛି ନୁହଁ ପୁଅ, ସମସ୍ତେ ଆମର ପ୍ରଜା ତ !" ଏମିତ ମାଆପୁଅ କଥା ହେଉଥିଲବେଳେ ତେଣେ ଗୋପୀ ମନ ବାଉଳା ହେଉଥାଏ । ଭାବୁଥାଏ, ଶ୍ରୀକୃଷ୍ଣଙ୍କୁ ଘରେ ବନ୍ଦକର ଦେଇଦିନା, ଗୁଣ୍ଡ ତା'ର ଧଡ଼ଧଡ଼ ହେଉଥାଏ । ଭିତରେ ବନ୍ଦୀ ହେଇ ଶ୍ୟାମସୁନ୍ଦରଙ୍କ ମନ ଖରାପ ତ ହବନାହିଁ । ଭାବୁଥାଏ କବାଟ ଖୋଲିଦେବ ତ ସେ ପଳେଇବେ, ବନ୍ଦକର ରଖିଥିଲେ କଷ୍ଟ ହେବ । ଏଇଆ ଭାବି ସେ ସାମାନ୍ୟ ଟିକଏ ଦୁଆର ମେଲେଇ ଭିତରକୁ ଚାହିଁଲ—ଭିତରେ ଶ୍ୟାମସୁନ୍ଦର ନା ତାଙ୍କର ଗୁଇ; କେହି ବ ନ ଥିଲେ । ଗୋପୀ ଆଶ୍ଚର୍ଯ୍ୟ ହୋଇ ଭିତରକୁ ଗଲ । ଗୁଡ କଣା ହୋଇଥିବାର ଦେଖିଲ । ସବୁ ବୁଝିଗଲ । କେର ଶିଗ୍ରେମଣି କୌଣସି ପ୍ରକାର ଗୁନ୍ଦ କଣାକର ପଳେଇଲେଣି । ତେବେ ଘରେ ପହଞ୍ଚିଲେ ନା ନାହିଁ ଜାଣିବା କଥା । ଏଇଆ ଭାବି ସେ ନନ୍ଦଭବନକୁ ଗଲ । ତାକୁ ଦେଖିଲ ମାତ୍ରକେ ଶ୍ୟାମସୁନ୍ଦର କହିଲେ—ଏଇ ଗୋବର ଗୋରଣୀ, ଇଏ ସବୁବେଳେ ଗୋବର କହୁଛି । ଆଜି ଗୋରେଇଲବେଳେ ଧଇଲାରୁ ମୋ' ସାଙ୍ଗରେ ଲଢ଼ି ବସିଲ । ଗୋବର ତ ଆମର କମ୍ ନାହିଁ । ହେଲେ ସେ ଗୋରେଇ କହୁଛି ବୋଲି ମୋତେ ଭାରି ଖରାପ ଲାଗୁଛି । ଚୋରକୁ ମୋର ଭାରି ଘୃଣା । କାହାକୁ ଚୋରି କରୁଥିବା ଦେଖିଲେ ମୋର ରକ୍ତ ଗରମ ହୋଇଯାଏ ।"

ଏଇଆ ଶୁଣି ମାତା ଯଶୋଦା ହସିବାକୁ ଲଗିଲେ ।

ଗୋପୀ ଆଉ କିଛି କହିଲ ନାହିଁ । ଖାଲି କହିଲ—'ଭଲ କଥା, ଆଉ ଥରେ ଆସିବ । କିଏ ଚୋର ଯେତେବେଳେ ସିନା ଜଣାପଡ଼ିବ ସବୁକଥା !" ସେ ଚାଲିଯିବା ଦେଖି ଶ୍ରୀକୃଷ୍ଣ ତାଳିମାରି ହସିବାକୁ ଲଗିଲେ ।

ତନେ ଆଉ ଜଣେ ଗୋପୀ ଘରକୁ ଗଲେ । ସେ ନୂଆ ବୋହୂ ହୋଇ ଆସିଥିଲ । ତା'ର ଅଳ୍ପ ଣୀ ଅଇଣାଶୁଟିଏ ଥିଲ । ତା'ର ସ୍ୱାମୀ ଆଉ ଶଶୁର, ଶାଶୁ ନ ଥିଲ । ଶ୍ୟାମସୁନ୍ଦର ସେ ଘରକୁ ଯାଇ କହିଲେ—"ଜେଜେମା, ଜେଜେମା ! ମୁକୁନ୍ଦ ଭାଇ ଭାଉଜଙ୍କୁ କେତକୁ ଡକେଇଛନ୍ତି । ତାଙ୍କ ପାଇଁ ଚଲ୍‌ହା ଆଉ ଜଳଖିଆ ନେଇ ଯିବାକୁ କହିଛନ୍ତି ।"

ବୁଢ଼ୀ କହିଲା—"ଜଏ, କାହ୍ନା କରେ ! ତୁ ତାକୁ କୋଉଠି ଦେଖିଲୁ ?"

ଶ୍ରୀକୃଷ୍ଣ କହିଲେ—"ଏଇନେ ସେଇଠୁ ଜଣେ ଆଇଲା ସେ, କହିଲା ମୋତେ ।"

ବୁଢ଼ୀ ବୋହୂକୁ ଚଞ୍ଚଳ ଜଳଖିଆ ନେଇ ଯିବାକୁ କହିଲା । ନୂଆ ବୋହୂ, ସେ ଓଢ଼ଣା ଟାଣି ଚାଲିଗଲା । ତା'ପରେ ତ ଗପ୍ପା ସଫା । ଗୋପପିଲା ହସିବାକୁ ଲାଗିଲେ । କୃଷ୍ଣ ଓଠରେ ଆଙ୍ଗୁଠି ମାରି ଚୁପ୍ କରେଇଲେ । ଧୀରେ ଧୀରେ କହିଲେ—"ଆବେ, ଚୁପ୍ କର । ଏଇଠି ଖାଇଲେ ଖଟରପଟରର ଶବ୍ଦ ହେବ, ବୁଢ଼ୀ ଜାଣିଯିବ । ପାଟିତୁଣ୍ଡ ହୋ-ହଲା କରିବ ; ତେଣୁ ଲହୁଣୀ ନେଇ ପଳେଇବା, ଆଉ ଯମୁନା କୂଳରେ ଭୋଜି କରିବା ।"

ଏଇଆ ବିଚାର କରି ସେମାନେ ଲହୁଣୀ ଗୁଳା ଗୁଳା କରି କଦଳୀ ପତ୍ରରେ ଗୁଡ଼େଇ କାନରେ ବାନ୍ଧି ଚାଲିଲେ । କୌତୁକରେ ସବୁ ବଡ଼ାରୁ ଲହୁଣୀ କାଢ଼ିନେଇ, କାଦୁଅ ପୁରେଇ, ଯେମିତି ଥିଲା ସେମିତି ରଖି, ଉପରେ ଉପରେ ଟିକିଏ ଲେଖାଏଁ ଲହୁଣୀ ବୋଳିଦେଇ ଚାଲିଗଲେ ।

ବୋହୂ ଜଳଖିଆ ଦେଇ ଆସିଲା । ରୋଷେଇ କଲା । ଦି'ପହରବେଳକୁ ତା'ର ଶଶୁର ଆଉ ସ୍ୱାମୀ ଖାଇବାକୁ ଆସିଲେ । ଭୋଜନ କଲାବେଳେ ସେମାନେ ଲହୁଣୀ ମାଗିଲେ । ଏକତ ନୂଆ ବୋହୂ, ତହିଁକି ହାତେ ଲମ୍ବର ଓଢ଼ଣା, ତା'ପରେ ଶଶୁର ଆଗକୁ ଯିବ । ସେ ଓଢ଼ଣା ଟାଣି ଲହୁଣୀ ବଡ଼ା ଟେକି ଆଣିଲା ଆଉ ସେଇ କାଦୁଅକୁ ଲହୁଣୀ ବୋଲି ପରଶି ବସିଲା । ଶଶୁର କହିଲେ—"ବୋହୂ ! ପାଗଳୀ ହେଲୁ ନା କ'ଣ, ଆମେ ଲହୁଣୀ ମାଗୁଛୁ ଆଉ ତୁ କାଦୁଅ ପରଶିବାକୁ ଆଣିଲୁଣି ।

ବୋହୂ ଏହା ଶୁଣି ଦେଇ ଲଜ୍ଜିତ ହେଲା । ସେ କୌଣସି କଥା ବୁଝି ପାରିଲା ନାହିଁ । ସେ ଯାଇ ଆଈଶାଶୁକୁ କହିଲା—"ଜେଜେମା ! ମୁଁ ତ ଆଜି ଲହୁଣୀ ବାହାର କରିଥିଲି କାଦୁଅ କେମିତି ହେଲା !"

ବୁଢ଼ୀ ସବୁ ବୁଝିଗଲା, କହିଲା—"ଆଲୋ ବୋହୂ ! ସେ ନନ୍ଦପୁଅ ଆସିଥିଲା ନା, ସବୁ ତା'ରି କାଣ୍ଡ ହୋଇଥିବ । ମୁଁ କେତେଦିନ ହେଲା ଶୁଣୁଛି ସେ ଘରେ ଘରେ ପଶି ଲହୁଣୀ ଚୋରିକରୁଛି । ଟିକିଏ କ'ଣ ଖଡ଼ଖାଡ଼ ତ ମୁଁ ଶୁଣିଛି । ଭାବିଲି ମୂଷା ହୋଇଥିବ । ହେଲେ କିଏ ଜାଣିଥିଲା ଏମିତି କାଣ୍ଡ । ସେଇ କାଳିଆର ଏ ସବୁ କାଣ୍ଡ । ଆଉ ହାଣ୍ଡିତକ ଦେଖିବୁଟି !"

ଏଇଆ ଶୁଣି ବୋହୂ ଭିତରକୁ ଗଲା । ଦେଖିଲା ସବୁ ହାଣ୍ଡି ଖାଲି । ଏତେ ଟିକେ ବି ଲହୁଣୀ ନାହିଁ । ବୁଢ଼ୀ କହିଲା—ଯିବୁଟି ନନ୍ଦରାଣୀଙ୍କୁ କହି ଆସିବୁ ତା' ପୁଅ ଏମିତି ଉତ୍ପାତ କରୁଛି ବୋଲି ।"

ଅଉ ଜଣେ ବୁଢ଼ୀ ଥିଲା ଭାରି କଳିହୁଡ଼ୀ । କଳି କଜିଆ ନ ହେଲେ ତା' ପେଟରେ ଭାତ ହଜମ ହୁଏନାହିଁ । ସେ ଦିନେ ଅଣ୍ଟିଆ ରହିଯିବ ହେଲେ ବିନା କଳିଗୋଳରେ ଦିନେହେଲେ ରହିପାରିବ ନାହିଁ । ତା'ର ଗୋଟାଏ ବୋଲି ବୋହୂ, ତାକୁ ସେ ସାରାଦିନ ଖଟାଏ, ନିଜେ ବସି ବସି କଥା ବଖାଣୁ ଥାଏ ।

ଶ୍ରୀକୃଷ୍ଣ ଭାବିଲେ—"ଏ କଳିହୁଡ଼ୀ ଘରୁ ଦିନେ ଲହୁଣୀ ଚୋରେଇବା କଥା ।" ଏଇଆ ଭାବି ସେ ଓର ଉଣ୍ଡି ରହିଲେ । ଯେତେବେଳେ ତା' ବୋହୂ ଗରା ଆଉ ଲୁଗାପଟା ନେଇ ଯମୁନାକୁ ଗଲା, ସେତେବେଳେ ସେ ଟିକିଏ ପରେ ତା' ପଛେ ପଛେ ଅାସିଲେ ଅଉ ଧଇଁସଇଁ ହୋଇ ବୁଢ଼ୀକୁ କହିଲେ—"ଦେଖେଇ ଦେଖେଇ ଭାରି ଦୁର୍ଘଟଣାଟେ ଘଟିଗଲା ।"

ଚମକି ପଡ଼ି ବୁଢ଼ୀ କହିଲା—"କ'ଣ ? କ'ଣ ହେଲାରେ ପୁଅ !"

ଶ୍ୟାମସୁନ୍ଦର କହିଲେ—"ମୁଁ ଏଇନେ ଯମୁନାରୁ ଫେରୁଥିଲି, ଭାଉଜ ବି ଗାଧୋଇପାଧୋଇ, ଗରା ମୁଣ୍ଡେଇ, ଲୁଗାପଟା ଧରି ଫେରୁଥିଲେ, ସେତିକିବେଳକୁ ପଛପଟୁ ମାରଣା ଷଣ୍ଢଟେ ଭାଉଜଙ୍କୁ ମାଇଲା କେଆଏ ଯେ ଭୂଇଁକି ମୁହଁମାଡ଼ି ପଡ଼ିଗଲେ । ତାଙ୍କର ଦାନ୍ତ ଭାଙ୍ଗିଗଲା । ମୁହଁରୁ ରକ୍ତ ବାହାରୁଛି । କାନ୍ଦି କାନ୍ଦି କହିଲେ ଯା' ଚଞ୍ଚଳ ଯାଇ ମୋ' ଶାଶୁଙ୍କୁ କହିଦେବ । ଅାଉ ମୁଁ ଦଉଡ଼ି ଆସିଛି । ଶୁଣିଦେଇ ବୁଢ଼ୀ ଦୁଆର ସେମିତି ମେଲା ଛାଡ଼ିଦେଇ ଦଉଡ଼ିଲା । ଏଣେ କୃଷ୍ଣଙ୍କ ସାଙ୍ଗମାନେ ତାଙ୍କର ଚଲାକିରେ ଖିଲ୍ ଖିଲ୍ ହୋଇ ହସି ଉଠିଲେ । ଘରେ ପଶି ମନଇଚ୍ଛା ଲହୁଣୀ, ଦହି ଖାଇଲେ । ମଧୁର ମାଙ୍କଡ଼ଙ୍କୁ ଖୁଆଇଲେ ।"

ଏଣୁ ବୁଢ଼ୀ ଦଉଡ଼ି ଯାଉଥିଲା । ଚୋଖୁ ଦେଖି, ଯମୁନାରୁ ଗରା ମୁଣ୍ଡେଇ ଫେରୁଥିଲା । ବୁଢ଼ୀ ଅାବାକାବା' ହୋଇ କହିଲା—"ବୋହୂ, କେମିତି ପଡ଼ିଗଲୁ ! ଅଧିକ ଆଘାତ ତ ଲାଗିନି !"

ବୋହୂ ଓଢ଼ଣା ଭିତରୁ କହିଲା—"ତମକୁ କିଏ କହିଲା ? ମୋର ତ କିଛି ହୋଇନି ।"

ଏଇଆ ଶୁଣି ବୁଢ଼ୀ ସବୁ ବୁଝିଗଲା । ଏସବୁ ନନ୍ଦଲାଲର କାଣ୍ଡ । ସେ ଦଉଡ଼ି ଆସିଲା ଘରକୁ । ସେତେବେଳକୁ ଆଉ କ'ଣ ଅଛି ! ଖାଲି ଖାଲି ଲହୁଣୀ ହାଣ୍ଡି ଗଡ଼ୁଥିଲା । ବୁଢ଼ୀ ବୋହୂକୁ କହିଲା—"ତୁ ଯା', ଯୁଲୁଟା ମା'କୁ ବି ସାଙ୍ଗରେ ନେଇଯା' । ନନ୍ଦରାଣୀକୁ କହିବୁ, ତା ପୁଅ କେମିତି ଦୁଷ୍ଟାମି ସବୁ କରୁଛି ।"

ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ରୀକୃଷ୍ଣ ଏମିତି ଗୋଟାଏ ନୁହେଁ ଅସଂଖ୍ୟ ମଧୁରରୁ ମଧୁର ଲୀଳା ପ୍ରତିଦିନ ବ୍ରଜ ଭୂମିରେ କରିବାକୁ ଲାଗିଲେ । ଯା ଘରେ ଯୋଉ ଘଟଣା ଘଟେ, ସେଇ ଆସି ସବୁରି ଆଗରେ ବଖାଣେ । ଶ୍ରୀକୃଷ୍ଣ ଏବେ ଖୋଲି ଖୋଲି ଖେଳ

ବସିଲେଣି । କା' ଘରକୁ ପଶି ଯାଇ ତା' ଦୁଧ ଲହୁଣୀ ଖାଇପିଇ ଆସନ୍ତି । ଶୋଇଲା ପିଲାଙ୍କୁ ଚିମୁଟି ଦେଇ ଆସନ୍ତି । କେତେବେଳେ ଖଟରେ ଶୋଇଲା ଗୋପାଳ ଗୋପୀଙ୍କ ଚୁଟି ବାନ୍ଧି ଦେଇ ଦଉଡ଼ିରେ ଗଣ୍ଠି ପକେଇ ଆସନ୍ତି । କେତେବେଳେ ଜଣକ ଘରର ଜିନିଷ ଆଉ ଜଣକ ଘରେ ଥୋଇଦେଇ ଆସନ୍ତି । ସେଇଥିରେ ସେମାନଙ୍କର କଳି କଜିଆ ହେଲେ ସେ ତାଳିମାରି ଦେଖନ୍ତି । ଏପରି ଭାବରେ ସେ ଯେତେବେଳେ ଅଧିକରୁ ଅଧିକ ଉପଦ୍ରବ କରିବାକୁ ଲାଗିଲେ ସେତେବେଳେ ଗୋପୀମାନେ ଏକାସାଙ୍ଗରେ ଯାଇ ନନ୍ଦରାଣୀ ଆଗରେ ତା' ପୁଅର କାଣ୍ଡ କଥା କହି ନିନ୍ଦା କରିବାକୁ ବିଚାରିଲେ । ଏଇ ଉଦ୍ଦେଶ୍ୟରେ ଦିନେ ସେମାନେ ଯାଇ ନନ୍ଦ ପୁରରେ ପହଞ୍ଚିଲେ । ସେମାନଙ୍କ ମନରେ ଆନନ୍ଦ ଭରି ରହିଥିଲା । ସେମାନେ ହୃଦୟ ଦେଇ ଚାହୁଁଥିଲେ, ଶ୍ରୀକୃଷ୍ଣ ଆମ ସାଙ୍ଗରେ ଏମିତି ଦୁଷ୍ଟାମି ବାରମ୍ବାର କରୁଥାନ୍ତୁ; ହେଲେ ଉପରେ ଉପରେ ରାଗର ବାହାନା କରି ମାଆଙ୍କୁ ମଧ୍ୟ କୃଷ୍ଣଙ୍କ କାଣ୍ଡ କଥା କହି ଆନନ୍ଦ ପ୍ରଦାନ କରିବାକୁ ପହଞ୍ଚିଲେ ।"

## ଛପ୍ପୟ

ବ୍ରଜବନିତା ଶ୍ରୀକୃଷ୍ଣ ଲଲିତ ଲୀଲନ ପୈ ରୀଝୀଁ ।
ବିବିଧ ଅତି ଲଟେ କରନ ତବ କଛୁ କଛୁ ଖୀଝୀଁ ।।
ମନ ମହୁଁ ତୋ ଅତି ମୋଦ କ୍ରୋଧଯୁତ ବଦନ ବନାୟୌ ।
ଯଶୁମତି ଢିଁଗ ଚଲି କହହୁଁ ସବନ ମିଲି ମତୋ ଜମାୟୌ ।।
ସଜି ବ୍ରଜକେ ସବ ମିଲି ମୁଦିତ, ଉପାଲମ୍ଭ ଦେବେଁ ଚଲୀ ।
ଗୋକୁଲ କୀ ସବ ଗଲିନ ମହୁଁ, ଖିଲୀ ମନହୁଁ ପଙ୍କଜ କଲୀ ।।

# ଗୋପୀମାନଙ୍କର ଅଭିଯୋଗ

ବତ୍ସାନ୍ ମୁଞ୍ଚନ୍ କ୍ୱଚିଦସମୟେ କ୍ରୋଶସଂ ଜାତହାସଃ ।
ସ୍ତେୟଂ ସ୍ୱାଦ୍ୱତ୍ତ୍ୟଥ ଦଧି ପୟଃ କଳ୍ପିତୈଃ ସ୍ତେୟ ଯୋଗୈଃ ॥
ମର୍କାନ୍ ଭୋକ୍ଷ୍ୟନ୍ ବିଭଜତି ସ ଚେନ୍ନାତ୍ତି ଭାଣ୍ଡଂ ଭିନତ୍ତି ।
ଦ୍ରବ୍ୟାଲାଭେ ସ ଗୃହ କୁପିତୋ ଯାତ୍ୟୁପକ୍ରୋଶ୍ୟ ତୋକାନ୍ ॥

(ଶ୍ରୀ ଭା ୧୦ ସ୍କ, ୮ ଅ, ୨୯ ଶ୍ଳୋକ)

## ଛପ୍ପୟ

ଲଖି ଗୋପିନକୁଁ ମାତୁ କୁଶଲ ପୂଛୀଁ ବୈଠାଇ ।
କର ପାଇଗନ ସବନ କୃଷ୍ଣ କୀ ବାତ ଚଲାଇ ॥
ନହିଁ ହମ ବ୍ରଜମହଁ ରହେଁ କାହ୍ନୁ ଅବ ବହୁତ ସତାବୈ ।
ଘର ଘର ଚୋରୀ କରେ ନତ୍ୟ ତକରାର ମଚାବୈ ॥
ଦୂଧ, ଦହୀ, ନବନୀତ, ଘୃତ ଚୋରୀ ସଖନ ସଁଗ ଖାତୁ ହୈ ।
କହନୀ ଅନକହନୀ କହେ, ଢୀଠ ଭୟୋ ସତବବୁ ହୈ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଗୋପୀମାନେ ଆସି ଯଶୋଦା ମାତାଙ୍କ ଆଗରେ ଅଭିଯୋଗ କରି କହନ୍ତି—ମାଆ ! ତମ ପୁଅ ଅସମୟରେ ବାଛୁରୀମାନଙ୍କୁ ଖୋଲି ଦଉଛି । ଧମକେଇଲେ, ମନାକଲେ ହସି ଦଉଛି । ଚୋରି କରି ଦୁଧ, ଦହି କେଡ଼େ ଖୁସିରେ ଖାଉଛି । ଚୋରି କରିବାକୁ କେତେ ଯେ ଉପାୟ ଖଞ୍ଜି ଜାଣୁଛି । ମାଙ୍କଡ଼ଙ୍କୁ ଖୁଆଉଛି ଯଦି ମାଙ୍କଡ଼ ଖାଇଲେ ନାହିଁ, ତା'ହେଲେ ବଡ଼ା ହାଣ୍ଡି ଦେବ ଭାଙ୍ଗି ଦେଉଛି । ଯଦି କୌଣସି ଜିନିଷ ମିଳିଲା ନାହିଁ ତ ଘର ଉପରେ ରାଗ, ପିଲାଙ୍କୁ ହେଲେ କନ୍ଦେଇ ଦେଇ ପଳଉଛି ।

ପ୍ରେମର ଉପାଳମ୍ଭରେ କହିବା ଲୋକଙ୍କୁ, ଶୁଣିବା ଲୋକଙ୍କୁ ଆଉ ଯାହାକୁ ଗାଳି ଦିଆଯାଉଛି ତାକୁ, ଏମିତି ତିନି ଜଣଙ୍କୁ ସୁଖ ମିଳିଥାଏ । ପ୍ରେମ ଏପରି ଏକ ଜିନିଷ, ଯେଉଁଥିରେ ମିଶିବ ତାକୁ ମଧୁର କରିଦେବ । ବୁଦ୍ଧିମାନ ଯେଉଁଠାରେ ବୁଦ୍ଧିର ପ୍ରୟୋଗ କରିବ ସେଠାରେ ଯଶ ପାଇବ । ଏଇ କଥା ପ୍ରେମର ମଧ୍ୟ । ନିନ୍ଦା କରିବା ଓ

ଶୁଣିବା ସବୁଠାରୁ ବଡ଼ ପାପ; ମାତ୍ର ସ୍ନେହରେ କଗ୍ଗଳ ନିନ୍ଦାଠାରୁ ବଳି ସଂସାରରେ କୌଣସି ପୁଣ୍ୟ ନାହିଁ । ଶ୍ରୀକୃଷ୍ଣ ବେଦର ସାରଗର୍ଭିତ ସ୍ତୋତ୍ରରେ ଯେତେ ପ୍ରସନ୍ନ ହୁଅନ୍ତି ନାହିଁ, ଗୋପ ଗୋପାଙ୍ଗନାଙ୍କ ଗାଳି ଶୁଣି ତା'ଠାରୁ ଅଧିକ ପ୍ରସନ୍ନ ହୁଅନ୍ତି । ଗୋପୀମାନେ ତାଙ୍କୁ ଧୂର୍ତ୍ତ, ଠକ, ଚୋର, ବଞ୍ଚକ, ହୃଦୟହୀନ, କଠୋର; କେତେ କେତେ ଭଲ ଗାଳି ଦିଅନ୍ତି । ସେଥିରେ ସେ କୃତ୍ୟ କୃତ୍ୟ ହୋଇ ଯାଆନ୍ତି । ପ୍ରେମର ଗତି ଏହିପରି ବିଚିତ୍ର ।

ସୂତ କହୁଛନ୍ତି—"ହେ ମୁନିଗଣ ! ସକାଳ ହୋଇ ଗୋପୀମାନେ ନନ୍ଦଭବନକୁ ଗଲେ । ନନ୍ଦରାଣୀ ସେମାନଙ୍କୁ ଆସୁଥିବା ଦେଖିଲେ । ସେମାନେ ନାନାପ୍ରକାର ସୁନା ଅଳଙ୍କାର, ରତ୍ନ ଅଳଙ୍କାର ମଣ୍ଡି ହୋଇ ସୁନ୍ଦର ସୁନ୍ଦର ପାଟ ପୀତାମ୍ବର ପିନ୍ଧି ଇନ୍ଦ୍ରଧନୁରେ ଚମକ ଯାଉଥିବା ବିଜୁଳି ଭଳି ଶୋଭା ପାଉଥିଲେ । ଯଶୋଦାମାତା ତୁରନ୍ତ ଦାସୀମାନଙ୍କୁ କହି ସେମାନଙ୍କ ବସିବା ଲାଗି ସୁନ୍ଦର ସୁନ୍ଦର ଗାଲିଚା ପାରି ଦେବାକୁ କହିଲେ । ପାନ ଭରେଇ ପାଣ୍ଡେଟି ନବାକୁ ଆସି ଦୁଆର ମୁହଁରେ ଠିଆ ହେଲେ । ହସି ହସି ନନ୍ଦରାଣୀ ସେମାନଙ୍କର ସ୍ୱାଗତ ସତ୍କାର କଲେ । ସମସ୍ତେ ଆସି ନନ୍ଦରାଣୀଙ୍କୁ ଓଳଗି ହେଲେ । ନନ୍ଦରାଣୀ ସେମାନଙ୍କୁ ଯଥାବିଧି ଆଶୀର୍ବାଦ ଦେଇ ବସେଇଲେ । ଦାସୀମାନେ ରୁପାଥାଳିରେ ପାନ, ଗୁଆ, ଅଳେଇଚ, ଲବଙ୍ଗ ଆଣି ସେମାନଙ୍କ ଆଗରେ ଥୋଇବାକୁ ଲାଗିଲେ । ଭଲମନ୍ଦ ପଚାରି ଓ ଆଦର ଅଭ୍ୟର୍ଥନା ପରେ ଯଶୋଦା ମାତା କହିଲେ—"ଆଜି ସମସ୍ତେ ମିଶି ଏକାସାଙ୍ଗରେ କେଉଁ କାମ ପାଇଁ ଆସିଛ ? ତୁମର ଯାହା ଯାହା କାମ ଅଛି, କିମ୍ବା କୌଣସି ଦୁଃଖ ଅଛି କୁହ ।"

ସେମାନଙ୍କ ଭିତରେ ସବୁଠୁଁ ଚଞ୍ଚଳା ଗୋପୀ ଜଣେ ଆରମ୍ଭ କଲା—"ରାଣୀ ! ଆମେ ଆପଣଙ୍କଠାରୁ ବିଦାୟ ନେଇ ଯିବୁବୋଲି ଓଳଗି ଜଣାଇବାକୁ ଆସିଛୁଁ ।"

ଆଶ୍ଚର୍ଯ୍ୟ ହୋଇ ନନ୍ଦରାଣୀ ପଚାରିଲେ—"କାହିଁକି, କ'ଣ ଏମିତି ହେଲା କି ? ବ୍ରଜରେ ତମର କି କଷ୍ଟ, ତୁମକୁ କେହି କଷ୍ଟ ଦେଇଥିଲେ, ହଇରାଣ ହରକତ କରିଥିଲେ ମୋ' ଆଗରେ ଖୋଲି କହ; ମୁଁ ବ୍ରଜରାଜଙ୍କୁ କହି ତାକୁ ଦଣ୍ଡ ଦିଆଇବି ।"

ସେଇ ଗୋପୀଟି କହିଲା—"ଆପଣ ତାକୁ ଦଣ୍ଡ ଦେଇ ପାରିବେ ନାହିଁ । ବ୍ରଜରାଜ ବି ଦଣ୍ଡ ଦେଇ ପାରିବେ ନାହିଁ ।"

ନନ୍ଦରାଣୀ ଅଧିକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ବ୍ରଜକୁ ଏମିତି କୋଉ ବଳବାନ୍ ବ୍ୟକ୍ତି ଆସିଲା ଯେ ତାକୁ ପୁଣି ଦଣ୍ଡ ଦେଇ ହେବନାହିଁ । ସେ କିଏ, ତମେ ସବୁ କହୁନା !"

ସେମାନଙ୍କ ଭିତରୁ ଆଉ ଜଣେ କହିଲା—"ସେ ଆଉ କେହି ନୁହଁ—ତମ ଗେହ୍ଲାପୁଅ କୃଷ୍ଣ ।"

ମାଆ କହିଲେ—'ମୋ ପୁଅ ତ ଏଡ଼େ ବଢ଼ଟେ । ସେ ପୁଣି ତମମାନଙ୍କର କୋଉ ଅପରାଧ କଲା ?"

ଗୋପୀଟିଏ କହିଲା—"ଛୋଟ ହେଲେ କ'ଣ ହେଲା, ତା'ର କାର୍ଯ୍ୟକଳାପ ସବୁ ଶୁଣିଲେ ଯାଇଁ ବୁଝି ପାରିବ । ତମ ଆଗରେ ଥିଲେ ଭାରି ସରଳ ଜଣା ଯାଉଛି ।"

ମା' କହିଲେ—"ମୁଁ ଆଗ ଶୁଣେ, ସେ କରିଛି କ'ଣ ?"

ଗୋପୀଟିଏ କହିଲା—"ଦେଖ ମାଆ ! ଆମ ବାଛୁରୀଙ୍କୁ ଖୋଲିଦିଏ ।"

ମା' କହିଲେ—"ସେ କ'ଣ ଖରାପ କଲା । ଦୁହିଁଲାବେଳେ ତମେ ବି ତ ଖୋଲି ଦିଅ । ସେ ତମର କାମ କରି ଦେଉଛି; ଅଥଚ ତମେ ତାକୁ ଖରାପ କହୁଛ ।"

ଗୋପୀ କହିଲା—"ସେ ଦୁହିଁଲାବେଳେ ଖୋଲନ୍ତା ତ ଭଲକଥା । ସେ ଅସମୟରେ ଖୋଲି ଦେଇ ପଳେଇବ । ଯେତେବେଳେ କି ଦୁଧ ଦୁହିଁବା ବେଳ ନୁହଁ । ବାଛୁରୀ ପଳକ ସବୁ ଦୁଧ ପିଇ ଯିବେ, ଆଉ ଆମେ ସବୁ ଅନେଇ ରହିଥିବୁଁ । ଆମେ ଏଣେ ହାଉଯାଉ ହେଲାବେଳକୁ ସେ ତା'ର ଘରେ ପଶି ଲହୁଣୀ ଖିଆରେ ଲାଗିଥିବ ।"

ମାଆ କହିଲେ—"ଆଲୋ ! ସିଏ ବି ତ ତମର ଛୁଆ ଭଳି । କ'ଣ ହେଲା ସେଇଠୁ ପିଲାଙ୍କର ତ ଚଞ୍ଚଳ ସ୍ୱଭାବ । ତାକୁ ଟିକିଏ ଡରେଇ ଧମକେଇ ଆକଟ କରନ୍ତ ଯଦି ସେ ତା'ର ଆପେ ଆପେ ସୁଧୁରି ଯାଆନ୍ତା ।"

ଗୋପୀଟିଏ ମୁହଁ ମୋଡ଼ି କହିଲା—"ଅଲୋ ମା' ! ତମେ ଉପ୍ରଧନ୍ଦା କଥା କହୁଛ; ହେଲେ ତା' ଉପ୍ରଣ ଯେ ଦେଖିଛି ସେଇ ଏକା ଜାଣେ । ଆମେ ରାଗିଲେ ସେ ଏମିତ ଖିଲଖିଲ ହୋଇ ହସେ ଯେ ଆମର ସବୁ ରାଗ କର୍ପୂର ଭଳି ଉଡ଼ିଯାଏ । ଆମେ ଇଚ୍ଛା କଲେ ବି ହସ ରୋକି ପାରୁନା । ତା' ହସରେ ଏମିତ ଯାଦୁ ଅଛି ଯେ, କେହି ତା' ଆଗରେ ରାଗି ପାରିବେ ନାହିଁ ।"

ନନ୍ଦରାଣୀ କହିଲେ—"ଦେଖ, ତମେ ସବୁ ଜାଣିଛ, ମୋ' ଘରେ ତ ଲହୁଣୀ କମ୍ ନାହିଁ । ଛୋଟ ପିଲା, ଯେତେବେଳେ ଯଦି ଲହୁଣୀ ଦେଖି ମନ କରୁଥିବ ତେବେ ତା' ହାତରେ ଟିକିଏ ଟିକିଏ ଦେଉଥିବ ।"

ଗୋପୀ କହିଲା—"ଏମିତ କ'ଣ କହୁଛ ଯଶୋଦା ରାଣୀ ! କୋଉଟା ଆମର ? ତମର ତ ସବୁ । ଆମ କଥା ଈଶ୍ୱର ଜାଣନ୍ତି । ଲହୁଣୀକୁ ଖାଇବାକୁ ଆମେ ମନା କରୁନୁ; ପେଟ ପୂରେଇ ସେ ଖାଉ ;କିନ୍ତୁ ତାକୁ ଦେଲେ ସେ ଖାଏନି । କହେ—ମୋତେ ଲହୁଣୀ

ଭଲ ଲାଗେନାହିଁ । କାନ୍ହୁ ଘରେ କଳା ଲହୁଣୀ ବେଶ୍ ଭଲ ଲାଗେ । ଘରେ କରେ ଦୁଧ, ଦହି, ଲହୁଣୀ ସବୁ ଖାଏ ।"

ମାଆ କହିଲେ—"ତମେ ସବୁ ଗୋଟାଏ କଥା କର, ଦୁଧ, ଦହି, ଲହୁଣୀ ସବୁତକ ଉଚ୍ଚ ଶିକାରେ ରଖ ।"

ଗୋପୀଟିଏ କହିଲା—"ମାଅ ! ଅମେ ସବୁ କିଛି ଉପାୟ କରି ପରଖି ଦେଖିଲୁଣି । ତ ଏ ଘରେ ବଦ୍ୟାରେ ଏତେ ପାରେ ଗମ ଯେ କେଡ଼େ କେଡ଼େ ଲୋକର କାନ କାଟି ଦେବ । ବେଗ୍ଭ ଭଲ ତା'ର ନାକ । ଏମିତ ନାକ ଯେ ଯେତେ ଦୂରକୁ ହେଲେ ବ ଗନ୍ଧବାରେ କୋଉଠି କ'ଣ ଅଛି କହିଦେବ । ସିଏ ଏମିତ ବାଡ଼ିଟିଏ ତିଆରି କରି ରଖିଛି ଯେ ଦୁଧ ଦେଖିଲେ କେତେ ବାଗରେ ବଡ଼ା କଣା କରିଦେବ । ଧାର ଧାର ଦୁଧ ପଡ଼ିଲେ ମୁହଁ ଲଗେଇ ପିଇଯିବ । ଲହୁଣୀ କାଢ଼ିବା ହେଲେ ଜଣକ ଉପରେ ଜଣେ ତା' ଉପରେ ଆଉ ଜଣେ ଏମିତ ଚଢ଼ି ଚଢ଼ ଉପରୁ ହାଣ୍ଡି ଓହ୍ଲେଇ ପକାନ୍ତି ଆଉ ଖାଇ ଜାଅନ୍ତି ।"

ମାଆ କହିଲେ—"ଆଲୋ, ସବୁ ପିଲା ତ ଆମର । ଖାଉଛନ୍ତି ତ ଖାଆନ୍ତୁ ! କେତେ ଖାଇବେ ।"

ଗୋପୀଟିଏ କହିଲା—"କେହି ସେମାନଙ୍କୁ ଖାଇବାକୁ ମନା କରୁନ । ସେ ପେଟ ପୂରେଇ ଖାଉ, ସାଙ୍ଗମାନଙ୍କୁ ଖୁଆଉ ଆମର ମନାନାହିଁ । ହେଲେ ସିଏତ ସଦାବେଳେ ଖୋଳ ଦେଉଛି । ମାଙ୍କଡ଼ ଗୁଡ଼ାଙ୍କୁ ଏମିତ ଶିଖେଇ ରଖିଛି ଯେ ତାଙ୍କୁ ଦେଖିଲା ମାତ୍ରକେ କୁଆଡ଼ୁ କୁଆଡ଼ୁ ଆସି କୁଦି ଯାଉଛନ୍ତି ଆଉ ଧାଡ଼ିବାନ୍ଧି ବସି ପଡ଼ୁଛନ୍ତି । ସିଏ ମେଣ୍ଟା ମେଣ୍ଟା ସେଇମାନଙ୍କୁ ଦେଉଛି । ପେଟର ତ ପୁଣି ଜାଗା ଅଛି, ମାଙ୍କଡ଼ ଖାଇଲେ ବ କେତେ ଖାଇବେ । ଆଉ ମାଙ୍କଡ଼ଗୁଡ଼ା ଖାଇ ନ ପାରିଲେ ଗାଳିଦିଏ । କେମିତ ପୋଡ଼ାମୁହିଁ ଲହୁଣୀ ଯେ ମାଙ୍କଡ଼ ବ ଖାଇବାକୁ ମନା କରୁନାହିଁ । ଆଉ ତା'ପରେ ରାଗି ଅଗଣାରେ ହାଣ୍ଡି କଣ୍ଢେଇ ଭାଙ୍ଗିବା ଆରମ୍ଭ କରିଦିଏ ।"

ଯଶୋଦା କହିଲେ—"ତମେ ଗୋଟାଏ କାମ କର । ବାହାରେ ରଖନାହିଁ, ଲୁହା ବାକ୍ସରେ ବନ୍ଦ କରି ରଖି ତାଲା ପକାଇଦିଅ ।"

ଗୋପୀ କହିଲା—"ସେ ସବୁ ବ କରି ଦେଖିଲୁଣି । ତା'ର ବ କୌଣସି ଫଳ ହେଲା ନାହିଁ । ପହିଲେ ଆସି ସାଙ୍ଗମାନଙ୍କ ସାଙ୍ଗରେ ସାରାଘର ଖୋଜି ପକାଏ । ଘରେ କିଛି ନ ପାଇଲେ ଘର ଉପରେ ରାଗ । ଏ ଘର ହିଁ ଦୁଷ୍ଟ । ଅଶୁଭ ଘର । ଯୋଉ ଘରେ ଦୁଧ, ଦହି, ଲହୁଣୀ, ଘିଅ ନାହିଁ, ସେମିତ ଘରର ବ୍ରଜରେ ରହିବା ଉଚିତ ନୁହଁ ।"

ଯଶୋଦା ମାତା କହିଲେ "ଆଲୋ, ତମେମାନେ ସବୁ ଯୁବତୀ । ଆଉ ମୋ' ପୁଅ ତ ବଚ୍ଚେ ପିଲା । ତମେ ସବୁ ଯୁବତୀ ବୟସ ଲାଗି ପୁଅକୁ ଥଟ୍ଟା ପରିହାସ କରୁଥିବ ।

ମୋ' ପୁଅଟି ବି ଅବଶ୍ୟ ଟିକିଏ ଚଗଲା, ହେଲେ ତମେ ସବୁ ଯେତେକଥା ବନେଇ ଚୁନେଇ, ବଢ଼େଇ ଚଢ଼େଇ କହୁଛ, ମୋର ତ କାହିଁ ବିଶ୍ୱାସ ହଉନି । ତାଳି ଦି'ହାତ ହେଲେ ବାଜିବ କିନା ! ତମେ ସବୁ ତା' ସାଙ୍ଗରେ ଅଛ । ପରିହାସ ଛାଡ଼ି ଦିଏ ବଲେ ସୁଧୁରି ଯିବ ।"

ଗୋପୀ କହିଲେ—"ମାଆ ! ଏକଥା ଆମକୁ ଆଗରୁ ଜଣା ଯେ ଯେତେ ହେଲେ ବି ତମେ କୃଷ୍ଣ ପକ୍ଷ ନେଇ କହିବ । ଆଉ ଆମ କଥା ଉପରେ ବିଶ୍ୱାସ କରିବ ନାହିଁ । ବିଶ୍ୱାସ କର ବା ନକର ପଛରେ ଶୁଣି ଯାଅ, ତେଣିକି ଯାହା ମନ ତାହା କରିବ ।"

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଏହା କହି ସେମାନେ ମାତାଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଆହୁରି ଆଉ ଚଗଲାମି ଦୁଷ୍ଟାମି କଥା କହିବାକୁ ଲାଗିଲେ । ମୁଁ ସେ ସବୁ ପରେ କହିବି ।"

## ଛପ୍‌ପୟ

ଚୁପକେ ଘର ମହଁ ଘୁସେ ଘରେ୍ୟା ଦଧି ମାଖନ ପାବେଁ ।
ସଂଗୀ ସାଥୀ ମୋର ବାନରନୀ ତୁରତ ଖବାୱେଁ ॥
ଯବ ନ ମିଲହୀ ନବନୀତ କୁପିତ ହ୍ୱୈ ମଟୁକୀ ଫୋରେ ।
ପଟକେ ପୁରତନ ପାତ୍ର ଲଇ ଆଙ୍ଗନ 'ମହ ତୋରେ ॥
ପକରେଁ ଗୋପୀ ତୁରତ ତେ, ଲେଁ ଛୋରନ ସଙ୍ଗ ଭଗତୁ ହ୍ୱୈ ।
ଘରମହଁ ଆଗି ଲଗାଇ କେ, ମାର ଠଠ କୋ ହସତୁ ହ୍ୱୈ ॥

❀

## ଶ୍ରୀକୃଷ୍ଣଙ୍କ ଦୁଷ୍ଟାମି

ହସ୍ତାଗ୍ରାହ୍ୟେ ରଚୟତି ବିଧିଂ ପୀଠକୋଲୂଖଲାଦ୍ୟୈ
ଶ୍ଛିଦ୍ରଂ ହ୍ୟନ୍ତର୍ନିହିତବୟୁନଃ ଶିକ୍ୟାଭାଣ୍ଡେଷୁ ତଦ୍‌ବିତ୍ ॥
ଧ୍ୱାନ୍ତାଗାରେ ଧୃତମଣିଗଣଂ ସ୍ୱାଙ୍ଗମର୍ଥପ୍ରଦୀପମ୍ ।
କାଲେ ଗୋପ୍ୟ ଯର୍ହି ଗୃହକୃତ୍ୟେଷୁ ସୁବ୍ୟଗ୍ରଚିତ୍ତାଃ ॥

(ଶ୍ରୀ ଭା ୧୦ସ୍କ, ୮ ଅ, ୩୦, ଶ୍ଲୋକ)

## ଛପ୍‌ପୟ

ଜିହ୍ନ ଛୋଟୋ ହୈ ନହୀଁ ଛୋକର ଖୋଟୋ ଭାରୀ ।
ମୁହଁ ଫଟ ଅଛ ଇ ଭୟୋ ଦେଇ ଛଟତ ଇ ଗାରୀ ॥
ଛୀଁକେ ପେ ଚଢ଼ି ଜାଇ ଜାନ ଦଧି ମାଖନ ଜାବେ ।
ଚୋରୀ ବଦ୍ୟା ନପୁଣ ବବଧ ବଧି ଯୁକ୍ତି ଲଗାବେଁ ॥
କବହୁଁ ବାବାଜୀ ବନେ, ଛୋରୀ ହୁ ବନ ଜାତ ହୈ ।
ମନସେ ବଲ୍ଲୀ କେ ସରସ, ଘୁସି ଘରମହଁ ଦଧି ଖାତ ହୈ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଗୋପୀମାନେ ଯଶୋଦାମାତାଙ୍କୁ କହୁଛନ୍ତି—"ମାଆ, ଯଦି ଦହି ଲହୁଣୀ ଉଚ୍ଚା ଜାଗାରେ ଥିବ ଆଉ ତା'ର ହାତ ପାଇବ ନାହିଁ, ତାହେଲେ ସେ ନାନା ପ୍ରକାର ଉପାୟ କରିବ । ପୀଢ଼ିକା, ଉଦୂଖଳ ଆଦି ରଖି ସେ ଯାଏଁ ପହଞ୍ଚି ଯିବ । ତଥାପି ବି ପହଞ୍ଚି ନ ପାରିଲେ ଶିକାରେ ଥିବା ଭାଣ୍ଡମାନଙ୍କର କଣାକ ଜାଣି ତଳୁ କଣା କରି ଦେବ । ଯଦି ଅନ୍ଧାର ଘରେ ରଖିବ, ତେବେ ତା' ଦେହର ମଣି ଖଚିତ ଅଳଙ୍କାର ହିଁ ସବୁ ଆଲୋକିତ କରିଦେବ । ଅଳଙ୍କାର କଥା ଛାଡ଼ । ତା'ର ଦେହ ଏତେ ପ୍ରକାଶବନ୍ତ ଯେ ଦୀପ ଭଳି କାମ କରେ । ସେ ଏସବୁ ଦୁଷ୍ଟାମି ଯେତେବେଳେ କରେ ସେତେବେଳେ ଆମେ ସବୁ ନାନାବି ଘରକାମରେ ଲାଗିଥାଉ ।"

ସୁଖ ଶୁଣେଇଲେ ବଢ଼େ, ଦୁଃଖ ଶୁଣେଇଲେ କମେ । ଏହି ମନୁଷ୍ୟ ପ୍ରାଣୀକୁ ଈଶ୍ୱର ଏଭଳି ଭାବରେ ଗଢ଼ିଛନ୍ତି ଯେ ତା'ର ଶୁଣେଇବାର ଆବଶ୍ୟକତା ଲାଗି ରହିଥାଏ । ଆମକୁ ଆପଣାର ମନକଥା ଆତ୍ମୀୟସ୍ୱଜନଙ୍କୁ କହିଲେ ସୁଖ ମିଳେ । ଆପଣା ମନର ଭାବକୁ ଖୋଲି ଦେଇ ପାରିଲେ ଏକ ପ୍ରକାର ସୁଖାନୁଭୂତି ମିଳିଥାଏ । କିଏ କହି ଦେଇ, କିଏ ଲେଖି ନିଜର ମନୋଭାବ ପ୍ରକାଶ କରିଥାନ୍ତି । ଅନେକ ଯାହାକୁ ଭଲପାଉ ତା' ସମ୍ବନ୍ଧରେ କିଛି ନ କହି ରହି ପାରୁନା । ସିଧା ହେଉ, ବଙ୍କେଇ ହେଉ ଆମେ କହିବାକୁ ମନାକରୁଁ । କଥା ଏମିତି ବି ଅଛି ଯାହା ଶୁଣିବାକୁ ମିଠା ଭଳି ଲାଗୁଥିଲେ ମଧ୍ୟ ବାସ୍ତବ ପକ୍ଷରେ ତାହା ନିନ୍ଦା । ସେଭଳି ମଧ୍ୟ ଅଛି ଯାହା ଗାଳିଭଳି ମନେହେଲେ ହେଁ, ତାହା ଭିତରେ ଅନନ୍ତ ସ୍ନେହ ଭରି ରହିଥାଏ । କାମୀ ପୁରୁଷ କାମିନୀମାନଙ୍କର କଥା କହେ । ଭକ୍ତ ଭଗବାନଙ୍କ କଥା କହେ । ସଂସାରୀ ମଣିଷ ସଂସାର କଥା ହିଁ କହିଥାଏ । ସେହି କହିବା ଲୋକ ଧନ୍ୟ, ଯେ ପ୍ରିୟତମର କଥା ହିଁ କହିଥାଏ । ସେହି ଶୁଣିବା ଲୋକେ ମଧ୍ୟ ଧନ୍ୟ; ଯେଉଁମାନେ ଅତି ଆଦରରେ, ଆଗ୍ରହରେ ଆପଣାର ପ୍ରିୟତମର ପ୍ରସଙ୍ଗ ଶୁଣନ୍ତି ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଗୋପୀକାମାନେ ଯଶୋଦାମାତାଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଦୁଷ୍ଟାମି ବିଷୟରେ ବର୍ଣ୍ଣନା କରୁଥାନ୍ତି । ସେତିକିବେଳେ ଶ୍ୟାମସୁନ୍ଦର ଆସି ମାଆ କୋଳରେ ବସି ପଡ଼ିଲେ । ତାଙ୍କୁ ଦେଖିଲା ମାତ୍ରକେ ଗୋପିକାଙ୍କର ହୃଦୟ ଆହ୍ଲାଦ ଢେର ବଢ଼ିଗଲା । ଶ୍ୟାମ ମା'ଙ୍କର ସ୍ତନରେ ଆଉଜି, ତାଙ୍କର ପଣତ କାନିରେ ମୁହଁ ଲୁଚେଇ ରହିଥିଲେ । କେତେବେଳେ କେମିତି ମାଆଙ୍କୁ ଲୁଚେଇ ନାଲ ଶାଢ଼ୀ ଭିତରୁ ଗୋପୀମାନଙ୍କୁ କଣେଇ କଣେଇ ଗୁହୁଁଥିଲେ । ସେତେବେଳେ ଏଭଳି ମନେ ହେଉଥିଲା ଯେଭଳି ମେଘରୁ ଶରତ ପୂର୍ଣ୍ଣଚନ୍ଦ୍ର ଉଙ୍କି ମାରୁଛି ।" ସମସ୍ତଙ୍କର ହୃଦୟ ତ ପ୍ରେମାପ୍ଲୁତ ହୋଇ ରହିଥିଲା; ସେମାନେ ଯଶୋଦାଙ୍କୁ କହିବାକୁ ଲାଗିଲେ ।"

ନନ୍ଦରାଣୀ ! ତମ ପୁଅର ଗୋଟିଏ କଥା ଥିଲେ ଭଲ କଏ କହୁ କହିପାରନ୍ତା । ସେ ତ ସବୁଦିନ ନୂଆ ନୂଆ ପ୍ରକାରର ଖେଳଲୀଳା କରୁଛନ୍ତି । ମୁଁ ଦିନେ ଘରି ପାଖ ଯାଉଥିଲି । ମୁଁ ଗୋବର ଏକାଠି କରୁଥିଲି । ସେ ଆସି କହିଲେ—"ଭାଉଜ ! ନମସ୍କାର !"

ମୁଁ କହିଲି—"ହଜାରେ ବର୍ଷ ପରମାୟୁ ହେଉ ଲାଲ ! କହ କୋଉ କଥାର ନମସ୍କାର ।"

ସେ କହିଲେ—"ନମସ୍କାର କରିବା କ'ଣ ପାପ ?"

ମୁଁ କହିଲି—"ପାପ ନୁହଁ । ତେବେ ତମର ନମସ୍କାର କେମିତି ଟିକିଏ ରହସ୍ୟମୟ ମନେ ହେଉଛି । କୁହ, ଆଜି କୋଉ ଘରେ ଚଢ଼ଉ ହବ ?"

ସେ ଭାରି ସରଳ ଭଙ୍ଗୀରେ ଧୀରେ ଧୀରେ କହିଲେ—"ଚଢ଼ଉ କେମିତି ଭାଉଜ !"

ମୁଁ କହିଲି—"ଭାରି ସରଳ ସୁନାପିଲା ଦେଖେଇ ହେଉଛ । କହନ, ଆଜି କୁଆଡ଼େ ଚୋରେଇ ଯିବାକୁ ନାହିଁ ନା !"

ମୋ'ଠୁ ଏତକ ଶୁଣିଲା ମାତ୍ରକେ ସେ ରାଗିଗଲେ, କହିଲେ—"ତମେ ଚୋରୁଣୀ, ତମ ଘଇତା ଚୋର ! ମୁଁ କୋଉଦିନ ଚୋରେଇଥିଲି ତମର !"

ମୁଁ କହିଲି—"ମୁଁ ଏମିତି ତମର ଧମକଣରେ ଡରିଯିବି ନା !"

ତା'ପରେ ସେ କହିଲେ—"ମୁଁ ଏଯାଏଁ ଚୋରଉ ନ ଥିଲି ; ହେଲେ ତମେ ମୋତେ ଚୋର କହୁଛ ତା'ହେଲେ ନିଶ୍ଚୟ ଚୋରେଇବି ।"

ମୁଁ କହିଲି—ଦେଖାଯିବ । ସେତେବେଳକୁ ମୁଁ ସାବଧାନ ହୋଇ ରହିଲି । ତା'ପର ଦିନ ବଡ଼ିଚୁ ଝିଅଟିଏ ଆସି କହିଲା—"ମାଈ ତମକୁ ଆଈ ଡକେଇଛି ।"

ମୁଁ ତାକୁ ପଚ୍ଚରିଲି—"ତୁ କଏ କଲେ ଝିଅ !"

ସେ କହିଲା—"ମାଉଁ ! ତମେ ଜାଣିନ, ପିପ୍‌ପଲାତଳ ଶାମା ମୋର ଆଈ !"

ମୁଁ କହିଲି—"ଆରେ ତୁ ତା'ହେଲେ ବସନ୍ତ ଝିଅ । ଭଲ ··ରହ ମୁଁ ତୋ' ଆଈ ପାଖକୁ ଯିବ । ହେଲେ ତୁ ଏଇଠି ଥିବୁ । କଳା ହେଇ ପିଲାଟିଏ, ନନ୍ଦପୁଅ ଯେମିତ ଆସି ଘରେ ନ ପଶେ । ଘରେ ବୋହୂ ଏକୁଟିଆ ଅଛ ।"

ଝିଅଟି ଖାଲି ଚଳାଖ ଜଣା ପଡ଼ୁଥିଲା । ସେ କହିଲା—"ମାଉଁ, ମୁଁ କାଲି ଗାଆଁରୁ ଆସିଛି । ଶୁଣିଛି ନନ୍ଦପୁଅ ଲହୁଣୀ ଚୋରିଏ । ମୁଁ ତାକୁ ଜାଣେ । ତମେ ନ ଫେରିବା ଯାଏଁ ମୁଁ ଏଇଠି ଜଗି ବସୁଛି ।"

ତା'ଠୁ ଏମିତ ଶୁଣି ମୁଁ ଚାଲିଗଲି । ଶାମା ଖୁଡ଼ୀ ଘରେ ପହଞ୍ଚି ପଚ୍ଚରିଲାରୁ କହିଲା—"ମୁଁ କେତେବେଳେ ଡକେଇ ପଠେଇଲି !"

ମୁଁ କହିଲି—"ବସନ୍ତୀ ଝିଅକୁ ପଠେଇନ ଏଇନେ ? ମୁଁ ତାକୁ ଘର ଜଗେଇ ଆସିଛି ।"

ସେ କହିଲା—"ବୋହୂ ! ତୁ ଖାଙ୍ଗଫାଙ୍ଗ ଖାଇଛୁ କି ! ବସନ୍ତୀ ତ ତା' ଶାଶୁ ଘରେ । ତା'ର ଝିଅ କୁଆଡ଼ୁ ଆଇଲା । ତା'ର ତ ଗୋଟିଏବୋଲି ପୁଅ ।"

ମୁଁ ଏଥର ବୁଝିଗଲି । ଇଏ ସବୁ ସେଇ ନଟ କୁଟିଆର ବୁଦ୍ଧି । ମୁଁ ଘରକୁ ଦଉଡ଼ି ଆସିଲି । ଦେଖିଲି ପିଲା ପଞ୍ଚାଏ ଢବ୍ୟ ଆଗ୍ରମରେ ଲହଣୀ ଭୋଜନ ପକେଇ ଚାଲିଛନ୍ତି । ଆଉ ସେ ଝିଅଟି ମାଙ୍କଡ଼ଙ୍କୁ ମେଞ୍ଚା ମେଞ୍ଚା କରି ଲହୁଣୀ ଦଉଛି । ମୁଁ ଦୂରରୁ ଥାଇ କହିଲି—"କାହ୍ନା ! ରହ ଦେଖୁଛି । ସେତକ ବେଳକୁ ମୁହଁ ମୋଡ଼ି, ଅଣ୍ଟା ଭିଡ଼ି ଇଏ କହିଲେ—ନମସ୍କାର ଖଉଜ ! ଆଉ ଚୋର ବୋଲି କହିବ ନାହିଁଟି !"

କହିଦେଇ ସେ ସାଙ୍ଗମାନଙ୍କ ସହିତ ଚାଲିଗଲେ । ମୁଁ ଘରେ ଆସି ଦେଖିଲି ଦୁଧ, ଦହି, ଲହୁଣୀ ସବୁ ହାଣ୍ଡି ମେଲା । ପୁଅ ଝୁଲଣାରେ ପଡ଼ି ପଡ଼ି କାନ୍ଦୁଛି । ବୋହୂ ଖଣ୍ଟରେ ବନ୍ଧା ହୋଇ ଚିହିଛି । ସେତେବେଳେ ଯାଇ ବୁଝିଲି, ଝିଅ ନୁହ ପୁଅଟିଏ । ଏଇ ତମର କଥା ନ ଜାଣିଲା କାହ୍ନା !

ନନ୍ଦରାଣୀ ହସି ହସି କହିଲେ—"ତୁ କେମିତକା ଝିଅ ବା ! ଝିଅ ପୁଅ ବାରି ପାରୁନୁ । ମୋ' ପୁଅକୁ ଝିଅ କହୁଛୁ ।"

ଏହା ଶୁଣି ଆଉ ଜଣେ କହିଲା—"ତମର ପୁଅ ହେଉ କି ଝିଅ ହେଉ, ସିଏ କଳ୍ପ ଚୋର !"

ଯଶୋଦା ମାତା ପଚାରିଲେ—"କେବେ ତୋ' ଘରେ ପଶି ଚୋରି କଲାଣି ।"

ସେ କହିଲା—"ମୋ' କଥା ଶୁଣ, ଗଲା ମାଘରେ ତ ମୁଁ ଶାଶୂ ଘରକୁ ଆସିଛୁ । ଦଶବର୍ଷ ତଳେ ବାହା ହୋଇ ପଢ଼ିଲେ ଯେତେବେଳେ ଅସିଲି ସେତେବେଳେ ସ୍ୱା'ଙ୍କୁ ତମ କୋଳରେ ଦେଖିଥିଲି । ଏବେ ଆସିଲାରୁ ଶାଶୂ କହିଲେ—"ଦେଖ ବୋହୂ ! ସେ ଯଶୋଦା ପୁଅକୁ ସାବଧାନ ଥିବୁ । ସେ ସବୁରି ଦୁଧ, ଦହି, ଲହୁଣୀ ଚୋରେଇ ଖାଇଯାଏ ।"

ମୁଁ କହିଲି—"ମା' ତମେ ଚିନ୍ତା କରନାହିଁ । ମୁଁ ମୋ' ବାପଘରୁ ନନ୍ଦଲାଲର ଚୋରି କଥା ଶୁଣି ଆସିଛୁ । ସେ ଏଠି କଦାପି ଚୋରି କରିପାରିବେ ନାହିଁ ।"

ଶାଶୂ କହିଲେ—"ବୋହୂ ! ସେ ଭାରି ଚଳଖ । ଚୋରି ବିଦ୍ୟାରେ ଏତେ ଧୁରନ୍ଧର ଯେ ଚୁପ୍‌ଚାପ୍ ଯେତେବେଳେ ଘରେ ପଶିଯାଏ, ତାକୁ କେହିହେଲେ ଧରିପାରନ୍ତି ନାହିଁ ।"

ମୁଁ କହିଲି—"ମା' ତମେ ଆଦୌ ଚିନ୍ତା କରନାହିଁ, ମୁଁ ତାକୁ ଯେମିତି ହେଉ ଧରିବି ।"

କେଜାଣି କାହିଁକି ଯେ ସେ ପାଖ ପଡ଼ିଶା ଘରେ ଚୋରି କରିବାକୁ ଅସନ୍ତି ମାତ୍ର ମୋ' ଘରକୁ ଆସନ୍ତି ନାହିଁ । ତେଣୁ ମୁଁ ଗର୍ବ କରୁଥାଏ, ସେ ମୋ' ଘରୁ ଚୋରେଇ ପାରିବେ ନାହିଁ ।"

ମୁଁ ଦିନେ ତାଙ୍କୁ ଏକୁଟିଆ ଆସୁଥିବା ଦେଖିଲି । ତାଙ୍କର ଏଣେତେଣେ ଚାହିଁବାରୁ ଜଣାପଡ଼ୁଥାଏ ଯେ ସେ କଷ୍ଟରୁ ଓର ଉଣ୍ଡି ରହିଛନ୍ତି । ସେତେବେଳେ ମୋ' ଶାଶୂ କ୍ଷେତକୁ ଯାଇଥିଲେ । ମୁଁ କବାଟ ଖୋଲି ଘରେ ଗୋଟାଏ ଅନ୍ଧାରୁଆ କ'ଣ ଦେଖି ଲୁଚି ରହିଥାଏଁ । ସେ ଏଣେତେଣେ ଚାହିଁଲେ । ଖଣ୍ଡି କାଶ ମାରିଲେ । ଡାକିଲେ—"ଖୁଡ଼ୀ ! ଖୁଡ଼ୀ ! ନାହିଁ ନା କ'ଣ ? ମୁଁ ଭାବିଲି ସେ ମୋ' ଶାଶୂ ନ ଥିବା ବେଳକୁ ଯେମିତି ଜାଣିଥିଲେ । ପୁଣି କହିଲେ—ଭାଉଜ ! କବାଟ ଏମିତି ଖୋଲା କ'ଣ ରଖିଛ !"

ମୁଁ ଘର ଭିତରେ ଲୁଚି ରହିଥାଏଁ । ସେ ଧୀରେ ଧୀରେ ଘର ଭିତରେ ପଶିଲେ । ମୁଁ ଆଗରୁ ଲହୁଣୀ ହାଣ୍ଡିଟି ତଳେ ରଖି ଦେଇଥାଏଁ । ସେ ସେଥିରୁ ଚଟାପଟ୍ ଗୋଟାଏ ମାରିଲେ । ଆଉ ମେଞ୍ଚାଏ ହାତରେ ଧରି ଏଣେତେଣେ ଚାହିଁ ପଳେଇବାକୁ ବସିଛନ୍ତି, ମୁଁ ଦଉଡ଼ି ଆସି ଚଟ୍‌କନା ହାତ ଧରିନେଲି । କହିଲି—"କ'ଣ ଲାଲ ! ତମେ ଏ ଘରକୁ ଆଉସବୁ ଗୋପୀ ଘର ପରି ପାଇଲ ନା ?"

ଏଇଆ ଶୁଣି ସେ ଡରିଗଲେ । କାନ୍ଦ କାନ୍ଦ ହୋଇ କହିଲେ—"ଭାଉଜ ! ମୁଁ ତମ ଗୋଡ଼ ଧରୁଛୁ, କେହିବି ହେଉଛୁ ଆଉ କେବେହେଲେ ଏ ଘରକୁ ଆସିବି ନାହିଁ । ଏଥରକ ମୋତେ ଛାଡ଼ ।"

ମୁଁ କହିଲି—"ବୁଝିଲି କାହ୍ନା ! ଏଣିକି ତମେ ଯାହା ବି କର, ମୁଁ ତମକୁ ଛାଡ଼ିବି ନାହିଁ ।"

ଏଇଆ ଶୁଣି ସେ ସ୍ୱର ନେହୁରା ହୋଇ କହିଲେ—"ଗୋଉଡ଼ ! ତମ ଗୁଣ, ତମ ଝିମୁଲା ଝିଣ୍ଟିଆ ଗୁଣ, ମୁଁ ଆଉ କେବେହେଲେ ଆସିବି ନାହିଁ ।"

ମୁଁ ତାଙ୍କୁ ଧରି ତମ ପାଖକୁ ଆଣିବି ଭାବିଲି । ହେଲେ ତାଙ୍କର କାନ୍ଦବା ଦେଖି ମୋ' ମନ ବି ତରଳି ଯାଉଥିଲା । ତଥାପି କହିଲି—"ମୁଁ ତମକୁ ଛାଡ଼ିବି ନାହିଁ, ବାନ୍ଧି ରଖିବି ।" ଏହା କହି ତାଙ୍କୁ ଗୋଟିଏ ଖୁଣ୍ଟରେ ବାନ୍ଧିଦେଲି । କିଛି ସମୟ ପରେ ସେ କହିଲେ—"ଗୋଉଡ଼ ! ତମର ନା'କୁ ଟିକିଏ ବି ଦୟା ନାହିଁ । ମୁଁ କ'ଣ ଏମିତି ପଳେଇ ଯାଇପାରିବି ? ଦେଖ କେମିତି ଭିଡ଼ି ବାନ୍ଧି ପକେଇଛ, ଟିକିଏ ଢ଼ିଗୁଲା କରିଦିଅ ହେଲେ ।" ମୋର ଦୟା ହେଲା । ଯାଇ ଦେଖିଲି ସତକୁ ସତ ହାତ ଲାଲ ପଡ଼ି ଯାଇଛି । ମୁଁ ଖୋଲିଦେଲି । ସେ ତା'ପରେ ସ୍ୱର ମିଠାକରି କହିଲେ—ଗୋଉଡ଼ ! ତମକୁ ବାନ୍ଧିବା ବି ଆସେ ନାହିଁ ।"

ମୁଁ କହିଲି—"ତମେ ତ ଜାଣିଛ ! ମୋତେ ଟିକିଏ ଶିଖେଇ ଦିଅନ୍ତ !"

ତା'ପରେ ସେ କହିଲେ—"ଦେଖ, ଏମିତି ଗଣ୍ଠି ପକେଇଲେ ଯେତେ ଟାଣିଲେ ବି ଭିଡ଼ି ହେବ ନାହିଁ କି ଫିଟିଯିବ ନାହିଁ । ଦେଖ ଥରେ ବୁଲେଇଲି । ପୁଣି ଥରେ ବୁଲେଇଲି, ତାପରେ ପୁଣିଥରେ । ତିନିଥର । ବାସ୍ । ଆଉ ଏମିତି ମୋତେ ଶିଖେଇବା ବାହାନାରେ କଷି କରି ବାନ୍ଧିଦେଲେ ।" ମୁଁ କହିଲି—"ହଁ ଏଥର ଜାଣିଲି ମୋତେ ଖୋଲ !" ତା'ପରେ ସେ କହିଲେ—"ଗୋଉଡ଼ ! ଏଣିକି ତମର ବର ଆସିଲେ କହିବ ଖୋଲି-ଦବାକୁ ।" ଏହା କହି ଆଉ ମେଞ୍ଚାଏ ଲହୁଣୀ ମୋ ମୁହଁରେ ବୋଳି ଦେଇ ପଳେଇଲେ ।

ମୋ' ଶାଶୁ କ୍ଷେତରୁ ଆସି ଅଗଣାରୁ ଡାକ ପକେଇଲେ—'ଆଲୋ ବୋହୂ ! କୁଆଡ଼େ ଗଲୁ ରୁ । ଆଜି ଆଉ ଗୋପେଇବାସ କରିବୁ ନାହିଁ ନା କ'ଣ ? ରନ୍ଧାଘରେ କୁକୁର ପଶିଲାଣି କି କ'ଣ ! ସେତେବେଳେ ଲାଜରେ ମୋ' ପାଟିରୁ କଥା ବାହାରୁ ନ ଥିଲା । ମୁଁ ବନ୍ଧାହୋଇ ରହିଥିବା ଦେଖି ଶାଶୁ ସବୁ ବୁଝିଗଲେ । କହିଲେ—"ଇଏ ନିଶ୍ଚୟ ସେଇ ଶ୍ରୀକୃଷ୍ଣର କାଣ୍ଡ ।" ତୁ ତା' ପାଲରେ ପଡ଼ିଗଲୁ ! ତୁ ତ ଭାରି ଦେଖେଇ ହଉଥିଲୁ, ମୁଁ ତା ପାଲରେ ପଡ଼ିବି ନାହିଁ, ଆସିଲେ କି ଧରିବି ବୋଲି ଚିନ୍ଦ ହଉଥିଲୁ । କ'ଣ ହେଲା ? ମୁଁ ଏ ସବୁ ଶୁଣି ଲାଜରେ ଝାଉଁଳି ଯାଉଥାଏଁ । ତା'ପରେ ଶାଶୁ ମୋତେ ଫିଟେଇଦେଲେ ।

ଯଶୋଦା ମାତା କହିଲେ—"ତୁ ବି ତ ମୋ' ପୁଅକୁ ବାନ୍ଧି ପକେଇଲୁ । ଯେ ଅନ୍ୟକୁ ବାନ୍ଧିବ ସିଏ ବି ଦିନେ ନିଶ୍ଚୟ ବନ୍ଧା ହେବ । ଥଟ୍ଟା ପରିହାସ, ହସକେଇବା କଥାଟି ତ ତମେ ସବୁ ଆଗ କରୁଛ !"

ସବୁ ଶୁଣି ଆଉ ଜଣେ ଗୋପୀ କହିଲା—"ନନ୍ଦରାଣୀ ! ତମେ ତ କୌଣସି କଥାରେ ବିଶ୍ୱାସ ଯାଉନ । ସେ ଏମିତି ସବୁ ବାହାନା କରନ୍ତି ଯେ, ବାଧ୍ୟ ହୋଇ ବିଶ୍ୱାସ କରିବାକୁ ପଡ଼େ । ଦିନେ ମୋ' ପାଖକୁ ଦଉଡ଼ି ଦଉଡ଼ି ଆସି କହିଲା—"ଖୁଡ଼ୀ, ଖୁଡ଼ୀ ! ଆମ ଘରକୁ ଦଳେ ନାଗା ବାବାଜୀ ଆସିଛନ୍ତି । ମା' କହୁଛି ଦହି ଆଉ ଲହୁଣୀ ସବୁ ବି ଘରୁ ମଗେଇଛି, ତମେ କିଛି ଦିଅ ।"

ମୁଁ କହିଲି—"ଦହି, ଲହୁଣୀ କୋଉ କମ୍ ଅଛି ? ସାଧୁମହାତ୍ମାଙ୍କ ପାଇଁ ମଗେଇଛନ୍ତି ଯେତେବେଳେ ନେଇ ଯା' ।"

ଏଇଆ ଶୁଣି ରୈନ୍ଦା, ପୈନ୍ଦା, ସୈନ୍ଦା, ସଟକୁଆ, ଭଟକୁଆ ସବୁ ହାଣ୍ଡିମନ ଉଠେଇ ଚାଲିଲେ । ଆମ ଘର ପାଖରେ ଝଙ୍କାଳିଆ ବରଗଛ । ସେଇ ବରଗଛ ମୂଳରେ ଦେଖିଲାବେଳକୁ ସମସ୍ତେଁ ବସିଛନ୍ତି । ଇଏ ସମସ୍ତଙ୍କୁ ବାଣ୍ଟି ଦେଉଛି । ନିଜେ ବି ଖାଉଛି । ସେ ସବୁ ଗ୍ରେଟ ପିଲା । ଲୁଗା ବି ପିନ୍ଧି ନ ଥିଲେ । ମୁଁ ସେଇବାଟରେ ପାଣି ପାଇଁ ଗଲି, ଆଉ ବରଗଛ ମୂଳେ ଚାଲିଥିବା ଭୋଜି ଦେଖି ପଚାରିଲି—"କ'ଣ କୃଷ୍ଣ ! ତୁ ନାଗା ବାବାଜୀମାନଙ୍କ କଥା କହୁଥିଲୁ ନା ! ସେମାନଙ୍କ ପାଇଁ ଦହି, ଲହୁଣୀ ଦରକାର ଆଉ ଏଠି ସବୁ ନିଜେ ନିଜେ ଦଳଟାପାକ ଖାଉଛ !"

ସେ ମୋତେ ଓଲଟି ଧମକେଇ କହିଲେ—"ଦେଖି ପାରୁନୁ ଖୁଡ଼ୀ ! ଏମାନେ ସବୁ କିଏ ? ପରମ ହଂସ ନାଗା ନୁହନ୍ତି ? ଭୋଗ ଲଗଉଛନ୍ତି । ତୋର ଇଚ୍ଛା ଯଦି ପ୍ରସାଦ ପା' । ଯାହା ବର ମାଗୁଛୁ ମାଗ !" ସେ ଏମିତି ଦୁଷ୍ଟାମି କରୁଛି ।"

ଏହା ଶୁଣି ଆଉ ଜଣେ କହିଲା—"ବୁଝିଲ ମାଆ ! ତମ କୋଳରେ ସେ କେମିତି ସାଦା ସିଧା ସୁନାପିଲାଟେ ହୋଇ ବସିଛନ୍ତି । ହେଲେ ତମେ ତାଙ୍କ ବେଶ କଲାବେଳେ ଦେଖିବ ଯଦି ହସି ହସି ତମର ପେଟ ଫାଟିଯିବ । ଦିନେ ମୁଁ ଶୋଇଥିଲି । ସେ ଉଠି ଖେଳାକୁ ଚାଲି ଯାଇଥିଲେ । ଓର ଉଣ୍ଡି ତାଙ୍କ ସାଙ୍ଗମାନଙ୍କ ସାଙ୍ଗରେ ଇଏ କୋଉଠି ଲୁଚିଥିଲେ । ଘରଭିତରକୁ ଛପି ଛପି ଆସିଲେ । ମୋତେ ଦେଖି କ'ଣ ସବୁ ଫିସ୍ ଫାସ୍ କଥା ହେଲେ । ମୁଁ ବୁଝିଗଲି—ଆସି ପହଞ୍ଚିଲେ ଲହୁଣୀ ଚୋର । ମୁଁ ଆଉର ଲୁଗାପଟା ଘୋଡ଼ି ହୋଇ ଶୋଇଗଲି । ଚଟାପଟ ସେ ଏଣେତେଣେ ଲହୁଣୀ ଖୋଜିବାକୁ ଲାଗିଲେ । ପୁରା ବାନର ସେନା ସାଙ୍ଗରେ ଥିଲେ, ତଳେ କୋଉଠି ହେଲେ ଲହୁଣୀ ପାଇଲେ ନାହିଁ, ଯେମିତି ଉପରକୁ ଚାହିଁଲେ । ଜଣେ କହିଲା, 'ଦେଖ କେଡେଡା କେତେ ଉପରେ ଟାଙ୍ଗି ଦେଇଛି ।' ସେତେବେଳେ ସେ କହିଲେ—'ଆବେ, ଧୀରେ ଧୀରେ କହ, ଉଠି ପଡ଼ିବ ଯଦି ସବୁ ଭଣ୍ଡୁର ହୋଇଯିବ ।' ଏଇଆ ଶୁଣି ସମସ୍ତେ ଚୁପ୍ ହୋଇଗଲେ । ସେମାନଙ୍କ ଭିତରୁ ଜଣେ କହିଲା—'କାହ୍ନା, ଜଣକ ଉପରେ ଜଣେ, ଏମିତି ଚାରିଜଣ ନ ଚଢ଼ିଲେ

ଏ କାମ ହବନାହିଁ ।" ଶୁଣି ସେ କହିଲେ—"ତୁ ପଢ଼ିଲେ ଘୋଡ଼ା ହୁ ।" ସେ ସେମାନଙ୍କ ଭିତରେ ଟିକିଏ ବଡ଼ । ସେଇ ଘୋଡ଼ା ହେଲା । ତା' ଉପରେ ଜଣେ ତା' ଉପରେ ଆଉ ଜଣେ । ତଥାପି ବି ହାଣ୍ଡିକୁ ସେମାନଙ୍କ ହାତ ପାଇଲା ନାହିଁ । ସେଇଠୁ ଇଏ ଧୀରେ ଧୀରେ କହିଲେ—'ହାଣ୍ଡିକି କଣା କରିଦିଅ । ହେଲେ ଫଟ୍ କିନା ଶବ୍ଦ ହେଲେ ଇଏ ଉଠି ପଡ଼ିବ । ପଢ଼ିଲେ ଯାହାକୁ କପିକରି ବନ୍ଧାଯାଉ !"

ମୁଁ ପଡ଼ିରହି ଶୋଇବା ବାହାନାରେ ସବୁ ତ ଶୁଣୁଥିଲି । ଭାବିଲି, ଇଏ ଉତ୍ପାତିଆ ପିଲେ ସତକୁ ସତ ମତେ ବାନ୍ଧି ପକେଇବେ । ସେତେବେଳେ ମୁଁ କୁଆଡ଼କୁ ହେବି ନାହିଁ । ଏଇଆ ଭାବି ଉଠିଲି ଆଉ ଦଉଡ଼ିଯାଇ କବାଟ ବନ୍ଦ କରିଦେଲି । ସେଠିକରେ ଏମାନେ ସବୁ ଘାବରେଇ ଗଲେ । ଦୁଧ ଦହି ଖାଇବା କଥା ବି ପାସୋରି ପକେଇଲେ । ସେମାନେ ଭିତରେ ଗୋଟାଏ ପିଲା ଦେହରେ ଗୁଡ଼ ଚାଳି ତା' ଉପରେ ତୁଳା ଲଗେଇଦେଲେ ଆଉ ତା' ମୁହଁରେ ହାଣ୍ଡି କଳା ବୋଳିଦେଲେ । ଗୋଟାଏ ହାଣ୍ଡି ଭାଙ୍ଗି ତା' ହାତରେ ଝୁଂପୁଣ୍ଣ ଭଳି ଧରେଇଦେଲେ ଆଉ ଦୁଆର ମୁହଁରେ ଠିଆହେଲେ । ସେ ଭିତରେ ମୁଁ ପାଖ ପଡ଼ିଶାର ଗୋପୀମାନଙ୍କୁ ଡାକି ସାରିଥାଏଁ । ମୋର ଇଚ୍ଛା ଥିଲା, ସେମାନଙ୍କୁ ଧରି ତମ ପାଖକୁ ଆଣିଆନ୍ତି ।

ଭିତରୁ ଇଏ କହିଲେ—"ଖୁଡ଼ୀ ! ଖୋଲ । ଆମେ ଆଉ କେବେହେଲେ ଆସିବୁ ନାହିଁ ।"

ଅନେକ ଗୋପୀ ଥିଲୁଁ ଅମେ । ଇଏ କୁଆଡ଼େ ବା ଯିବେ । ସେଇଆ ଭାବି ମୁଁ କବାଟ ଖୋଲନ୍ତେ ସେ ଭିତରୁ ପାଟି କଲେ—"ଭୂତ···ଭୂତ···।' ସେମାନେ ଯାହାକୁ ଭୂତ ବନେଇ ଥିଲେ ସେ ହୁଃ···ହୁଃ କରି ଆମ ଉପରକୁ ଝମ୍ପିଟି ଆସିଲାରୁ ଆମେ ସମସ୍ତେ ତରମର ଏଣେ ତେଣେ ଦଉଡ଼ିବାକୁ ଲାଗିଲୁଁ । ଆଉ ଏମାନେ ସମସ୍ତେ ହସି ହସି ପଳେଇଲେ । ଏମିତି କେତେ ସୁଆଙ୍ଗ ତାଙ୍କୁ ଜଣା । କେତେବେଳେ ଚୋର, କେତେବେଳେ ବାବାଜୀ ତ ଆଉ କେବେ ଭୂତ ।"

ଯଶୋଦାମାତା କହିଲେ—'ବୋଉ ! ତୁ ସପନ ଦେଖିଥିବୁ । ମୋର ଏତେ ବାଳୁଟ ପୁଅ, ସେ ପୁଣି ଏତେ କଥା ଜାଣିବ କୁଆଡ଼ୁ ? ସପନରେ ତୁ ହୁଏତ ଉଠି ପଡ଼ିଥିବୁ । ଏତେ ଛୋଟ ପିଲା ଅନ୍ଧାରରେ ଘରେ ଥିଲା କିନ୍ତୁ କେମିତି ବାହାର କରିବ ।"

ଏହା ଶୁଣି ଆଉ ଜଣେ ସଖୀ କହିଲା—"ରାଣୀ ! ତମେ ତ ଆମ ସମସ୍ତଙ୍କୁ ମିଛୁଆ ଭାବୁଛ । ତା'ପାଇଁ ଅନ୍ଧାର ଆଲୁଅ ଏକା କଥା । ତାଙ୍କୁ ତମେ ଯୋଉ ମଣିମାଳା ପିନ୍ଧେଇଛ, ରତ୍ନ ଅଳଙ୍କାର ପିନ୍ଧେଇଛ, ସେଥିରେ ଅନ୍ଧାର ଘର 'ଅଲୁଅ ହୋଇଯାଏ । ଦୀପଠାରୁ ବି ଅଧିକ ଆଲୁଅ ହୁଏ ।"

ମାଆ କହିଲେ—'ତମେମାନେ ସମସ୍ତେ କହୁଛ ଯେତେବେଳେ ମୁଁ ତା'ର ସବୁ ଅଳଙ୍କାର ଖୋଲି ଦେଉଛି ।'

ଏହା ଶୁଣି ସବୁ ଗୋପୀ ବଡ଼ଜଡ଼ ହୋଇ ପଡ଼ିଲେ—"ନା' ମାଆ, ତମକୁ ଆମ ରାଣ, ସେମିତି କରନାହିଁ । ତାଙ୍କର ଅଳଙ୍କାରକୁ ଛୁଅଁ ନାହିଁ । ପିଲାଙ୍କ ଅଳଙ୍କାର ଖୋଲିବା ଅଶୁଭ କଥା । ତୁମେ ତାଙ୍କଠାରୁ ଖୋଲି ରଖିଲେ କ'ଣ ହେବ ! ଶ୍ରୀଅଙ୍ଗରୁ ଏଭଳି ଅଲୁଅ ଉଙ୍କୁଟି ଉଠେ ଯେ ଅନ୍ଧାରରେ ଆଲୁଅ ହୋଇ ଯାଏ । ଅନ୍ଧକାର ତାଙ୍କୁ ଦେଖିବା ମାତ୍ରକେ ଡରିଯାଏ । ତେଣୁ ଅଳଙ୍କାର ସେମିତି ସେ ଲଗେଇଥାଆନ୍ତୁ ।"

ମାଆ କହିଲେ—"ତମେମାନେ ସଭିଏଁ ଆସି ମୋତେ ଖୁଣ୍ଟା ଦେଉଛ । ନାନା କଥା ଶୁଣଉଛ । ମୁଁ ତ କହୁଛି, ମୋ ପୁଅ ତ ପିଲା ବଳଟେ, ଏତେ କଥା ଜାଣିବ କୁଆଡ଼ୁ !"

ଏହାଶୁଣି ଗୋପୀଟିଏ କହିଲା—"ନନ୍ଦରାଣୀ, ଆମ କଥାକୁ ବିଶ୍ୱାସ କର । ଇଏ ଘର ଘର ପଶି ଚୋରି କରନ୍ତି ଆଉ ସମସ୍ତଙ୍କୁ ଭୁଲେଇ ଦିଅନ୍ତି ।"

ଯଶୋଦାରାଣୀ କହିଲେ—"ମୁଁ ତ ସେତେବେଳେ ଯାଇଁ ବିଶ୍ୱାସ କରିବି ଯେତେବେଳେ ତମେ ସବୁ ତାକୁ ଧରି ମୋ' ପାଖକୁ ନେଇଆସିବ । ସେମିତି ଯେ ପାରିବ ସେ ଜଣକ ଉପରେ ଦୋଷ ଲଦି ଦେଇପାରିବ ।

ଏହା ଶୁଣି ଆଉଜଣେ କହିଲା—"ଠିକ୍ ଅଛି । ମୁଁ ଶ୍ୟାମକୁ ଧରି ତମ ପାଖକୁ ଆଣିବ ।"

ସୂତ କହୁଛନ୍ତି—"ହେ ମୁନିଗଣ ! ଯେତେବେଳେ ଅନେକ କଥା କହିବା ପରେ ମଧ୍ୟ ଯଶୋଦାଙ୍କର ବିଶ୍ୱାସ ହେଲାନାହିଁ, ସେତେବେଳେ ଗୋପୀମାନେ ଆଉ କେତେକ ନୂଆ କଥା କହିବାକୁ ଲାଗିଲେ ।"

## ଛପ୍‌ପୟ

କବହୁଁ ଝିରକେ ଅଇ ହମେଁ ହୀ ଚୋର ବତାବେ ।
ସାନୀ ତେତରେ ପୂତ ଭୂତ ବନ କବହୁଁ ଡରାବେ ॥
ବନ୍ଦର ଲବେ ପକରି କହେଁ ଯୋ ତୋକୁଁ କାଟେ ।
ଖିଲ ଖିଲାଇ ହଁସି ଜାଇ ଜବହୁଁ ହମ ଜାକୁଁ ଡାଁଟେ ॥
ଶତବନ ମହଁ ଟୋନା ଭରେ୍ୟା, ବାନୀ ମିସରୀ ସମ ମଧୁର ।
କରେ କାଜ ଅନୟାୟ୍ୟ କେ ତୋଉ ଲାଗେ ଅତି ସୁଧର ।

# ଶ୍ରୀକୃଷ୍ଣଙ୍କୁ ଅପରାଧୀ ବୋଲି ପ୍ରମାଣିତ କରିବାକୁ ଚେଷ୍ଟା

ଏବଂ ଧାର୍ଷ୍ଟ୍ୟାନ୍ୟୁଶତି କୁରୁତେ ମେହନାଦୀନି ବାସ୍ତୌ ।
ସ୍ତେୟୋପାୟୈର୍ବିରଚିତକୃତିଃ ସୁପ୍ରତୀକୋ ଯଥାଽଽସ୍ତେ ॥
ଇତ୍ଥଂ ସ୍ତ୍ରୀଭିଃ ସଭୟନୟନ ଶ୍ରୀମୁଖାଲୋକିନୀଭି— ।
ର୍ବ୍ୟାଖ୍ୟାତାର୍ଥା ପ୍ରହସିତମୁଖୀ ନ ହ୍ୟପାଲବ୍ଧୁମୈଚ୍ଛତ୍ ॥

(ଶ୍ରୀ ଭା ୧୦ ସ୍କ, ୮ ଅ, ୩୧ ଶ୍ଳୋକ)

### ଛପ୍‌ପୟ

ମୈୟା ! କହଁ ଲୌ କହୌଁ ବାତ କଛୁ କହତ ନ ଆବେ ।
ନଶି ଦଳ ଚୋରୀ ଯୁକ୍ତି ଘୋର ଉତ୍ପାତ ମଚାବୈ ॥
ମୁଖ ତେଁ ସୀଟୀ ମାର ବାଲ ଗୋପାଲ ସମେତେ ।
ଦେଖେ ଆଁଗନ ଲପେୟା ବହୀଁ ଟଟ୍ଟୀ କୈଁ ବୈଠେ ॥
ଖାଲ, ବଗାରେ, ଭଲୀଚେ, ବର୍ତ୍ତନ ଫୋରେ ହସି ପରୈ ।
ତ୍ୟାଗି ଦେହୁ ମଲ ମୂତ୍ର ହୂ, ଘର ଆଁଗନ ମୈଲେ କରେ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଗୋପୀମାନେ ଅଭିଯୋଗ କରି ଯଶୋଦା ମାତାଙ୍କୁ କହୁଛନ୍ତି; ନନ୍ଦରାଣୀ ! ଏ ତମର ପୁଅ ଅନେକ ଥର ଏଭଳି ଧୃଷ୍ଟତା କରେ । ଆମର ସଫା ସୁତୁରା ଘରେ ମଳମୂତ୍ର ତ୍ୟାଗ କରି ଆସେ । ପ୍ରତିଦିନ ନୂଆ ନୂଆ ଚୋରିର ଉପାୟ ଆବିଷ୍କାର କରେ । ମାତ୍ର ବର୍ତ୍ତମାନ କିଭଳି ସରଳ ମନେ ହେଉଛି । ସତେ ଯେମିତି କିଛି ବୋଲି କିଛି ଜାଣନ୍ତି ନାହିଁ । ଏପରି ଭାବରେ ଗୋପୀମାନେ ଯଶୋଦାଙ୍କୁ ଶୁଣେଇ ଯାଉଥିଲେ ଏବଂ ଡରିଯାଇ ଏଣେତେଣେ ଚାହୁଁଥିବା ଶ୍ରୀକୃଷ୍ଣଙ୍କର ଚଞ୍ଚଳ ଆଖିକୁ ବାରମ୍ବାର ଚାହୁଁଥିଲେ । ଏସବୁ କଥାଶୁଣି ଯଶୋଦା ହସିଲେ ଆଉ ମନିରେ ମନିରେ ପୁଅକୁ ଆକଟ ମଧ୍ୟ କରୁଥିଲେ ।"

କୌଣସି କାମ ମନ୍ଦ ନୁହେଁ କି ଭଲ ନୁହେଁ । ପ୍ରାଣୀ ଭଲ ନୁହେଁ କି ମନ୍ଦ ନୁହେଁ । ସମସ୍ତେ ଈଶ୍ୱରଙ୍କ ଅବତାର । ଭଲ ମନ୍ଦର କଳ୍ପନା ଆମେ ଆମର ସ୍ୱାର୍ଥପାଇଁ କରିଛୁ । ଯେ ଆପଣାର ମନେହୁଏ, ତାହା ଭିତରେ ଆମକୁ ଖାଲି ଭଲ ହିଁ ଦେଖାଯାଏ । ଆଉ ଯେ ପରଭଳି ଲାଗେ ତା'ର ସବୁ ଗୁଣ ମଧ୍ୟ ଅବଗୁଣ ପରି ଲାଗେ । ଜୀବର ଯେଉଁଠାରେ ଆପଣାର ଭାବହୁଏ ସେ ସେଠାରେ ବାନ୍ଧି ହୋଇଯାଏ । ଆପଣା ଲୋକର ସବୁକଥା ସହିବାକୁ ପଡ଼େ । ହସି ଦେଇ ହେଉ କି କାନ୍ଦି ଦେଇ ହେଉ, ଯେମିତି ହେଉ ସହିବାକୁ ପଡ଼େ, କାରଣ ସେ ଆପଣାର । ନିଜ ହାତର ରନ୍ଧଣା, ଆପଣା କ୍ଷେତର ଧାନ ଅସୁଆଦିଆ ହେଲେ ବି ମିଠାଲାଗେ । ଜୀବ ଯେତେବେଳ ପର୍ଯ୍ୟନ୍ତ ଦୁଃଖର ଅନୁଭବ କରେ ସେତେ-ବେଳଯାଏଁ ସଂସାରକୁ ନିଜର ମଣୁଥାଏ । ଯେହେତୁ ସଂସାର ଦୁଃଖମୟ । କୃଷ୍ଣଙ୍କୁ ନିଜର ମନେ କଲାରୁ, ତାଙ୍କ ସହିତ ଆପଣାର ଭାବ ହେଲାରୁ, ସେଇଠି ଆଉ ଦୁଃଖ କେମିତି ରହିବ ? ତା'ର ନାମ ଗନ୍ଧ ରହିବ ନାହିଁ । ପ୍ରତ୍ୟେକ ଘଟଣାରେ ସୁଖର ଅନୁଭବ ହେବ । କାରଣ ଶ୍ରୀହରି ସୁଖ ସ୍ୱରୂପ । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ସୁଖପ୍ରଦ । ଆନନ୍ଦ ଦାୟକ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଆପଣମାନେ ଆଖିବୁଜି ଧ୍ୟାନ କରନ୍ତୁ । ଏଡ଼େ ବଡ଼ ନନ୍ଦ ଘର ଅଗଣା । ସେଇଠି ସୁନ୍ଦର ସୁନ୍ଦର ଫୁଲପକା ମସିଣା ପଡ଼ିଛି । ମସିଣା ଉପରେ ଗାଲିଚା । ପଶ୍ଚିମ ପଟକୁ ଆଉଜି ବସିବାକୁ କେତେ ନରମ ଗୋଲ ଗୋଲ ମାଣ୍ଡି ଅଛି । ମଝିରେ ବଡ଼ ମାଣ୍ଡିଟିଏରେ ଭରା ଦେଇ ଯଶୋଦାମାତା ବସିଛନ୍ତି । ଆଉ ସବୁ ତକିଆ ଏଣେତେଣେ ରହିଛି । କହିବା ପରେ ବି ସେଥିକୁ କେହି ହେଲେ ଆଉଜି ବସିଲେ ନାହିଁ । ଭଲା ନନ୍ଦରାଣୀ ଆଗରେ ସମାନ ଯୋଡ଼ି ହୋଇ କିଏ ବା କେମିତି ବସିବ ! ସେ ଧୁଙ୍ଗିମୁହାଁ ହୋଇ ବସିଛନ୍ତି । ତାଙ୍କ ଆଗରେ ସହସ୍ରେ ଗୋପୀ ରଙ୍ଗରଙ୍ଗିଆ ଓଢ଼ଣା ଟାଣି କେତେ ଥାକ ଅଳଂକାରରେ ମଣ୍ଡି ହୋଇ ବସିଛନ୍ତି । ସମସ୍ତେ ଯୁବତୀ । ସମସ୍ତେ ଆଖିଲୁଚା ଓଢ଼ଣା ଟାଣି ବସିଛନ୍ତି । କେତେଜଣ ନୂଆ ବୋହୂ ସେମାନଙ୍କ ଭିତରେ ବି ଅଛନ୍ତି । ସେମାନଙ୍କ ଓଢ଼ଣା ସେମାନେ ବଣି ଆଙ୍ଗୁଠି ଆଉ ମଝି ଆଙ୍ଗୁଠିରେ ଓଢ଼ଣା ଟେକି ମଝିରେ ମଝିରେ ନନ୍ଦରାଣୀ କୋଳରେ ଥିବା ଶ୍ୟାମସୁନ୍ଦରଙ୍କୁ କଣେଇ କଣେଇ ଚାହୁଁଥିଲେ । ମଝିରେ ମଝିରେ ହସ କଥା ପଡ଼ିଲେ ଖିଲିଖିଲି ହସୁଥିଲେ । ଅନୁରାଗ ହେତୁ ସବୁରି ମନରେ ଆନନ୍ଦର ଜୁଆର ଉଠୁଥିଲା । ସବୁରି ଆଖି ଆନନ୍ଦରେ ଝଲସି ଉଠୁଥିଲା । ସେମାନଙ୍କର କାଞ୍ଚୁଳି ମଧ୍ୟରେ ଦେହ ଭିଡ଼ିହୋଇ ରହିଥିଲା ମାତ୍ର ଅତ୍ୟନ୍ତ ଆନନ୍ଦରେ ବକ୍ଷ ଏଭଳି ଫୁଲି ଉଠୁଥିଲା ଯେ କାଞ୍ଚୁଳି ଚିରିଯିବା ଭଳି ଲାଗୁଥିଲା । ନନ୍ଦରାଣୀଙ୍କ ଆଗରେ ଯୋଉ କହିବାବାଲି ଗୋପୀ ଥିଲେ ସେମାନେ ତ କହୁଥିଲେ । ବାକି ସମସ୍ତେ ଚୁପ୍‌ଚାପ୍ ବସି ଶୁଣୁଥିଲେ । ସେତେବେଳେ ସେମାନଙ୍କର ରଙ୍ଗରଙ୍ଗିଆ ବସ୍ତ୍ର ଆଭୂଷଣ ପାଇଁ ଅଗଣା ଫୁଲଭର୍ତ୍ତି ବଗିଚାଟିଏ ପରି ମନେ ହେଉଥିଲା ।

ଯଶୋଦାମାତାଙ୍କର ଶରୀର କଣ୍ଟନ୍ତ ସ୍ଥୂଳ । ଗୌରବର୍ଣ୍ଣ ଶରୀରରେ ନାନାପ୍ରକାର ବହୁ ଅଳଙ୍କାର ଚମକୁ ଥିଲା । ହାତ ଏଣେତେଣେ କଲେ ରୁଣୁଝୁଣୁ ହୋଇ ବାଜୁଥିଲା । ତାଙ୍କର ମୁଖମଣ୍ଡଳ ସୁନ୍ଦର ଓ ତେଜବନ୍ତ ଥିଲା । ବୟସ ଢଳିବାକୁ ବସିଥିଲେ ହେଁ ଶରୀରରେ ତା'ର କୌଣସି ଚିହ୍ନ ନ ଥିଲା । ସେ ଆଣ୍ଠୁ ଭାଙ୍ଗି କୋଳରେ ଶ୍ରୀକୃଷ୍ଣଙ୍କୁ ଧରି ଚଉକି ଉପରେ ଆରାମରେ ବସିଥିଲେ । ଆଗରେ ଗୁଆ ଲବଙ୍ଗ ଆଦି ସୁନାଥାଳିରେ ରହିଥିଲା ଓ ଦୁଇଜଣ ଦାସୀ ପାଖରେ ଠିଆ ହୋଇ ରହିଥିଲେ । ତାଙ୍କ କୋଳରେ କୃଷ୍ଣ ବସିଥିଲେ । ତାଙ୍କର ମସ୍ତକ ମାତାଙ୍କର ସ୍ତନର ଆଶ୍ରୟରେ ରହିଥିଲା । ପଣତ କାନିରେ ମୁହଁ ଲୁଚେଇ ଶ୍ୟାମସୁନ୍ଦର ଥରେ ଥରେ କହୁଥିବା ବାଲି ଗୋପୀକୁ ଚାହୁଁଥିଲେ । ମଝିରେ ମଝିରେ ମୁହଁ ଭଙ୍ଗୀ ଏମିତି କରୁଥିଲେ, ଯେ କହୁଥିବା ଗୋପୀ ଅଧିକରୁ ଅଧିକ ଉତ୍ସାହରେ କହୁଥିଲା । ଆଉ କୃତାର୍ଥ ହୋଇ ଯାଉଥିଲା । ସେ କହି ସାରିଲେ ମାତା ତା' କଥା ବଦଳରେ କଥା କଟାକଟି କରି କହୁଥିଲେ ଆଉ ତାକୁ କୋଉ କଥାରେ ଆକଟ କଲେ ଶ୍ରୀକୃଷ୍ଣ ମୁରୁକ ମୁରୁକ ହସି ଦେଉଥିଲେ । ତାକୁ ଖତେଇ ହୋଇ ପୁଣି ପଣତରେ ମୁହଁ ଲୁଚେଇ ନଉଥିଲେ । ଚାହୁଁଥିଲେ ଆଉ ଏମିତି ମୁଣ୍ଡ ହଲେଇ କହୁଥିଲେ । ଯେମିତି କି କହୁଥିଲେ—"ଆଜି ତୁ ଗାଳି ଖୁଆଉଛୁ ବୋଲି ଆସିଛୁ ନା ! ଭଲ କଥା, ଦେଖିବା ।"

ଏତେବେଳଯାଏ ଯିଏ କହୁଥିଲା ସିଏ ଚୁପ ହେଲାରୁ ଆଉ ଜଣେ କହିଲା—"ମା ! ଏ ଖାଲି ଲହୁଣୀ, ଦୁଧ ଦହି ଖାଆନ୍ତେ ଯଦି କୌଣସି କଥା ନାହିଁ । ଆମମାନଙ୍କ ଛପରକୁ ସାଙ୍ଗମାନଙ୍କ ସାଙ୍ଗରେ ଠେଙ୍ଗାମାରି କଣା କରି ଦଉଛନ୍ତି । ସେଥିରେ ଛପର ତ କଣା ହେଲା, ଦୁଧ ଦହି ଯାହା ବି ଥିଲା କୁଟାକାଠି ପଡ଼ି ନଷ୍ଟ ହେଉଛି । କେବେ କେବେ ବାହାରୁ ମଇଳା ଆଣି ଭିତର ଅଗଣାରେ ଅଜାଡ଼ି ଯାଉଛନ୍ତି । ଘରେ ଥିଲା ମହି ହାଣ୍ଡି କଣା କରି ଦେଇଗଲେ ସାରା ଘରେ ବହି ଯାଉଛି । ଚୁଲିରୁ ପାଉଁଶ ଏଣେତେଣେ ବୁଣି ଅଜାଡ଼ି ଦେଇ ଯାଉଛନ୍ତି । ପାଣି ମାଠିଆ ହାଣ୍ଡି ଭାଙ୍ଗି ଘର ସାରା କାଦୁଅ କରି ଦେଉଛନ୍ତି ।"

ଏଇଆ ଶୁଣି ଯଶୋଦା ମାତା କହିଲେ—"ଘରେ ମଇଳା ଆଣି ଢାଳିବା କହାତ ମନ୍ଦ କଥା ।···କ'ଣରେ କାହ୍ନା, ତୁ ଏମିତି ସବୁ କରୁଛୁ ?"

ଭଗବାନ କହିଲେ—"ମା' ! ତୁ ଏମାନଙ୍କ କଥା ସବୁ ଶୁଣି ଯା' । ମୁଁ ସବୁ କଥାର ଅବକାଶରେ ଉତ୍ତର ଦେଇଦେବି । ମୁଁ କା' ଘରେ ମଇଳା ଢାଳିଛି ?"

ଯା' ଶୁଣି ଆଉ ଜଣେ ଗୋପୀ କହିଲା—"କ'ଣ କହିବି ରାଣୀ ! ଏତେ ବଳଟେ ପିଲା, ଖାଲି କାଦୁଅ କ'ଣ ଆଉ କ'ଣ ନା କ'ଣ କରୁଛି । ସବୁ କହିବାକୁ ସଙ୍କୋଚ ଲାଗୁଛି । ନ ହେଲେ ଆମେ କ'ଣ ଏ ଛୋଟ ପିଲାଟିଏକୁ ଦୋଷ ଦେଇ କହି ଆସନ୍ତୁ !"

ଯଶୋଦା ମାତା କହିଲେ—"ଆଉ କ'ଣ ସବୁ କରୁଛି, ତାକୁ ବି ତ ଶୁଣ ।"

ତହିଁରୁ ସେଇ ଗୋପୀଟି କହିଲା—"ଦୀପାବଳୀ ଲାଗି ମୁଁ ଘର ଲିପାପୋଛା କରି ସଫା କରି ରଖିଥିଲି । ଏତେ ଚକ୍‌କଣ କରି ଲିପିଥିଲି ଯେ ମାଛି ବସିଲେ ଗୋଡ଼ ଖସିଯିବ । ମୁଁ ସେତେବେଳେ ଘର ଭିତରେ । ଏଣେ ଇଏ ତା' ସୈନ୍ୟଦଳ ନେଇ ହାଜର । ଏଣେତେଣେ ବୁଲି ଇଏ ଧୀରସ୍ଥିର କହିଲା—ଏଇନେ ତ ସିଏ ଭିତରେ ଅଛି । ଆଉ ଅନ୍ଧାର ବି... ପରେ ଆସିବା !"

"ଯାଉଁ ଯାଉଁ ପଞ୍ଝାକ ଯାକ କ'ଣ ଭାବିଲେ କେଜାଣି ଅଗଣା ସାରା ହଗି ମୁତି ଗୁଡ଼ାଇଛି । ମୁଁ ଶବ୍ଦ ଶୁଣି ଅଗଣାକୁ ଆସିଲାବେଳକୁ... ଛି... ଭାବ ଦେଖ ତ ମୁଁ କ'ଣ ହୋଇ ନ ଥିବି ସେଦିନ !"

ଯଶୋଦାମାତା ଶୁଣି ସାରି କହିଲେ—"ଏ କାହ୍ନା ଦୁଷ୍ଟ ହନ୍ତସ୍ତ ! ହେଲେ ତମେ ସବୁ ଯେତେ ଯେତେ କଥା ବଖାଣୁଛ, ସେତେ କଥାକୁ ମୁଁ ବିଶ୍ୱାସ କରି ପାରୁନି ।"

ସେଇ ମଝିରେ ପଞ୍ଚ କୃଷ୍ଣ କହିଲେ—"ନାହିଁ ମା ! ତୁ ଏମାନଙ୍କ କଥାକୁ ମୋଟେ ଯାଆନା । ଏମାନେ ସମସ୍ତେ ଚୋରଣୀ । କିଏ ଗୋବର ଚୋରଣୀ, କିଏ ବାଡ଼ିରୁ କାକୁଡ଼ି କାନ୍ଥି ଅଣ୍ଟିରେ ପୂରେଇ ନଉଛି । ତୁ କୋଉ ଦେଖୁଛୁ ! ତୁ ତ ସବୁବେଳେ ଭିତରେ ଥାଉ—ମୁଁ ପିନା ସବୁବେଳେ ବାଡ଼ି ପଟେ ଯାଇ ଖେଳେଁ । ଏଇନେ ନ ଦେଇ ଉଣ୍ଡୁଥିବେ । ଆଉ ବାହାନା ତ କେତେ କରନ୍ତି—ମୋ' ନାଆଁରେ ମିଛ ସତ ଲଗେଇ ବଖାଣୁଛନ୍ତି । ଏମାନଙ୍କୁ ମିଛ କହିବା ବି ଆସୁନି । ମୋ' ଉପରେ ଚୋରି ଦୋଷଟି ଲଦୁଛନ୍ତି ଯେ, କିଛି ନ ଆସି ଜଣକଟିଏ କଥା କହୁନ୍ତେ ଭଲ ! ଯା'ଘରେ ନଅଲକ୍ଷ ଗାଈ ପାଣି ପରି ଦୁଧ ବହି ଯାଉଛି । କୁଡ଼ କୁଡ଼ ଲହୁଣୀ ଯାହାର ସିଏ ପୁଣି କା' ଘରକୁ ଲହୁଣୀ ଚୋରେଇ ଯିବ । ମୁଁ ତ ତୋ'ର ଗୋଟିଏ ବୋଲି ପୁଅ । ତୁ ଚାହିଁଲେ ଏମାନଙ୍କୁ ଲହୁଣୀରେ ଗାଧୋଇ ବୁଡ଼େଇ ଦେଇପାରିବୁ । ଏମାନେ ମୋତେ ଘରକୁ ଟାଣି ନଉଛନ୍ତି ଆଉ ଜୋର କରି ଲହୁଣୀ ଭରୁଛନ୍ତି ମୁହଁରେ । ବୋଲି ପକଉଛନ୍ତି । ମୁହଁ ବଙ୍କେଇ, ଆଖି ନଚେଇ କ'ଣ କ'ଣ କହୁଛନ୍ତି । ମୋତେ ଗ୍ରହରେ ଭିଡ଼ି ଧରୁଛନ୍ତି । ଏମାନଙ୍କ ଲୀଳା ଏମାନେ ଜାଣନ୍ତି । ଏମାନେ ସବୁ ନିଜ ଚୋରି ଲୁଚେଇବାକୁ ମୋତେ ଚୋର ବୋଲି କହୁଛନ୍ତି ।"

ଯଶୋଦାମାତା କହିଲେ—"ସେମିତି ମୁଁ କାହା କଥାକୁ ବିଶ୍ୱାସ କରିଯିବି ନାହିଁ । ଯଦି ମୋ' ପୁଅ ଚୋରି କରୁଛି ତା'ହେଲେ ଚୋରେଇଲାବେଳେ ତାକୁ ଧରି ମୋ' ପାଖକୁ ଆଣ । ସେ ତମକୁ ଚୋରଣୀ ଆଉ ତମେ ସବୁ ତାକୁ ଚୋର ବୋଲି କହୁଛ, ମୁଁ କାହା କଥାକୁ ସତ ମଣିବି ?"

ଏହା ଶୁଣି ଗୋପୀମାନେ ଠିଆ ହେଲେ । କହିଲେ—"ଠିକ୍ କଥା । ତମେ ଏମିତି କହିବ ବୋଲି ଆମକୁ ଜଣା ଥିଲା । ଓଲଟି ତମେ ଆମକୁ ଦୋଷ ଦେବ । ଠିକ୍ ଅଛି, ଆମେ ତାକୁ ଧରି ତମ ପାଖକୁ ନେଇଆସିବୁଁ । ଶହେଥର ଚୋରି ଚୋରେଇ ଥରେ ହେଲେ ଧରା ପଡ଼ିବ ତ ? ଏହା କହି ସେମାନେ ଯେଝା ଘରକୁ ଯିଏ ଚାଲିଗଲେ । ଶ୍ରୀକୃଷ୍ଣ ମାଆଙ୍କ କୋଳରେ ଥାଇ ମାଆଙ୍କ ଅଜଣାତରେ ସେମାନଙ୍କୁ ଖତେଇ ହଉଥାନ୍ତି ।"

ଗୋପୀମାନେ ନିଜ ନିଜ ଭିତରେ କଥା ହୋଇ ସ୍ଥିର କଲେ ଯେମିତି ହେଉ କୃଷ୍ଣଙ୍କୁ ଧରିବାକୁ ହିବ । ତେବେ ଧରିବ କିଏ ? ସେ ସମୟରେ ବରସାନାର ଝିଅଟିଏ ଗୋକୁଳକୁ ବୋହୂ ହୋଇ ଆସିଥିଲା । ସେ କହିଲା—ତମେ ସବୁ ପାରୁନ ଯଦି ମୁଁ ଧରିବ । ବାଳଚୋର ସମିତିର ଗୁପ୍ତଚର ବିଭାଗ ଏ ଖବର କୃଷ୍ଣଙ୍କ ପାଖରେ ପହଞ୍ଚେଇବାକୁ ବିଳମ୍ବ ହେଲା ନାହିଁ । ସେ ଜଣେଇ ଦେଲା ଅମୁକ ଗୋପୀ ଧରିବ ବୋଲି ପଣ କରିଛି ।

ଶୌନକ ପଚାରିଲେ—"ହେ ସୂତ ! ଶ୍ରୀକୃଷ୍ଣଙ୍କୁ ଆସି କିଏ ସବୁକଥା କହି ଦେଲା ?"

ସୂତ କହିଲେ—"ମହାଶୟ ! ଘରେ ଥାଇ ଘର ଗୁମର ପଦାରେ ମକାଇବା ଲୋକ ନାହାନ୍ତି କି ? ସେଇ ଗୋପୀର ଶ୍ରେଷ୍ଠ ଦିଅର । ସିଏ ବି ସେଇ ଚୋର ଦଳର । ସେଇ କହିଲା—କାହ୍ନା ! ଭାଉଜ ତତେ ଧରିବେ ବୋଲି ଠିକ ହେଇଛନ୍ତି ।"

ଏଇଆ ଶୁଣି ହସି ହସି ନନ୍ଦକୁମାର କହିଲେ—"ଠିକ୍ ଅଛି, ଦେଖାଯିବ । ମୋତେ ସେ ଧରିବ କି ନିଜେ ଧରାହେବ । ସେଇ ଦିନଠାରୁ ଗୋପୀଟି ଶ୍ରୀକୃଷ୍ଣଙ୍କୁ ଛକି ରହିଲା ।"

ଶ୍ରୀକୃଷ୍ଣଙ୍କୁ ନେଇ ଯେ ଯେଉଁଭଳି ପ୍ରତିଜ୍ଞା କରେ କୃଷ୍ଣ ତାହା ପୂରଣ କରନ୍ତି । ଧରିବାର ପ୍ରତିଜ୍ଞା କରିଛି ଯେତେବେଳେ ସେ ନିଶ୍ଚୟ ଧରା ଦେବେ । ଆଉ ଶେଷକୁ ତାକୁ ବି ଧରେଇ ଦେବେ । ଦିନେ ସେ ସାଙ୍ଗମାନଙ୍କୁ ନେଇ ଅନ୍ଧାରରେ ତା' ଘରକୁ ଗଲେ । ସବୁ ସାଙ୍ଗମାନଙ୍କୁ ଦୁଆର ମୁହଁରେ ଠିଆ କରି ସାବଧାନ କରେଇ କହିଲେ— "କେହି ହେଲେ ମୋ' ପଛେ ପଛେ ଆସିବ ନାହିଁ । ମୁଁ ଧରାପଡ଼ିଲେ ତମେ ସବୁ ମୋ' ସାଙ୍ଗରେ ପଛେ ପଛେ ପଳେଇବ ।" ସମସ୍ତେ ହଁ ଭରିଲେ । ଆଉ ସେ ନିଜେ ଧରାଦେବାକୁ ଗଲେ । ଗୋପୀ ଆଗରେ ଲହୁଣୀ ରଖି ଗୋଟାଏ କୋଣରେ ଧରିବ ବୋଲି ଛକି ବସିଥିଲା । ସେ ହାଣ୍ଡି ପାଖରେ ଚକାପାରି ବସିଯାଇ ଭୋଗ ଲଗେଇବା ଆରମ୍ଭ କରି ଦେଲେ । ପେଟ ପୂରି ଖାଇନେଲା ପରେ ଗୋପୀ ଧୀରେ ଧୀରେ ପଛପଟୁ ଆସି ତାଙ୍କୁ ଧରି ପକେଇ କହିଲା—"କାହ୍ନା ! ଆଜି ଆଉ କୁଆଡ଼େ ଯିବ ? ସେଦିନ ମାଆ କୋଳରେ ଥାଇ ମୋତେ ଚୋରଣୀ କହୁଥିଲ ନା ? ଏଇନେ ତମକୁ ଏପରି ମାଡ଼ ଦେବି ଯାହାକି

ଷଠି କ୍ଷୀର ଖାଇଲ୍ପ ପରି ମନେପଡ଼ିଯିବ । ଇଏ ତ ଆଉ ମାଆ କୋଳ ନୁହଁ, ଇଏ ମୋ’ ଘର ।

ସିଏ ହସି ଦେଇ କହିଲେ—“ଭଉଜ ! ତମକୁ ରାଣ, ଭାଇଙ୍କ ରାଣ, ମୁଁ କେବେ-ହେଲେ ଅଉ ତମ ଘରକୁ ଆସିବି ନାହିଁ ।”

ଗୋପୀ କହିଲା—“ଏ ରାଣ ଝିଅଁରେ କୋଉ ବଡ଼ୁଛୁ ନା ଛୁଡ଼ୁଛୁ । ଯା’ରାଣ ଖାଇବ ଖାଉନ—ମାଆଙ୍କ ରାଣ, ବାବାଙ୍କ ରାଣ । ମୁଁ କନ୍ଥୁ ଛାଡ଼ୁଲେ ସିନା ! ତମକୁ ଧରି ଆଜି ତକ୍ଷେ ମାଆଙ୍କ ପାଖକୁ ନେବ ହିଁ ନେବ ।”

ସିଏ ତା’ର ଗୋଡ଼ଧରି ପକେଇ କହିଲେ—“ଭଉଜ ! ମୋତେ ମାଆ ପାଖକୁ ନଅନାହିଁ, ମାଆ ମୋତେ ମାରିବ । ତମେ ଯାହା ଇଚ୍ଛା ଦଣ୍ଡ ଦିଅ ପଛକେ । କହିବ ତ ମୁଁ ତମର ପାପଗ୍ଯ ନେଇ ଯମୁନାରେ ଧୋଇଧାଇ ଆଣି ଦେବ ।”

ଗୋପୀ କହିଲା—“ମୋର କିଛି ଦରକାର ନାହିଁ । ତମକୁ ଖାଲି ମାଆ ହାତକୁ ପାନେ ଦିଆଇବ । ସେ କିଏ ଟାଣରେ କହୁଥିଲେ ମୋ’ ପୁଅ ଚୋର ନୁହଁ । ଆଜି ଧରମରେ ଚୋର ବୋଲି ଜାଣିବେ ତ ?”

ଶ୍ରୀକୃଷ୍ଣ କାନ୍ଦିବାକୁ ଲଗିଲେ । ଗୋପୀ କହିଲା—“ମୁଁ ତମର ଏଇ ମିଛ କାନ୍ଦଣାରେ ତରଳିବାବାଲୀ ନୁହଁ ।”

ସେ ସେତିକପରି କାନ୍ଦ କାନ୍ଦ ହୋଇ କହିଲେ— “ହଉ ତେବେ ଚାଲ ।”

ତା’ ପରେ ଗୋପୀ ଜୋର କରି ତାଙ୍କର ହାତ ଧରିଲା । ଶ୍ରୀକୃଷ୍ଣ ତା’ ସଙ୍ଗରେ ଚାଲିବାକୁ ଲଗିଲେ । ଶ୍ୟାମଙ୍କର ସଖା ଦଳ ବି ଇଶାରା ପାଇ ତାଙ୍କ ପଛେ ପଛେ ଚାଲିଲେ । ସେମାନେ ଚୋର···ଚୋର···ଚୋର ଧରାପଡ଼ିଛୁ ବୋଲି ପାଟି କରି କରି ଚାଲିଥାନ୍ତି । ଯିବା ବାଟରେ ଶ୍ରୀକୃଷ୍ଣ କହିଲେ—“ଭଉଜ ! ତମେ ଏତେ ଟାଣରେ ଧରିଛ ଯେ ଏ ହାତ କ’ଣ ହେଲାଣି, ତମେ ଏ ହାତ ଛାଡ଼ ଆଉ ହାତ ଧର ।” ଗୋପୀ ତ ପ୍ରକୃତରେ ଶ୍ରୀକୃଷ୍ଣଙ୍କୁ କଷ୍ଟଦେବାର ଇଚ୍ଛା ନ ଥିଲା । ସେ ଧରିଥିବା ହାତଟି ଛାଡ଼ି ଅନ୍ୟ ହାତଟି ଧରିଲା । ତା’ର ଖାଲି ଇଚ୍ଛା ଯେ ସେ ମାଆଙ୍କ ଆଗରେ ଶ୍ରୀକୃଷ୍ଣ ଚୋରି କରୁଛି ବୋଲି ପ୍ରମାଣିତ କରିଦେବ । ସେତେବେଳକୁ ସେମାନେ ନନ୍ଦଙ୍କ ଚଉପାଢ଼ି ନିକଟରେ ପହଞ୍ଚି ଯାଇଥିଲେ । ଚଉପାଢ଼ିରେ ଉପନନ୍ଦ, ସନନ୍ଦ ଆଦି ବୃଦ୍ଧଜନମାନେ ବସିଥିଲେ । ସେ ବୋହୂଟିର ଦେଢ଼ଶୁର, ଖୁଡ଼ୁଶୁର, ବଡ଼େଇ ଶଶୁର ମାନ୍ୟର ଲୋକେ ମଧ୍ୟ ଥିଲେ । ସେ ସାଙ୍ଗେ ସାଙ୍ଗେ ଦେଢ଼ହାତ ଲମ୍ବା ଓଢ଼ଣା ଟାଣିନେଲା । ସେତେବେଳେ ଧୀରେ ଧୀରେ ଶ୍ୟାମସୁନ୍ଦର କହିଲେ—ଭଉଜ ! ମୋର ଏ ହାତକୁ ବି କାଟିଲାଣି । ଆଉ ହାତଟି ଧର । ଏହା ଶୁଣି ଓଢ଼ଣା ଭିତରୁ ସେ ନ ଦେଖି ହାତ ବଢ଼ାଇଲେ, ଶ୍ରୀକୃଷ୍ଣ

ନିଜ ହାତ ବଦଳରେ ପଛେ ପଛେ ଆସୁଥିବା ତା' ଦିଅର ହାତଟି ଧରେଇଦେଲେ । ତାକୁ ଆଗରୁ ଶିଖେଇ ଦିଆ ଯାଇଥିଲା । ସିଏ ଆଦୌ ପାଟି ଫିଟେଇଲା ନାହିଁ ।

ଶ୍ରୀକୃଷ୍ଣ ଚଞ୍ଚଳ ଦଉଡ଼ି ଦଉଡ଼ି ଛୁଟି ଦୁଆର ବାଟେ ଘରେ ପଶି ମାଆ କୋଳରେ ବସିପଡ଼ିଲେ । ମା' ପଚାରିଲେ—"ଏତେ ଧଇଁସଇଁ କ'ଣ ହେଉଛୁ କହ୍ନା !"

ଶ୍ରୀକୃଷ୍ଣ କହିଲେ—"ମୁଁ ଖେଳାବାଡ଼ିରେ ଥିଲି । ସେ ବୁଢ଼ୀମାଇକିନା ମୋତେ ଦେଖି ଖେଁ ଖେଁ ହେଲାରୁ ଭୟରେ ଦଉଡ଼ି ଆସିଛି !"

ମାଆ ଡରିଯାଇ ପଚାରିଲେ—"କାମୁଡ଼ି ନାହିଁ ତ !"

ଶ୍ରୀକୃଷ୍ଣ କହିଲେ—"ନା, କାମୁଡ଼ିବ କେମିତି ? ମୁଁ ଏମିତି ଦଉଡ଼ିଲି ଯେ ସେ ମୋତେ ଛୁଇଁ ବି ପାରିଲା ନାହିଁ । ମୁଁ ତୋ' କୋଳରେ ପଡ଼ିଏ ଶୋଇଯିବି ।" ଶୋଇବି ବୋଲି କହିବାରୁ ଯଶୋଦା କୋଳ ସଜାଡ଼ି ତାଙ୍କୁ ଆପୁରେଇ ଦେବାକୁ ଲାଗିଲେ । ସେତିକିବେଳକୁ ସେ ଗୋପୀ ଆସି ପହଞ୍ଚିଗଲା । ଓଲଟି ହୋଇ କହିଲା—"କହିଥିଲି ନା, ଚୋରି କଲେ କାହ୍ନାକୁ ଧରି ଆଣିବି । ଦେଖ ଆଣିଛି । ଆଉ ମୋତେ ମିଛେଇ କହିବ ନାହିଁ ତ !"

ନନ୍ଦରାଣୀ କହିଲେ—"କ'ଣ କହୁଛୁ ? କାହାକୁ ଧରି ଆଣିଛୁ ? ତୁ ଗଞ୍ଜାଭାଙ୍ଗ ଖାଇଛୁ ତ ?"

ଗୋପୀ ଜୋର ଦେଇ କହିଲା—"ଚୋରି କଲାବେଳେ ତମ ପୁଅକୁ ଧରିନେଇ ଆସିଛି । ଦେଖନ୍ତୁ ଏ ଯାଏଁ ତାଙ୍କ ମୁହଁରେ ଲହୁଣୀ ଲାଗିଛି ।"

ମାଆ କହିଲେ—"ଆଲୋ ଆଣ୍ଡୁକୁଡ଼ୀ ଝିଅ, ଦେଖ । ସେ ତୋର ଦିଅର ନା ମୋ' ପୁଅ । ମୋ' ପୁଅ ତ ମୋ' କୋଳରେ ଶୋଇଛି ।"

ଗୋପୀ ଓଢ଼ଣା ଟେକି ଦେଖିଲା । ତା'ର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । କହିଲା—"ମୁଁ ତ କାହ୍ନାକୁ ଧରି ଆଣିଥିଲି । ଇଏ ପୁଣି ମୋ' ଦିଅର କେମିତି ହେଲା ?"

ମାଆ ହସିଦେଇ କହିଲେ—"ଆଜି ଦିଅରକୁ ନେଇ ଆସିଲୁ । କାଲି ବରକୁ ନେଇ ଆସିବୁ । ତୋ' ହାତ ଲାଗିଲେ ପିଲା ବଦଳି ଯାଉଛି ନା ହେଲେ ବର ଯେପରି ବଦଳି ନ ଯାଉ । ଏହା ଶୁଣି ଗୋପୀ ଲଜ୍ଜିତ ହେଲା ।"

ଶ୍ରୀକୃଷ୍ଣ କହିଲେ—"ମୁଁ କହୁଥିଲି ନା ଇଏ ଭାରି ଚେଣ୍ଡୁରୀ । ତା' ଘରେ ଯେତେ ଦୁଧ ସର, ସବୁ ନିଜେ ଲୁଚେଇ ଖାଇଦିଏ । ସ୍ୱା' ଦିଅର ତା' ଶାଶୂକୁ କହି ଦେଇଥିବ, ସେଇଥିଲାଗି ତାଙ୍କୁ ଧମକେଇବ ବୋଲି ନେଇଆସିଛି । ତୁ ତା' କଥାକୁ ପରତେ ଯିବୁନାହିଁ ।"

ଏକଥା ଶୁଣି ଗୋପୀ ଲେଉଟି ଗଲା । ଶ୍ରୀକୃଷ୍ଣ ଖିଲ୍ ଖିଲ୍ ହୋଇ ହସିବାକୁ ଲାଗିଲେ । ପିଲାମାନେ ତାଳି ମାଇଲେ । ଶ୍ରୀକୃଷ୍ଣ କହିଲେ—"ମାଆ ଦେଖ ସବୁ ପିଲା ଆସି ଜୁଟିଲେଣି । ଆଜି ଏମାନଙ୍କୁ ପେଟ ପୂରେଇ ଲହୁଣୀ ଖାଇବାକୁ ଦେ'। ମା' ସେମାନଙ୍କୁ ଅଗଣାରେ ବସେଇ ଲହୁଣୀ ଖୁଆଇଲେ । ମିଶ୍ରି ମିଶା ଲହୁଣୀ ଖାଇ ପିଲାଏ ଆନନ୍ଦରେ ଡେଇଁଲେ । ଖୁସି ମନରେ ସଭିଏଁ ଯେ ଯାହା ଘରକୁ ଗଲେ । ଏଣିକି ଶ୍ରୀକୃଷ୍ଣଙ୍କ ସାହସ ବଢ଼ିଗଲା । ତା'ପରେ ଦିନ ଦ'ପହର ବେଳକୁ ସେ ଚୋରି କରିବାକୁ ପଛେଇଲେ ନାହିଁ । ଚୋରେଇ ଆଣିଲା ଲହୁଣୀ ତାଙ୍କୁ ଯେମିତି ଆନନ୍ଦ ଦେଉଥିଲା, ଯା'ର ଚୋରେଇ ଆଣୁଥିଲେ ସିଏ ବି ଆନନ୍ଦ ପାଉଥିଲା ।"

ଗୋପୀଟିଏ ରହୁଁଥିଲା, ଶ୍ରୀକୃଷ୍ଣ ମୋ' ଘରୁ ସବୁଦିନ ଲହୁଣୀ ଚୋରେଇବାକୁ ଆସନ୍ତୁ । ହେଲେ ସବୁଦିନ କିଛି ନା କିଛି ଗୋଟେ ବଡ଼ ବିବାଦ ହେଉ, ଝଗଡ଼ା ହେଉ । ଦିନେ କୃଷ୍ଣ ବୁଲୁଥିଲେ । ସେଇ ଗୋପୀଟି ପଚାରିଲା—"କହ କାହ୍ନା ! କୁଆଡ଼େ ବାହାରିଲ ।"

କୃଷ୍ଣ କହିଲେ—"ତୁ ପଚାରିବାକୁ କିଏ ସେ ! ତୁ ମୋ' ଶଗୁନ ବିଗାଡ଼ି ଦେଲୁ । ଯଜାକୁ ସଜାକୁ ଅନୁକୂଳ ବିଗାଡ଼ୁଛୁ ।"

ଗୋପୀ କହିଲା—"ମୁଁ ଜାଣେ । ଜାଣେ ତମର ଯେତେ ସବୁ ଅନୁକୂଳ । ଏଇଠି ତମର କାତ ପାଇବ ନାହିଁ । ମୋ' ଘରେ ଚୋରି କରି ପାରିବ ନାହିଁ । ଏ ବାଟରେ ଆଉ ଯାଇବ ନାହିଁ । ଆସିଲେ ଭଲ ହବନାହିଁ ।"

ଶ୍ରୀକୃଷ୍ଣ କହିଲେ—"ଆରେ ଯା' ! ଏ ବାଟ କ'ଣ ତୋ' ବାପର କି ! ହଜାର ଥର ଆସିବ । ତୁ ମନା କରିବାକୁ କିଏ ସେ !" ଏଇଆ କହି ସେ ପଳେଇଲେ ।

ଶ୍ରୀକୃଷ୍ଣ ଗଲାପରେ ଗୋପୀ ବାରମ୍ବାର ଚିନ୍ତାକଲା—"ଏଇନେ କାହ୍ନା ଆସିବ, ଆଉ ଘଡ଼ିକେ ଆସିବ ।" ଏଇଆ ଭାବି ଭାବି ବେଳବୁଡ଼ିଗଲା । ସାରା ରାତି ସିଏ ଚେଇଁ ରହିଥାଏ । ସଜାକୁ ସଜାକୁ ଲହୁଣୀ କାଢ଼ି ଆଶା କରି ବସିଥାଏ । ଶ୍ୟାମ ଆସିଲେ ନାହିଁ । ତା'ର ବ୍ୟାକୁଳତା ବଢ଼ିବାକୁ ଲାଗିଲା । ଖାଇବା ପିଇବା ପର୍ଯ୍ୟନ୍ତ ଭୁଲିଗଲା । ତା'ପର ଦିନ ବି ସେମିତି କଟିଲା । ଏଣିକି ଶ୍ୟାମସୁନ୍ଦରଙ୍କ ମନ ବି ଉଚାଟ ହେଲା । ସେ ଆସିଲେ । ଗୋପୀର ମନସ୍କାମନା ପୂର୍ଣ୍ଣ ହେଲେ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଗୋପୀଙ୍କ ମୁହଁରୁ ସବୁଦିନ ଶ୍ୟାମର ଚୋରି କଥା ଶୁଣି ଶୁଣି ମାଆଙ୍କର ବି ଇଚ୍ଛା ହେଲା, ମୁଁ କେମିତି ଶ୍ୟାମର ଲହୁଣୀ ଚୋରି କରି ଖାଇବା ଦେଖନ୍ତି ! ବାଞ୍ଛାକଳ୍ପତରୁ ଶ୍ରୀହରି ମାଆଙ୍କର ଇଚ୍ଛା ପୂରଣ କରିବାକୁ ବିଚାର କଲେ ।"

## ଛପ୍‌ପୟ୍

" ନନ୍ଦରାନୀ ସୁନ ହଁସୀ କହେଁ ମଦମାତୀ ତୁମ ସବ ।
କନୁଆ ମମ ଢିଁଗ ରହେ କରେ ଘର ଘର ଚୋରୀ କବ ॥
ଊପର ତେଁ କରି ରୋଷ, କହେଁ ଗୋପୀ ତୁମ ରାନୀ ।
ପକ୍ଷ କରେଗୀ ପୁତ୍ର ପ୍ରଥମ ହୀ ହମନେ ଜାନୀ ॥
ଜୋ କିହୁ ବାହର କରତୁ ହେ, ସେ ଢର ମହ ହୂକରେଗୋ ।
ଚୋରୀ ପକରେ ଦଣ୍ଡ ଫିର, ଦେବୋ ତୁମକୁଁ ପରେଗୋ ॥

●

# ଯଶୋଦା ମାତାଙ୍କ ଦଧିମନ୍ଥନ

କ୍ଷୌମଂ ବାସଃ ପୃଥୁକଟିତଟେ ବିଭ୍ରତୀ ସୂତ୍ରନଦ୍ଧମ୍ ।
ପୁତ୍ରସ୍ନେହସ୍ନୁତକୁଚଯୁଗଂ ଜାତକମ୍ପଂ ଚ ସୁଭ୍ରୂଃ ॥
ରଜ୍ଜ୍ୱାକର୍ଷଶ୍ରମଭୁଜଚଲତ୍‌କଙ୍କଣୌ କୁଣ୍ଡଲେ ଚ ।
ସ୍ୱିନ୍ନଂ ବକ୍ତ୍ରଂ କବରବିଗଲନ୍ମାଲତୀ ନିର୍ମମନ୍ଥ ॥

(ଶ୍ରୀଭା ୧୦ସ୍କ, ୯ଅ, ୩ ଶ୍ଳୋକ)

## ଛପ୍‌ପୟ୍

ସୋଚେଁ ତନ ମହଁ ମାତୁ ବନେ କିହୁ କୈସେ ଛୋଟୀ ।
କୈସେ ଘରଘର ଜାଇ କରେ ମାଖନ କୀ ଚୋରୀ ॥
କରି କରି କ୍ରୀଡ଼ା ସରସ ଶ୍ୟାମ ସୁଖ ସବକୁଁ ଦୀନ୍ହୋ ।
ମାତୁ ମନୋରଥ ସିଦ୍ଧ କରହୁଁ ହରି ନିଶ୍ଚୟ କୀନ୍ହୋ ॥
ଭୋର ଭୟୋ ଜନନୀ ଉଠୀ, ଦଧି ପରୌଁଢ ମଥିବେ ଲଗୀ ।
ଘମର ଘମର ଜୋ ମଧୁର ରବ, ସୁନ ହରି କୀ ନିଦ୍ରା ଭଗୀ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଯଶୋଦା ମାତାଙ୍କର ଦଧିମନ୍ଥନକାଳୀନ ଅପୂର୍ବ ଶୋଭା କେଉଁପରି, ଶୁଣନ୍ତୁ । ତାଙ୍କର କଟିଭାଗ ସ୍ଥୂଳ । ସେ କଟିବନ୍ଧନଯୁକ୍ତ

ରେଶମୀ ବସ୍ତ୍ର ପରିଧାନ କରିଛନ୍ତି । ତାଙ୍କର ଉଭୟ ସ୍ତନ ଆନ୍ଦୋଳିତ ହେଉଛି, ପୁତ୍ର ସ୍ନେହ ହେତୁ ସ୍ତନରୁ ଦୁଗ୍ଧ ଝରି ପଡ଼ୁଛି । ବାରମ୍ବାର ରଜ୍ଜୁ ଟାଣିବା ହେତୁ ଭୁଜର କଙ୍କଣ ଆଉ କର୍ଣ୍ଣ-କୁଣ୍ଡଳ ଦୋଳାୟିତ ହେଉଛନ୍ତି । ଶ୍ରମ ହେତୁ ସେହି ସୁଭ୍ରୂବତୀ ଯଶୋଦାଙ୍କ ମୁଖମଣ୍ଡଳରେ ସ୍ୱେଦ ଫୁଟି ପଡୁଛି ଏବଂ ବେଣୀରେ ଲଗିଥିବା ମାଳତୀ ଫୁଲ ଆନ୍ଦୋଳିତ ହୋଇ ଖସିପଡ଼ୁଛି ।"

ସଂସାରର ସବୁଠାରେ ସୌନ୍ଦର୍ଯ୍ୟତା ହିଁ ପୂରି ରହିଛି; ମାତ୍ର ତାକୁ ଉପଭୋଗ କରିବାର ଯୋଗ୍ୟତା ଥିବା ଉଚିତ । ସୌନ୍ଦର୍ଯ୍ୟ ଉପାସକ କବି ସବୁଠାରେ ସୌନ୍ଦର୍ଯ୍ୟ ହିଁ ଦେଖନ୍ତି । କବିମାନଙ୍କୁ ଫଳ, ଫୁଲ ପଲ୍ଲବିତ ଶ୍ୟାମଳ ବୃକ୍ଷ ବେଶ୍ ସୁଖ ଦେଇଥାଏ । ସେମାନେ ସେଥିରେ ଅନନ୍ତ ସୌନ୍ଦର୍ଯ୍ୟର ଅନୁଭବ କରନ୍ତି । ତାହା ସହିତ କଥା ହୁଅନ୍ତି । ସେମାନେ ପ୍ରତ୍ୟେକ ଘଟଣାରେ ସୌନ୍ଦର୍ଯ୍ୟ ଦେଖନ୍ତି; ବନ, ଉପବନ, ଘର ସାଗର, ନଦ ନଦୀ, ଗିରି, ଗିରିଶିଖର, ପୁର, ନଗର, ଶିକ୍ଷିତ, ଅଶିକ୍ଷିତ, ବାଳକ, ବୃଦ୍ଧ, ପ୍ରୌଢ଼, ଯୁବକ, ନର ନାରୀ, କଳା ଗୋରି, ରୂପବାନ, ଅରୂପ, ହସ କାନ୍ଦ; ଯାହା ତାଙ୍କର ଆଖିରେ ପଡ଼େ ସେସବୁ ସେମାନଙ୍କ ଦୃଷ୍ଟିରେ ସୁନ୍ଦର । କେହି ଆସିଲେ ହସନ୍ତି, ଗଲେ ବି ହସନ୍ତି । କେହି ହସିଲେ ସେମାନଙ୍କର ଆନନ୍ଦ, କାନ୍ଦିଲେ ବି ଆନନ୍ଦ । କେହି ପ୍ରତିଜ୍ଞା କଲେ ଯେଉଁଭଳି ଆନନ୍ଦ, ପ୍ରତିଜ୍ଞା ଭଙ୍ଗ କଲେ ମଧ୍ୟ ସେହିଭଳି ଆନନ୍ଦ । ଆବଶ୍ୟକ ପୂରଣ ହେଲେ ଯେଉଁଭଳି ଆନନ୍ଦ, ଅଭାବରେ ମଧ୍ୟ ସେହିଭଳି ଆନନ୍ଦ । ଗମ୍ଭୀରତା ତାଙ୍କୁ ଯେଉଁଭଳି ସୁଖକର, ଚଞ୍ଚଳତା ମଧ୍ୟ ସେହିପରି ସୁଖକର । ଯାହାକୁ ଅନୁକୂଳ, ପ୍ରତିକୂଳ ଦୁଇ କଥାରେ ସୁଖାନୁଭୂତି ମିଳିଥାଏ । ଲୁଣି ଓ ଅଲଣା ଦୁଇଥିରେ ସ୍ୱାଦ ମିଳେ, ସେଇ କବି । ବାସ୍ତବିକ ଦେଖିଲେ ଅଲଣା ତରକାରୀରେ ବି ଏକ ଭିନ୍ନ ସୁଗନ୍ଧ ଥାଏ । ସେଇ କଥାଟିକୁ କବି ହିଁ ଅନୁଭବ କରିପାରେ । ଆମେ ସଂସାରୀମାନେ ଘଟଣାକୁ ଯେପରି ଭାବରେ ଦେଖିଥାଉ, କବି ତାକୁ ଭିନ୍ନ ଦୃଷ୍ଟିରେ ଦେଖେ । କୌଣସି ସ୍ତ୍ରୀକୁ କାନ୍ଦୁଥିବା ଦେଖିଲେ ଆମକୁ ଦୁଃଖ ଲାଗେ । ମାତ୍ର କବି ତା'ର କିସ୍ୱାଗୁଡ଼ିକକୁ ନିରେଖି ଦେଖେ । ତା'ର ଲୁହ କିପରି ଭାବରେ ବହି ଆସୁଛି, ତା'ର ମୁଖଭଙ୍ଗୀ କିଭଳି ହେଉଛି, ସେ କେଉଁ ସ୍ୱରରେ କାନ୍ଦୁଛି, ଲୁହ ବିନ୍ଦୁ ବିନ୍ଦୁ ହୋଇ କେଉଁଠାରେ ପଡ଼ୁଛି । ସେ କାନ୍ଦିବାର ସୌନ୍ଦର୍ଯ୍ୟ ଚିନ୍ତାରେ ସେତେବେଳେ ମଗ୍ନ ଯାଏ ।

ଜଣେ କବିଥିଲେ । ସେ ଗ୍ରୋଟବଗିଗୃହଟିଏ କରିଥିଲେ । ସେଥିରେ ସେ ମଟରଛୁଇଁ ଲଗେଇ ଥିଲେ । ଗୋଟାଏ ବଡ଼ ପଶୁ ତା' ଭିତରେ ପଶି ଖାଇବାକୁ ଲାଗିଲା । ସ୍ୱଭାବତଃ ଲଠି ନେଇ କବି ପଶୁକୁ ଘଉଡ଼ିବାକୁ ବାହାରିଲେ । ସେ ଲଠି ଉଠେଇଲେ । ପଶୁ ତାଙ୍କୁ ଦେଖି ଆଖି ନାଲି ନାଲି କରି ମାରି ଗୋଡ଼େଇଲା । ସେତେବେଳେ ତା'ର କାନ୍ଧ ସୁନ୍ଦର ଭାବରେ ଆନ୍ଦୋଳିତ ହେଉଥିଲା, ପାଦ ଦଟେଇ, ମୁଣ୍ଡ ନୁଆଁଇ ସେ ବେଗରେ କବିଙ୍କ ଆଡ଼କୁ

ଆଗେଇଲା । କବି ତା'ର ସ୍ୱଗର ଭଙ୍ଗୀ ଦେଖି ଆତ୍ମବିସ୍ମୃତ ହୋଇଗଲେ ଏବଂ ତା'ର କୋଧମୁଦ୍ରାର ରସାସ୍ୱାଦନ କରିବାକୁ ଲାଗିଲେ । ଯେଉଁଠି ଥିଲେ ସେଇଠାରେ ହିଁ ଠିଆ ହୋଇ କରେଖି ରହିଲେ । ଏହା କବିର ହୃଦୟ । କବିର ଦୃଷ୍ଟିକୁ ସାଧାରଣ ଲୋକେ ବୁଝି ପାରିବେ ନାହିଁ । ଯେଉଁ ଘଟଣାକୁ ଆମେ ସବୁଦିନ ଦେଖୁଛୁ, ସେମାନଙ୍କ ପ୍ରଭାବ ଆମ ଉପରେ ପଡ଼ୁନାହିଁ । ସେଇଆକୁ ଦେଖି କବି ବର୍ଣ୍ଣନା କଲେ ଆମେ ଯେତେ ପଢ଼ିଲେ ବି କ୍ଳାନ୍ତ ଅନୁଭବ କରୁନା । ରାମ କୃଷ୍ଣ ଆଦି ଯେତେ ଯେତେ ଅବତାର ହୋଇଛନ୍ତି, ସେହି ସ୍ୱରୂ ଚରିତମାନଙ୍କୁ କବିମାନେ ଅନ୍ତର୍ଦୃଷ୍ଟିରେ ଦେଖି ନ ଥିଲେ ସେ କଥାଗୁଡ଼ିକ ଅମର ହୋଇ ନ ଥାନ୍ତେ । ଇତିହାସର ଚରିତମାନଙ୍କୁ କବିମାନେ ହିଁ ଅମର କରିଥାନ୍ତି । ଯେ ସାଧାରଣ କଥାରେ ବି ସରସତା ଭରି ଦିଏ ସେ କବି । ସ୍ତ୍ରୀମାନଙ୍କର ଦଧି ମନ୍ଥନ ସମସ୍ତେ ଦେଖିଛନ୍ତି । ସବୁଦିନ ଦେଖିଲେ ହେଁ ସେମାନଙ୍କ ଉପରେ କୌଣସି ପ୍ରଭାବ ପଡ଼େ ନାହିଁ । ସେହି ମନ୍ଥନର ବର୍ଣ୍ଣନା ଆମେ କବିର ଲେଖାରୁ ପଢ଼ିଥାଉଁ । ସେତେବେଳେ ଆମର ଶୁଷ୍କ ହୃଦୟ ସରସ ହୋଇଯାଏ । ମାତା ଯଶୋଦାଙ୍କର ଦଧି ମନ୍ଥନ ସମୟର ଶୋଭା ଉପରେ ଅପୂର୍ବ ତା'ର ସାକାର ବର୍ଣ୍ଣନା ଭଗବାନ ବ୍ୟାସଦେବ କରିଛନ୍ତି । ଭାଗ୍ୟଶାଳୀ ହିଁ ସେହି ବର୍ଣ୍ଣନା ପଢ଼ି ତା'ର ରସ ଆସ୍ୱାଦନ କରିପାରିବ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ରୀକୃଷ୍ଣଙ୍କ ଚୋରି କରୁଥିବା ବୈଷୟିକ ସମ୍ବାଦ ଶୁଣି ଶୁଣି ମାତା ଯଶୋଦା ମଧ୍ୟ ଭାବିବାକୁ ଲାଗିଲେ—ଶ୍ରୀକୃଷ୍ଣ ଗୋପୀମାନଙ୍କ ଘରୁ ଲହୁଣୀ ଚୋରିଉଛୁ, ତା'ର ଚୋରି କରିବା ମୁଁ କେମିତି ଦେଖିବି ? କେବେ ମୋ ଆଗରେ ଚୋରି କରନ୍ତା ଯଦି ମୁଁ ତାକୁ ଡରେଇ ଧମକେଇ ଆକଟ କରନ୍ତି । ପିଲାଙ୍କୁ ଆକଟ କରିବାରେ ବି ଆନନ୍ଦ ଅଛି । ସର୍ବାନ୍ତର୍ଯାମୀ ପ୍ରଭୁଙ୍କର ସବୁ କାର୍ଯ୍ୟ ଭକ୍ତମାନଙ୍କୁ ଆନନ୍ଦ ଦେବାକୁ ହୋଇଥାଏ । ସେ ମାତାଙ୍କର ମନକଥା ବୁଝିଲେ ଏବଂ ମାତାଙ୍କ ଆଗରେ ମଧ୍ୟ ବାତ୍ସଲ୍ୟ ରସର ଅଭୂତପୂର୍ବ ଧାରା ବୁହାଇ ଦେବାକୁ ସ୍ଥିର କଲେ—ତାଙ୍କୁ ମଧ୍ୟ ଚୋରି ଦେଖେଇବି । ମାତା ଯେତେ ଲୀଳା ଦେଖିବାକୁ ବ୍ୟାକୁଳ ହେଉଥିଲେ ଏ ଲୀଳାଧାରୀ ସେତେ ଲୀଳା କରିବାକୁ ବ୍ୟଗ୍ରଥିଲେ ।"

ପୁଅକୁ ଆନନ୍ଦ ଦେବାକୁ ହିଁ ମାତା ଯଶୋଦା ସବୁ କାମ କରୁଥିଲେ । ଗୁହାଳରେ ଲକ୍ଷ ଲକ୍ଷ ଗାଈ । ଦାସଦାସୀ ସେମାନଙ୍କର ଦେଖାରେଖା କରନ୍ତି । ନନ୍ଦବାବା ସେମାନଙ୍କର ପ୍ରତିପାଳନ କରନ୍ତି । ଘରେ ପୂଜା କରିବାକୁ ନନ୍ଦରାଣୀ ଦଶ କୋଡ଼ିଏଟି ଗାଈ ରଖିଥିଲେ । ସେମାନଙ୍କୁ ଗୁଡ଼ ମିଶ୍ରି ଖାଇବାକୁ ଦିଆଯାଏ, ପାଣି ସାଙ୍ଗରେ ଦୁଧ ମଧ୍ୟ ଦିଆଯାଏ । ଏମିତି କଲେ ଦୁଧ ଗାଢ଼ ହୁଏ, ବେଶି ମିଠାଲାଗେ । ସେ କ୍ଷୀରରୁ ପଦ୍ମଫୁଲ ସୁବାସ ଆସେ; ତେଣୁ ସେ ଗାଈମାନଙ୍କୁ ପଦ୍ମଗନ୍ଧା କୁହାଯାଉଥିଲା । ସେମାନଙ୍କ ନାଆଁ ଦିଆ ହୋଇଥିଲା—ଶ୍ୟାମା, ରାମା, ଗଙ୍ଗା, ଯମୁନା ଓ ତ୍ରିବେଣୀ ଆଦି । ଯଶୋଦା ମାତା ସେମାନଙ୍କର ଭଲମନ୍ଦ

ଲୁଚୁଥିଲେ । ସେମାନଙ୍କ ଭିତରୁ ଗୋଟିଏ ଦୁଇଟିର କ୍ଷୀର ସେ ନିଜେ ଦୁହୁଁଥିଲେ । ସେଇ କ୍ଷୀର ନାରାୟଣ ସେବାରେ ଲାଗୁଥିଲା । ସେ ତାକୁ ନିଜେ ଗରମ କରୁଥିଲେ, ଦହି ବସଉଥିଲେ, ଆଉ ନିଜେ ଦହି ମନ୍ଥନ କରି ଶ୍ୟାମସୁନ୍ଦରଙ୍କୁ କୋଳରେ ଧରି ଖାଇବାକୁ ଦେଉଥିଲେ । ମାଆ ମନ ତ ! ମୋ' ପୁଅର ଲହୁଣୀକୁ ଖରି ମନ । ଯେମିତି ଲହୁଣୀ ଭଲରୁ ଭଲହେବ ସେଇ ଚିନ୍ତା ତାଙ୍କୁ ଘାରୁଥାଏ ।

କୃଷ୍ଣଙ୍କୁ ଏଇନେ ଚାରି ପାଞ୍ଚ ବର୍ଷ । ଦୁଧ, ସର, ଦହି, ଲହୁଣୀ ସବୁ ଖାଆନ୍ତି । ଭାତ ଡାଲି ବି ଖାଆନ୍ତି । ତଥାପି ମା'ଙ୍କର ସ୍ତନପାନ କରିବା ଛାଡ଼ନାହାନ୍ତି । ବର୍ଷଟିଏ ପରେ ଆଉ ଏକ ସନ୍ତାନ ହେଲେ ପ୍ରଥମ ପିଲାର କ୍ଷୀରପିଆ ଛାଡ଼ିଯାଏ; ନ ହେଲେ ଛଡ଼େଇ ଦିଆଯାଏ । ଆଉ କେତେ ଜାଗାରେ ସନ୍ତାନ ନ ହେଲେ ମଧ୍ୟ ପିଲାଏ ସିଆଣା ହେବାଯାଏଁ କ୍ଷୀର ଖାଉଥାଆନ୍ତି । ସେଇପରି ଥିଲା କୃଷ୍ଣଙ୍କ କଥା । ତାଙ୍କ ପରେ ଆଉ କେହି ନ ଥିଲେ. ମାଆ ତାଙ୍କ ପାଇଁ ଛପନ ଭୋଗ ତିଆରି କରି, ନିଜ ହାତରେ ଖୁଆଇଲେ ବି ସେ ମାଆଙ୍କଠାରୁ କ୍ଷୀର ନ ଖାଇବାଯାଏଁ ତୃପ୍ତ ହେଉ ନ ଥିଲେ । ସେଥିରେ ମାତାଙ୍କୁ ବି ଆନନ୍ଦ ମିଳୁଥିଲା । ସେ ମାଆଙ୍କ କୋଳରେ ଶୋଉଥିଲେ । ସେ ମାଆଙ୍କୁ ଜାବୁଡ଼ି ଧରୁଥିଲେ । ମାଆ ପଲଙ୍କରେ ଶୋଇରହି ସେ ଦାସୀମାନଙ୍କୁ ବତେଇ ଦେଉଥିଲେ—"ଦେଖ ମନ୍ଥାନ କାଠି ଗରମ ପାଣିରେ ଧୋଇଦବ । ତରବରିଆ କରିବ ନାହିଁ । ଦହି ମନ୍ଥୁ ମନ୍ଥୁ ଥଣ୍ଡା ହୋଇଗଲେ, ଖେଳେଇ ହୋଇଗଲେ ଗରମ ପାଣି କିଛି ଢାଳିଦବ । ଗରମ ପାଣି ପଡ଼ିଲେ ଥଣ୍ଡା ଭାଙ୍ଗିଯିବ ଆଉ ସବୁ ଫିଟିଗଲା ଲହୁଣୀ ଏକଠି ହୋଇଯିବ । ଆଉ ଲହୁଣୀ ବାହାର କରିବା ସମୟ ଆସିଲେ ନିଜେ ଆସି ବାହାର କରି ନିଅନ୍ତି । ଦଧି ମନ୍ଥନ, ଚକି ପେଷା ଏସବୁ କାମ ସୂର୍ଯ୍ୟ ଉଇଁଲା ଆଗରୁ ହୋଇଯିବା କଥା । ଯୋଉ ସ୍ତ୍ରୀ ସୂର୍ଯ୍ୟ ଉଇଁଲା ଆଗରୁ ଏ ସବୁ କାମ କରେ ନାହିଁ ଆଉ ସୂର୍ଯ୍ୟୋଦୟ ପରେ ବି କରୁଥାଏ ସେ ଅଲକ୍ଷଣୀ; ଲକ୍ଷ୍ମୀ ତା' ଘରେ ରହନ୍ତି ନାହିଁ । ତେଣୁ ଚକି ଅଉ ମନ୍ଥନ ଶବ୍ଦ ସୂର୍ଯ୍ୟ ଉଇଁବା ପୂର୍ବରୁ ବନ୍ଦ ହୋଇଯିବା କଥା ।" ତେଣୁ ଭୋରରୁ ମାତୁ ଅନ୍ଧାର ଥାଉଥାଉ ମା' ପୁଅକୁ ଆପୁଡ଼େଇ ଶୁଆଇ ଦିଅନ୍ତି । ଆଉ ତେଣେ ଦାସୀଙ୍କ ହାତରେ କାମ କରଉଥାନ୍ତି ।

ଦିନେ କ'ଣ ପର୍ବ ଥିଲା । ଘରେ ସବୁ ଦାସୀ ଯେ ଯାହା କାମରେ ଲାଗିଥିଲେ । ସେତେବେଳଯାଏଁ ଦହି ମନ୍ଥାଯାଇ ନ ଥିଲା । ମାଆଙ୍କୁ କେବଳ ପୁଅର ଚିନ୍ତା ଥିଲା—ଉଠିଲା ମାତ୍ରକେ ସେ ଲହୁଣୀ ମାଗିବ । ସେତେବେଳେ କୋଉଠୁ ଦେବି । ମୁଁ ଯାଇ ମନ୍ଥିଦିଏଁ । ଏ ଦୁଷ୍ଟ ଉଠି ପଡ଼ିବ ଯଦି କିଛି କାମ କରେଇ ଦବନାହିଁ । ତାକୁ ତଟକା ଲହୁଣୀ ନ ଦେଲେ ସେ କାନ୍ଦି କାନ୍ଦି ଘର କମ୍ପାଇଦେବ ।" ଏଇଆ ଭାବି ସେ ଧୀରେ ଧୀରେ ଉଠିଲେ, ଯେମିତି କୃଷ୍ଣଙ୍କୁ ଜଣା ପଡ଼ିବ ନାହିଁ । ସେ ଉଠି ଆସୁଥିଲେ, ପୁଣି କୃଷ୍ଣଙ୍କ ମୁହଁକୁ ଚାହିଁ ରହୁଥିଲେ; କାଳେ ଉଠି ପଡ଼ିଲାକି

ବୋଲି ଦେଖୁଥିଲେ । ଶ୍ରୀକୃଷ୍ଣ ତ ଆଜି ବିଚିତ୍ର ଲୀଳା କରିବେ ବୋଲି ସ୍ଥିର ସାରିଥିଲେ; ତେଣୁ ସେ ବେଶ୍ ନିଦରେ ଶୋଇ ରହିଥିଲେ । ମା'ର ଉଠିଯିବା ବି ଜାଣିଲେ ନାହିଁ ।

ମାଆ ଉଠିଯାଇ ତୁରନ୍ତ ଗରମ ପାଣିରେ ହାତ ଗୋଡ଼ ଧୋଇନେଲେ । ମନ୍ଥାନକୁ ସଫା କରିନେଲେ । ଦହି ହାଣ୍ଡି ସବୁ ଟେକି ଆଣିଲେ । ଶବ୍ଦ ନ ହେବ ଯେମିତ, ଧୀରେ ଧୀରେ ହାତ ଛୁଆଁଇ ଦେଖିଲେ । କାଠ ପୂରେଇଲେ, ଦଉଡ଼ି ସଜଳ କରି ଧରିନେଲେ । ଦଉଡ଼ି ମନ୍ଥାନୀ ଦଣ୍ଡରେ ଗୁଡ଼େଇ ହୋଇ ରହିଥିଲା । ସୁନା ତିଆରି ଝୁମୁକା ଲାଗିଥିଲା । ମାଆ ଦଣ୍ଡ ନେଇ ଦହିରେ ବୁଡ଼େଇଲେ···ତା'ପରେ ଦହି ମନ୍ଥିବାକୁ ଲାଗିଲେ ।

ମାଆଙ୍କର ଦହି ମନ୍ଥିବାବେଳର ଶୋଭା କେତେ ମନୋହର ! ଦହି ମନ୍ଥିଲାବେଳେ, ଚକିରେ ପେଷିବାବେଳେ ମାଆମାନେ ଗୁଣୁଗୁଣୁ ହୋଇ ଗୀତ ଗାଉଥାନ୍ତି ; ସେଥିରେ ମନ ଲାଗିଗଲେ କାମ ବାଧା ଜଣା ପଡ଼େନାହିଁ । ମାଆ ମଧ୍ୟ ଦହି ମନ୍ଥିଲାବେଳେ ପୁଅର ବାଲ୍ୟଲୀଳା ସ୍ମରଣ କରି ଗୀତଭଲି ଗାଇ ଯାଉଥାନ୍ତି । ବ୍ରଜରେ ଗୋପୀଟିଏ ଥିଲା । ସେ ଭାରି ସୁନ୍ଦର ଗୀତ ଲେଖୁଥିଲା । ସେ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳାର ସୁନ୍ଦର ବର୍ଣ୍ଣନା କରିଥିଲା । ଭାରି ମଧୁର ଗୀତ ଲେଖୁଥିଲା । ସେ ଗୀତଗୁଡ଼ିକୁ ମାଆ ମୁଖସ୍ଥ କରି ନେଇଥିଲେ । ତାଙ୍କୁ ପୁଅର ସବୁ କଥା ଭଲ ଲାଗୁଥିଲା । ସେ ସେଇ ଲୀଳାଗୀତ ଗାଇବାକୁ ସୁଖ ପାଉଥିଲେ । ତେଣୁ ସେ ଟିକିଏ ସମୟ ପାଇଲେ ସେଇ ଗୀତ ଗାଉଥିଲେ । ଆଜି ମାଆ ଦହି ମନ୍ଥିବା ସମୟରେ ମନ୍ଥନର ଘମର ଘମର ଶବ୍ଦ ସାଙ୍ଗରେ ସ୍ୱର ମିଶେଇ ଗାଇ ଚାଲିଥିଲେ । ସେ ଗୋଟିଏ ସୁନ୍ଦର କୁଟିକିମକରା ପୀଢ଼ାରେ ବସିଥିଲେ । ତା'ର ଖୁରାଗୁଡ଼ିକ ଚନ୍ଦନ କାଠରେ ତିଆରି ହୋଇଥିଲା । ବଡ଼ ଦହି ହାଣ୍ଡିରେ ବସାଦହି ଭରି ରହିଥିଲା ! ମନ୍ଥନ ଦଣ୍ଡରେ ଗୁଡ଼େଇ ହୋଇ ରହିଥିବା ଦଉଡ଼ି ବାଆଁ ଡାହାଣକୁ ଟାଣି ମନ୍ଥନ କରିବା ସମୟରେ ଛିଟି ହୋଇ ପଡ଼ୁଥିବା ବିନ୍ଦୁ ବିନ୍ଦୁ ଦହି ଏପରି ମନେ ହେଉଥିଲା ଯେପରି କ୍ଷୀରସାଗରରୁ ମୁକ୍ତା ଛିଟିକି ପଡ଼ୁଛି । ଯଶୋଦାଙ୍କର ଶରୀର ସାମାନ୍ୟ ସ୍ଥୂଳ ଥିଲା । କଟିଭାଗ ସ୍ୱାଭାବିକ ଭାବରେ କିଛି ଅଧିକ ଥିଲା । ସେ ଅତି ସୁନ୍ଦର ପାଟ ଶାଢ଼ୀଟିଏ ପିନ୍ଧିଥିଲେ । କେହି ନଥିଲେ ଏବଂ ବିଶେଷତଃ କୌଣସି ପୁରୁଷର ଆସିବା ସମ୍ଭାବନା ନ ଥିବାରୁ ସେ ସତର୍କ ନ ଥିଲେ; ତେଣୁ ଓଢ଼ଣା ଖସି ଯାଉଥିଲା ଓ ବେଣୀ ଏଣେତେଣେ ଝୁଲୁଥିଲା । ବେଣୀ ଅତି ସୁନ୍ଦର ଭାବରେ ଗୁନ୍ଥା ଯାଇଥିଲା । ରାତିରେ ଦାସୀମାନେ ବେଣୀରେ ମାଳତୀ ଫୁଲ ଗୁନ୍ଥି ଦେଇଥିଲେ । ମାଳତୀ ମାଳା ମଧ୍ୟ ଖଞ୍ଜା ହୋଇ ରହିଥିଲା । ଦହି ମନ୍ଥିଲାବେଳେ ବେଣୀରେ ଗୁନ୍ଥା ହୋଇଥିବା ଫୁଲ ଖସି ଖସି ପଡ଼ୁଥିଲେ । ମନେ ହେଉଥିଲା ଯେପରି ଦେବଗଣ ଆକାଶରୁ ପୁଷ୍ପ ବର୍ଷା କରୁଛନ୍ତି । ଅଥବା ଫୁଲଗୁଡ଼ିକ ମା'ଙ୍କର ପାଦରେ ପଡ଼ି ଏହା ତୁମର କାମ ନୁହ ବୋଲି ମନା କରୁଛନ୍ତି । କହୁଛନ୍ତି, ଏହା ଦାସୀମାନଙ୍କର କାମ, ସେମାନେ ଆସି କରିବେ । ଆପଣ କାହ୍ନାଙ୍କ ପାଖକୁ ଯାଆନ୍ତୁ କିମ୍ବା ମାଆଙ୍କ ସାଧାରଣ

କାମ କରୁଥିବା ଦେଖି ଫୁଲମାନେ ଲଜ୍ଜିତ ହେଉଛନ୍ତି । ଭାବୁଛନ୍ତି—ସ୍ୱୟଂ ମାଆ ଯଦି ଏତେ ଶ୍ରେଷ୍ଠ ଶ୍ରେଷ୍ଠ କାମ କରୁଛନ୍ତି, ତା'ହେଲେ ଆମେ କେଉଁ ଅଧିକାରରେ ସବୁଠୁଁ ଉପରେ ଏପରିକି ମାଆଙ୍କର ମୁଣ୍ଡରେ ରହିବୁଁ । ଆମେ ମଧ୍ୟ ତଳକୁ ଖସି ଆସିବା ଉଚିତ କିମ୍ବା ସେମାନେ ଭାବନ୍ତେ ଯେ ଶ୍ରୀକୃଷ୍ଣ ମାତାଙ୍କ ପାଖକୁ ଏହି ବାଟରେ ଆସିବେ, ତେଣୁ ତାଙ୍କର ଆସିବା ବାଟରେ ଫୁଲ ବିଛେଇ ଦେବା ଉଚିତ ହେବ । ତେଣୁ ସେମାନେ ମାଆଙ୍କ ମୁଣ୍ଡରୁ ଓହ୍ଲେଇ ପଡ଼ି ଶ୍ରୀକୃଷ୍ଣଙ୍କର ଆସିବା ବାଟରେ ଲୋଟି ପଡ଼ୁଛନ୍ତି ; କିମ୍ବା ଫୁଲମାନେ ଭାବୁଥିବେ ଯେ ବ୍ରଜରେ ଉଚ୍ଚାସନରେ ବସିବା ଅନୁଚିତ, ତା'ନକରି ବ୍ରଜର ଧୂଳିରେ ଲୋଟି ଯିବା ହିଁ କେତେବଡ଼ ସୌଭାଗ୍ୟର କଥା । ଗୋପୀମାନଙ୍କର ପାଦଧୂଳିକୁ ସର୍ବଶ୍ରେଷ୍ଠ ମନେକରି ସେଥିରେ ଲୋଟି ପଡ଼ିବାର ଭାଗ୍ୟ କାହାକୁ ବା ମିଳିବ ? ମାତା ଆମକୁ ସବୁଠାରୁ ଉପରେ ମୁଣ୍ଡରେ ବସେଇ ରଖିଛନ୍ତି । ଏଣିକି ଆମେ ବ୍ରଜ ଧୂଳିରେ ଲୋଟିଯିବା ଉଚିତ । କିମ୍ବା ଶ୍ରମଲାଗି ମୁଣ୍ଡ ହଲିବା କାରଣରୁ ସ୍ୱାଭାବିକ ଭାବରେ ସେମାନେ ଖସି ପଡ଼ୁଥିବେ । କାରଣ ଯାହା ହେଉନା କାହିଁକି ଫୁଲଗୁଡ଼ିକ ବେଣୀରୁ ଖସି ପଡ଼ୁଥିଲେ । ମାତାଙ୍କର ମୁଖମଣ୍ଡଳ ଚନ୍ଦ୍ରଭଳି ହସ ହସ ମନେ ହେଉଥିଲା । ସୀମନ୍ତରେ ସିନ୍ଦୂର ଝଲସି ଉଠୁଥିଲା । କପାଳରେ ସୌଭାଗ୍ୟ ଟୀକା ଉଜ୍ଜ୍ୱଳ ଦିଶୁଥିଲା । କାନରେ କର୍ଣ୍ଣଫୁଲ ବାରମ୍ବାର ଦହିଡ଼ି ଟଣା ହେତୁ ଝୁଲି ଯାଉଥିଲା । ଭ୍ରୂଲତା ସୁନ୍ଦର ଓ ନେତ୍ର ଅନୁରାଗ ଉଚ୍ଛୁଳି ପଡ଼ୁଥିଲା । ତାଙ୍କର କଙ୍କଣ, ଚୂଡ଼ି, ବାହୁପଟା, ରତ୍ନମଣ୍ଡିତ ବାହୁ ଆଜି ମନ୍ଥନ ଦହିଡ଼ି ଟାଣିବା ହେତୁ ନାଚି ଉଠୁଥିଲେ । ସେହି ଅଳଙ୍କାରଗୁଡ଼ିକ ରୁଣୁଝୁଣୁ ବାଜି ମନ୍ଥନ ସହିତ ସତେ ଯେପରି ତାଳ ଦେଉଥିଲା । ଶୋଇ ଉଠି ଆସିଥିବା ଫଳରେ ସେତେବେଳେଯାଏଁ ମାତା କାଞ୍ଚୁଲି ପିନ୍ଧି ନ ଥିଲେ; ତେଣୁ ମୁକ୍ତବକ୍ଷସ୍ଥ ସ୍ତନଯୁଗଳ ମାଛଭଳି ଚଞ୍ଚଳ ମନେ ହେଉଥିଲେ । ନିରନ୍ତର ପୁଅ କଥା ମନେ ପକେଇବା ହେତୁ ତାଙ୍କର ହୃଦୟରେ ମାତୃ ସ୍ନେହର ଜୁଆର ଉଠୁଥିଲା । ବାତ୍ସଲ୍ୟ ସ୍ନେହର ଉଦ୍ରେକ ହେତୁ ସ୍ତନରେ କ୍ଷୀର ଭରି ଯାଉଥିଲା ଓ ଟୋପା ଟୋପା ଝରି ପିନ୍ଧାପାଟ ଭିଜି ଯାଉଥିଲା । ଶ୍ରମ ହେତୁ ମୁହଁରେ ସ୍ୱେଦବିନ୍ଦୁ ଉକୁଟି ଉଠୁଥିଲା । ସେ ପାଦ ମେଲେଇ ସ୍ନେହମୟୀ ସଜୀବ ପ୍ରେମପ୍ରତିମା ଭଳି ମନେ ହେଉଥିଲେ । ମନ୍ଥାନ ପାତ୍ର ହଲିଯିବ ନାହିଁ ବୋଲି ଚାରିକଡ଼େ ପଥର ପୀଢ଼ା ଥିଲା । ମାଆ ଦହି ମନ୍ଥି ଚାଲିଥିଲେ; ହେଲେ ବାରମ୍ବାର ଶେଯକୁ ଅନେଇ ପୁଅକୁ ଦେଖୁଥିଲେ । କାଳେ ଉଠି ପଡ଼ିବ ଯଦି ! ସେ ଭାବୁଥିଲେ, କୃଷ୍ଣ ଉଠିବା ପୂର୍ବରୁ ଲହୁଣୀ କାଢ଼ିନେବେ; ଉଠିବ ଯଦି କୌଣସି କାମ କରେଇ ଦେବ ନାହିଁ । ତେଣୁ ସେ ଚଞ୍ଚଳ ହାତ ଚଳେଇ ଚାଲିଥିଲେ । ମାଆ ଯୋଉ କଥା ଚିନ୍ତା କରୁଥିଲେ ତାହା ହିଁ ହେଲା । ଶ୍ରୀକୃଷ୍ଣ କଡ଼ ଲେଉଟାଇଲେ । ଶେଯରେ ଥାଇ ଏଣେତେଣେ ମାଆଙ୍କୁ ଖୋଜିଲେ । ମାଆଙ୍କୁ ନ ପାଇ ସେ ଉଠିବସିଲେ । ଆଉ ଆଖି ମଳିମଳି ପୁଣି ଏଣେତେଣେ ଚାହିଁ ମାଆଙ୍କୁ ଦହି ମନ୍ଥୁଥିବା ଦେଖିଲେ । ସେ ପଲଙ୍କ ବାଡ଼ ଧରି ତଳକୁ ଓହ୍ଲେଇ ପଡ଼ିଲେ ଆଉ ମାଆଙ୍କ ପାଖକୁ ଯିବାକୁ ଲାଗିଲେ ।

ଶ୍ରୀ ସୂତ କହୁଛନ୍ତି—"ମୁନିଗଣ ! ଯାହାଙ୍କୁ ଯୋଗୀ, ଯତି, ମୁନି, ସାଧୁ ସନ୍ନ୍ୟାସୀ ସର୍ବଦା ଖୋଜୁଥାନ୍ତି, ସେ କଳେ ଆଜି କ୍ଷୀର ଖାଇବା ଇଚ୍ଛାରେ କାନ୍ଦି କାନ୍ଦି ମାଆଙ୍କୁ ଖୋଜୁଥିଲେ । ଉଠିଲା ମାତ୍ରକେ ତାଙ୍କର ସ୍ତନ୍ୟପାନ କରିବାର ଇଚ୍ଛା ହେଲା । ସେ କାନ୍ଦୁଆ ମୁହଁରେ ଚାଲି ଚାଲି ମାଆଙ୍କ ପାଖରେ ପହଞ୍ଚିଗଲେ ଆଉ ଚନ୍ଦ୍ରକଳା ମନ୍ଥନୀ ଟାଣିକି ଧରିନେଲେ । ଆଉ କିଛି ଧରି ନେଇଥିଲେ ହୁଏତ ମାଆ ଦହି ମନ୍ଥିବା ବନ୍ଦ କରି ନ ଥାନ୍ତେ; କିନ୍ତୁ କାଠି ଧରି ନେଲାରୁ ତାଙ୍କୁ ରହିଯିବାକୁ ପଡ଼ିଲା । ଦହି ମନ୍ଥିବା ବନ୍ଦ କରି ମାଆ ତାଙ୍କୁ କୋଳକୁ ଟେକିନେଲେ । ଆଉ ତାଙ୍କର ମନ୍ଦ ମନ୍ଦ ହସଭରା ମୁହଁଟିକୁ ଏକଲୟରେ ଅନାଇ ରହିଲେ । ବାତ୍ସଲ୍ୟ ସ୍ନେହ ହେତୁ ଆପଣାଛାଏଁ ଭରି ଉଠିଥିବା ସ୍ତନ୍ୟପାନ କରାଇବାକୁ ଲାଗିଲେ ।"

## ଛପ୍ପଦ୍ୟ

ମାରୁ ମଥନ୍ତେଁ ଦଧି ହଲନ୍ତେଁ କାନ କୁଣ୍ଡଳ ଦୋଦୋ କର ।<br>
ସ୍ୱେଦବିନ୍ଦୁ ଯୁତ ବଦନ କମଳ ପେଷିକଳ ହୃମକନ ବର ॥<br>
ବାଜମାଲତୀ ସୁମନ ଝରନ୍ତେଁ ସିଗତେଁ ଅତି ସୁନ୍ଦର ।<br>
ମନନ୍ତେଁ କୁସୁମ ବରଷାଇ କରନ୍ତି ସୁରମାନ ଜଗନ୍ତର ॥<br>
ଶ୍ୟାମ ତ୍ୟାଗି ଶୌଯ୍ୟା ତୁରତ, ମାରୁ ମଥାନୀ ପକରନ୍ତେଁ ।<br>
ଅମ୍ମା ଦୋଦୋ ପ୍ୟାଇ ଦେ, ପୁନ ପୁନ ବୋଲେଁ ଅକରନ୍ତେଁ ॥

●

# ଲବଣୀ ଚୋରର କାଣ୍ଡ

ତାଲ୍ଶାଲାଦ୍ଧ୍ରେଦ୍ରୁପରି ବ୍ୟବସ୍ଥିତମ୍,<br>
ମର୍କାୟ କାମଂ ଦଦତଂ ଶିଚି ସ୍ଥିତମ୍ ।<br>
ହୈୟଙ୍ଗବଂ ଚୌର୍ଯ୍ୟବିଶଙ୍କିତେକ୍ଷଣମ୍<br>
ନିରୀକ୍ଷ୍ୟ ପଶ୍ଚାତ୍ ସୁତମାଗମଚ୍ଛନୈଃ ॥

(ଶ୍ରୀଭା ୧୦ସ୍କ, ୯ ଅ, ୮ ଶ୍ଲୋକ)

## ଛପ୍‌ପୟ

ସମ୍ମୁଖ ସୁତକଂ କରଣି ନେହତେଁ ମାବୁ ଉଠାୟୋ ।
ଅଙ୍କ ଲଇ ମୁଖ ଚନ୍ଦ୍ର ଚୂମି ପୟ-ପାନ କରାୟୋ ॥
ଇତ ଜନନୀ ହିୟ ହରଷି କୃଷ୍ଣକଂ ଦୁଧ ପଆବେ ।
ଧରୀ ବସେରୀ ଦୁଧ ଉଫନ ଉତ ଆଗ ବୁଝାବେ ॥
ଦୁଧ ପୂତ ଇକ ସଙ୍ଗ ଇ, ଉଫନେ ମାତା ସୁତହୁଁ ତଜି ।
ଦୁଧ ଉତାରନ ଆଗତେଂ, ଲୈୟା ପୈୟା ଗଇ ଭଜି ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ମାତା ଦେଖିଲେ ଶ୍ରୀକୃଷ୍ଣ ଆବୁଡ଼ା ହୋଇ ରହିଥିବା ଉଦୁଖଳ ଉପରେ ଠିଆ ହୋଇଛନ୍ତି ଆଉ ଶିକାରେ ଥିବା ଲହୁଣୀକୁ ମନାଇଛା ମାଙ୍କଡ଼ମାନଙ୍କୁ ବାଣ୍ଟି ଚାଲିଛନ୍ତି । ଚୋରି କରୁଥିବା ହେତୁ ଭୟରେ ତାଙ୍କର ନେତ୍ର ଚଞ୍ଚଳ ହୋଇ ଉଠୁଛି; ସେ ଏଣେତେଣେ ଚାହୁଁଛନ୍ତି । ପୁଅକୁ ଏଭଳି ଅବସ୍ଥାରେ ଦେଖି ମାଆ ଧୀରେ ଧୀରେ ପାଖକୁ ଗଲେ ।"

ଆପଣାର ପ୍ରିୟର ହିତୈଷୀର ଆଦର ଅଧିକ ହୁଏ । ପୁତ୍ରର ଦେହ ଖରାପ ହେଲେ, ତା'ର ଚିକିତ୍ସା ନିମନ୍ତେ କୌଣସି ଯୋଗ୍ୟ ବୈଦ୍ୟ ଆସିଛନ୍ତି; ତାଙ୍କ ଉପରେ ବିଶ୍ୱାସ ଥିଲେ, ତାଙ୍କର ଚିକିତ୍ସାରେ ପୁତ୍ର ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବ ବୋଲି ମନେ ହେଉଥିଲେ ତାଙ୍କର ଆଦର ପୁତ୍ରଠାରୁ ଅଧିକ କରାଯାଇ ଥାଏ । କାରଣ ସେ ପୁଅର ହିତୈଷୀ । ତାଙ୍କଦ୍ୱାରା ପୁଅର କଲ୍ୟାଣ ସାଧନ ହେବ । ସ୍ୱୟଂ ବୈଦ୍ୟଙ୍କ ସହିତ କୌଣସି ପ୍ରୀତିଭାବ ନ ଥିଲେ ହେଁ, ତାଙ୍କ ପ୍ରତି ଯେଉଁ ଆଦରଭାବ ବଢ଼ିଥାଏ ତାହା ପୁଅପାଇଁ ହିଁ ବଢ଼ିଥାଏ । ତାଙ୍କୁ ଖୁସି କରିବାକୁ ପୁଅକୁ ଯଦି କିଛି ଭଲମନ୍ଦ କହିବା ଦରକାର ହୁଏ, ତେବେ ତାକୁ ଆଦରର ଅଧିକତା ମନେ କରିବା ଉଚିତ । ବୈଦ୍ୟଙ୍କୁ ଖୁସି କରି ରଖିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ପୁତ୍ରର ଆରୋଗ୍ୟ କାମନା । ଛୋଟ ପିଲାମାନେ ଏକଥା ବୁଝନ୍ତି ନାହିଁ । ସେମାନେ ଏହାକୁ ସେମାନଙ୍କର ଅପମାନ ବୋଲି ଭାବି କାନ୍ଦି ପକାନ୍ତି । ପିତା ମାତାଙ୍କ ଉପରେ ରାଗି ଯାଆନ୍ତି । ଚଞ୍ଚଳ ହୋଇ ନାନା ପ୍ରକାର ଦୁଷ୍ଟାମି କରନ୍ତି । ଶେଷରେ ତାକୁ ଶାନ୍ତ କରିବା ପାଇଁ ଶାମ, ଦାମ, ଦଣ୍ଡ, ଭେଦ ଆଦି ନୀତିର ଆଶ୍ରୟ ନେବାକୁ ପଡ଼ିଥାଏ ।

ସୂତ କହୁଛନ୍ତି—"ହେ ମୁନିଗଣ ! ମାତା ଯଶୋଦାଙ୍କର ମନ୍ଥାନୀ କାଠି ଅଧା ମନ୍ଥା ଯାଇଥିବା ଦହିରେ ସେମିତି ପଡ଼ି ରହିଥାଏ । ତାଙ୍କ ହାତରୁ କେତେବେଳେ ଯେ ଦଉଡ଼ି ଛାଡ଼ିହୋଇ ଯାଇଛି ତାହା ତାଙ୍କର ଖିଆଲ ନ ଥାଏ । ଶ୍ୟାମ ମା'ଙ୍କର କୋଳରେ ଆଇ

ସ୍ତନ୍ୟପାନ କରୁଥାନ୍ତି । ପାଖରେ ପଦ୍ମଗନ୍ଧା ଗାଈର ଦୁଧ ମାଟି ପାତ୍ରରେ ଗରମ ହେଉଥାଏ । ସବୁଦିନ ଦୁଇଜଣ ଦାସୀ ଚୁଲ୍ଲିରେ ଘସି ଜଳେଇ ରଖିଥାନ୍ତି । ଧୂଆଁ ପୁରା ଚାଲିଗଲେ ଦୁଧ ଗୁଣି ମାଟି ହାଣ୍ଡିରେ ନେଇ ତା' ଉପରେ ବସେଇ ଦିଅନ୍ତି । ନିଆଁ ଧୀରେ ଧୀରେ ଜଳୁଥାଏ । ଆଉ ଟିକି ଟିକି କମ୍ ହେଉଥିବା ଦୁଧ ସେଇ ହାଣ୍ଡିରେ ଫୁଲଉଠି ଦବି ଯାଉଥାଏ । ତା'ପରେ ଧୀରେ ଧୀରେ ସର ପଡ଼ିବା ଆରମ୍ଭ ହୁଏ । ଏପରି ଭାବରେ କଳଶିଆବେଳକୁ ଦୁଧ ଟିକି ଲାଲ୍ ହୋଇଯାଏ । ସେତେବେଳକୁ ଚକୁଳି ପିଠାପରି ମୋଟ ସର ତା' ଉପରେ ପଡ଼ିଯାଇଥାଏ । ଶ୍ରୀକୃଷ୍ଣଙ୍କୁ ସର ଖାଇ ଭଲଲାଗେ । ତେଣୁ ମାଆ ବଡ଼ ଭୋରରୁ ଦୁଧ ଦୁହାଇ ଫୁଟେଇବା ବ୍ୟବସ୍ଥା କରନ୍ତି । ଆଉ ଯେତେବେଳେ କୃଷ୍ଣ ଖେଳାଖେଳି କରି ଅସନ୍ତି ଓ ପହଞ୍ଚିବା ମାତ୍ରକେ ସର ମାଗିବସନ୍ତି, ସେତେବେଳେ ମାଆ ବଡ଼ ପିଠାଟିଏ ଉପରେ ସରନେଇ ରଖି ଦିଅନ୍ତି । ପିଠା ଉପରେ ସେଇ ସର ଆଉ ଏକ ପିଠାଟିଏ ଭଳି ମନେହୁଏ । ଶ୍ରୀକୃଷ୍ଣ ସେ ଦୁଇ ପିଠାକୁ ଟିକିଏ ଟିକିଏ କରି ଖାଇନଥାନ୍ତି, ସେଥିରେ ମାତାଙ୍କୁ ବିଶେଷ ଆନନ୍ଦ ମିଳେ । ଦୁଧ ଯେତେ ବହଳ ହେବ, ଆଉ ଯେତେ କମ୍ ଜାଳରେ ଧୀରେ ଧୀରେ ଫୁଟାଯିବ ସେତେ ବହଳ ସର ପଡ଼ିବ । ମାଆ ଆଉ ସବୁ କାମ କରୁଥିଲେ ହେଁ ଦୃଷ୍ଟି ସେଇ କ୍ଷୀର ଉପରେ ରହିଥିବ । ଯଦିଓ ଯେ ଶ୍ୟାମସୁନ୍ଦରଙ୍କୁ କୋଳରେ ଧରି କ୍ଷୀର ଖୁଆଉଥିଲେ, ତାଙ୍କ ଆଖି ଫୁଟୁଥିବା କ୍ଷୀର ଉପରେ ଥିଲା । ଆଜି ତରବରରେ କେହି ଦାସୀ ଅଧିକା ଘସି ଲଗେଇ ଦେଇଥିଲା । ଧୂଆଁ ପୁରା ଗଲା ପୁର୍ବରୁ ନିଆଁ ବେଶ୍ ଜୋର ଧରି ସାରିଥିଲା । ସେତିକିବେଳେ ଦୁଧ ଆଣ୍ଟା ହାଣ୍ଡିଟି ତା'ଉପରେ ବସେଇ ଦେଇଥିଲେ । ଅଧିକ ନିଆଁ ହେତୁ ଦୁଧ ଶୀଘ୍ର ଫୁଟି ନିଆଁରେ ପଡ଼ି ଗନ୍ଧହେଲା । ସେତେ-ବେଳେ ମାଆଙ୍କ କୋଳରେ କ୍ଷୀର ଖାଇ ମନ୍ଦ ମନ୍ଦ ହସୁଥିବା ଶ୍ୟାମସୁନ୍ଦରଙ୍କ ମୁଖାର-ବିନ୍ଦକୁ ମନଭରି ଅପଲକ ଆଖିରେ ସେ ଚାହିଁ ରହିଥିଲେ । ସେ ଦୁଧର ପୋଡ଼ା ଗନ୍ଧବାସ ଚମକପଡ଼ି ସବୁ କଥା ଭୁଲିଗଲେ । ଚଞ୍ଚଳ ଶ୍ୟାମସୁନ୍ଦରଙ୍କୁ ବଳପୂର୍ବକ କୋଳରୁ ଉତାରି କ୍ଷୀର ପାଖକୁ ଦଉଡ଼ିଗଲେ । ବାସ୍, ଆଉ କ'ଣ ! ଦୁଧ ପିଇ ଖାଲି ଫୁଟୁଥିଲା, ଏଇନେ ପୁଅ ବି ! ଅଚ୍ଛା, ମୋତେ ମାଆ ତା'ହେଲେ ଭଲପାଏନି । ମୋଠୁଁ ତା'ଲାଗି ଅଧିକ ଏଇ ଦୁଧ । ସେ ମୋ' କଥା ବୁଝିଲା ନାହିଁ । ଏଇ କ୍ଷୀରଟିକକ ଲାଗି ମୋତେ ଦରଖିଆ କରି ଛାଡ଼ି ଦୁଧ ଉତାରିବାକୁ ଦଉଡ଼ିଗଲା ! ଦେଖିନେବି ତା'ଦୁଧ ଲହୁଣୀ କି ? ମାତାଙ୍କର ସେଭଳି ବ୍ୟବହାର ହେତୁ ଶ୍ରୀକୃଷ୍ଣଙ୍କର ରାଗ ହେଲା । ଭଗବାନଙ୍କର ପୁଣି ରାଗ ? ରାଗିବା କ'ଣ ଭଲ କଥା ? ଭଲ କଥା ହେଉ ବା ମନ୍ଦ କଥା ହେଉ, ଭଲ ମନ୍ଦ ଦୁଇ କଥାର ମୂଳ ତ ସିଏ ! ଦୈବୀ, ଆସୁରୀ ଦୁଇ କଥାର ସୃଷ୍ଟି ତାଙ୍କରି ହାତରେ ହୋଇଛି । ସବୁ ଭାବର ଜନକ ସିଏ ! ଯଦି ତାଙ୍କ ଭିତରେ ଶାନ୍ତି ଅଛି, କ୍ରୋଧ ମଧ୍ୟ ରହିବ ! ମାତ୍ର ତାଙ୍କର କ୍ରୋଧ ମଧ୍ୟ କଲ୍ୟାଣପ୍ରଦ । କାରଣ ସେ କଲ୍ୟାଣ-ସ୍ୱରୂପ । ମାଆଙ୍କ ଉପରେ ଯୋଉ

ରାଗ ହେଲା ସେଥିରେ କେତେ ସ୍ନେହ ଭରି ରହିଥିଲା ! ଯେଉଁଭଳି ଗଙ୍ଗାଜଳରେ ମିଶି ସବୁଜଳ ଗଙ୍ଗାଜଳ ହୋଇଯାଏ, ସେଭଳି ପ୍ରେମ ଗଙ୍ଗା ଆଉ ଯେଉଁ ସବୁ ଭାବ ଆସି ମିଶେ ସେ ସବୁ ପ୍ରେମମୟ ହୋଇଯାଏ । ପ୍ରେମର ରାଗ ତ ଭାଗ୍ୟଶାଳୀମାନଙ୍କୁ ମିଳିଥାଏ । ପ୍ରେମର ରାଗ ପର ଉପରେ କରାଯାଏନା । ଯେ ଆପଣା ମଣିଷ ଉପରେ କରାଯାଏ । କୃଷ୍ଣ ଯାହାକୁ ଆପଣାର କରିନେବେ ଆଉ ତା' ଉପରେ ରାଗ କରିବେ; ତା'ଠାରୁ ବଳି ଆଉ ସୌଭାଗ୍ୟ କଥା କ'ଣ ହେବ ?"

ହଁ, କୃଷ୍ଣଙ୍କର କୋପ ହେତୁ ବନ୍ଧୁଲି ଫୁଲର ଦରଫୁଟା କଳି ଭଳି ଓଠ ଥରିବାକୁ ଲାଗିଲା । ସେ ଚନ୍ଦ୍ରଭଳି ଉଜ୍ଜ୍ୱଳ ଛୋଟ ଛୋଟ ସୁନ୍ଦର ଦାନ୍ତରେ ବମ୍ବ-ବର୍ଣ୍ଣର ଓଠ କାମୁଡ଼ି ମନେ ମନେ ଭାବିଲେ ତାଙ୍କର ରାଗ ଦେଖେଇବେ ସେଇକଥା ଭାବିବାକୁ ଲାଗିଲେ । ମାଆ ଦହି ମନ୍ଥିବେ ବୋଲି ହାଣ୍ଡି ଗୁରିକଡ଼େ ହାଣ୍ଡିକୁ ସଳଖି ରଖିବାକୁ ଯୋଉ ପଥର ଠେସା ଦେଇଥିଲେ, ତା' ଉପରେ ତାଙ୍କର ଆଖି ପଡ଼ିଲା । ସେ ସେଇଥିରୁ ବଡ଼ ପଥରଟିଏ ଉଠେଇ ଯେତେ ବଳଥିଲା ଲଗେଇ ହାଣ୍ଡିକି ମାରିଲେ । ପଥରବାଜିଲାରୁ ହାଣ୍ଡି ଫଟ୍‌କିନା ଫାଟିଗଲା । ଝଲ ଝଲ କରି ଦରମନ୍ଥା ଦହି ଘରସାରା ଖେଳିଗଲା । ସେତେବେଳେ ମାଆ ଦୁଧ ହାଣ୍ଡି ଆଉ ଗୋଟାଏ ଘରକୁ ଟେକି ନେଇ ରଖି, ତାହା ଥଣ୍ଡା ହେବାଯାଏଁ ଅପେକ୍ଷା କରିବାକୁ ଲାଗିଥିଲେ । ତରବରିଆ ହୋଇ ସେ ଶ୍ରୀକୃଷ୍ଣଙ୍କୁ ଦରଖିଆ ଛାଡ଼ି ଆସିଛନ୍ତି ବୋଲି ଭୁଲିଗଲେ ।

ଶ୍ରୀକୃଷ୍ଣ ରାଗରେ ହାଣ୍ଡିଟିକୁ ଭାଙ୍ଗିଦେଲେ ସିନା ତାଙ୍କ ହାତରେ କିଛି ପଡ଼ିଲାନାହିଁ । ସେତେବେଳଯାଏ ଦହିରୁ ଲହୁଣୀ ବାହାରି ନ ଥିଲା । ବାହାରିଥିଲେ ଅଲଗା ମେଞ୍ଚା ମେଞ୍ଚା ହୋଇ ରହିଥାନ୍ତା ଆଉ ଦହି ଖେଳେଇ ହୋଇ ଗଲେ ବି କିଛି ନା କିଛି ଲହୁଣୀ ମିଳିଥାନ୍ତା । ହେଲେ ଏଯାଏଁ ତ ସବୁ ଏକାକାର ହୋଇ ରହିଥିଲା । ହାଣ୍ଡି ଭାଙ୍ଗିଦେଲା ପରେ ଭଗବାନଙ୍କୁ ଡର ମାଡ଼ିଲା । ସେ ସେଠାରୁ ପଳାଇଗଲେ, ଭାବିଲେ—"ଦୋଷ କଲି; ହେଲେ କିଛିବୋଲି କିଛି ପାଇଲିନାହିଁ ।" ସେ ଭିତରକୁ ପାଖ ଘରକୁ ପଶିଗଲେ । ଶିକା ଉପରେ ଗତକାଲିର ଲହୁଣୀ ରଖାହୋଇଥିଲା । ପାଖରେ ଧାନକୁଟା କାଠ ଉଖୁଡ଼ି ବଡ଼ ଉଦୁଖଳଟି ଆଡ଼ୁଡ଼େଇ ରଖାଯାଇଥିଲା । ତାକୁ ଧୀରେ ଧୀରେ ଘୋସାରି ଆଣି ଶିକା ତଳକୁ ରଖି ତା' ଉପରକୁ ଚଢ଼ି କୌଣସିମତେ ହାଣ୍ଡିଟି ନେଇ ଆସିଲେ । ସେଥିରୁ ଲହୁଣୀ କିଛି ଖାଇଲେ । ସେଦିନ ଲହୁଣୀ ଭାରି ମିଠା ଲାଗୁଥିଲା । ଲାଭ ହେତୁ ଲୋଭ ବି ବଢ଼ିଲା । ଭାବିଲେ—ଏଇଠି ବସି ଖାଇବି ଯଦି ମାଆ ଆସି ଦେଖିବ । ଦଣ୍ଡକୁ ଦଣ୍ଡ ମିଳିବ ଆଉ ଖାଇବାକୁ ମିଳିବ ନାହିଁ; ତେଣୁ ଏ ହାଣ୍ଡିଟିକୁ ଟେକିନେଇ କୋଉ ନିର୍ଜ୍ଜନ ଜାଗାରେ ଲୁଚି ଖାଇବା କଥା; କିନ୍ତୁ ବାହାରକୁ ଗଲେ ତ ମାଆ ଦେଖି ପକେଇବ । ଏହା ଭାବି ସେ ପଛପଟ ଝରକାଟିକୁ ଚାହିଁଲେ । ଯୋଗକୁ ତାହା ଖୋଲାଥିଲା । ସେ ସେଠ

ହାଣ୍ଡିଟି ନେଇ ଝରକା ଉପରେ ଚଢ଼ି ସେ କଡ଼କୁ ଓହ୍ଲେଇ ଗଲେ । ସେକଡ଼େ ତମାଳ, ବଉଳ, କଦମ୍ବ ଆଉ ଅର୍ଜ୍ଜୁନ ଗଛଗୁଡ଼ିଏ ଥିଲା । ସେଇ ଗଛମାନଙ୍କରେ ତାଙ୍କର ସାଙ୍ଗସାଥି ମାଙ୍କଡ଼ମାନେ ବସିଥିଲେ । ସେଇଠି ବି କାଠର ଉଦୁଖଳଟିଏ ଆବୁଡ଼ାଇ ରଖା ହୋଇଥିଲା । ସେଇଆକୁ ଆସନ କରି, ତା ଉପରେ ହାଣ୍ଡି ନେଇ ଚକାପାରି ବସିଗଲେ । ବାନର ବନ୍ଧୁମାନେ ସେଠାରେ ଆଗରୁ ଥିଲେ । ବାନର ଆଉ ବାଳକଙ୍କୁ ଥରେ ଯେଉଁଠି ଖାଇବାକୁ ମିଳିଯାଏ, ସେଇଠି ସେମାନେ ମିଶିଯାଆନ୍ତି । ଶ୍ରୀକୃଷ୍ଣଙ୍କୁ ଦେଖିଲା ମାତ୍ରକେ ଅନେକ ମାଙ୍କଡ଼ ଆସି ସପରିବାର ପହଞ୍ଚିଗଲେ । ତାଙ୍କୁ ଘେରିପଟେ ଘେରି ବସିଗଲେ । ଶ୍ରୀକୃଷ୍ଣ ତ ଏକୁଟିଆ ବସି ଖାଇବାରେ ଅଧେ ଆନନ୍ଦ ପାଆନ୍ତି ନାହିଁ । ଭୋଜନର ରସ ତ ସେତେବେଳେ ମିଳେ ଯେତେବେଳେ ସ୍ନେହୀ ବନ୍ଧୁମାନେ ମିଠା ମିଠା କଥା ଭିତରେ ଖାଇବସନ୍ତି । ଖାଇବାର ମିଠା, ମିଠା ମିଠା କଥା ମିଶି ଅଧିକ ମଧୁର ହୋଇଯାଏ । ତେଣୁ ମାଙ୍କଡ଼ ବନ୍ଧୁମାନଙ୍କୁ ଦେଖି ଶ୍ରୀକୃଷ୍ଣ ଖୁସି ହୋଇଗଲେ । ସେ ଥରେ ନିଜେ ପୂଳାଏ ଖାଇ ସେମାନଙ୍କୁ ପୂଳାଏ ଦେବାକୁ ଲାଗିଲେ । ସେମାନେ ବି ଏମିତି ହୋଇସାରିଥିଲେ ଯେ ମେଞ୍ଚାଏ ଫିଙ୍ଗିଦେଲେ ତେଣ୍ଟ ସଇ ଫେଣ୍ଡୁ ଭଳି ଧରି ପକାଉ ଥିଲେ ଆଉ ପାଟିରେ ପୂରେଇ ଦେଉଥିଲେ । ଏହିଭଳି ଲହୁଣୀ ଖିଆ ଚାଲିଥାଏ । ଭୋଜି ପଙ୍ଗତ ବସିଥାଏ ।

ଏଣେ ମାଆ ଦୁଧ ଅଣ୍ଟା କଲେ । ନିଆଁରେ ଟିକେ ପାଣି ଛିଟି ଜାଳ କମେଇଲେ । କମ୍ ଉତ୍ତାପରେ । ସେ ପୁଣି ଦୁଧ ହାଣ୍ଡି ନେଇ ବସେଇଲେ । ଚାହିଁ ଦେଖିଲେ, ପୁଣି ଉତୁରି ଆସିବ ନାହିଁ ତ ? ଯେତେବେଳେ ଦୁଧ ଉପରେ ପାତଳ ସର ପଡ଼ିଗଲା, ସେ ନିଶ୍ଚିନ୍ତ ହୋଇଗଲେ । ଦୁଧ ଉପରେ ସର ପଡ଼ିଗଲେ, ସେ ଆଉ ଉତୁରି ଯାଏନାହିଁ ।

ଏହିଭଳି ଭାବରେ ଦୁଧର ବ୍ୟବସ୍ଥା କରି ଯେତେବେଳେ ମାଆ ଦହିମନ୍ଥା ପାଖକୁ ଆସିଲେ—ଦେଖିଲେ, ଯେମିତି ଅଗଣାଟା ସାରା ଦଧିସାଗର ହୋଇଯାଇଛି । ହାଣ୍ଡି ଭାଙ୍ଗି-ଯାଇଛି, ଦହି ଖେଳେଇ ହୋଇ ଯାଇଛି । ହାଣ୍ଡିରେ ପଥର ଦେଖି ଆଉ ସେଠାରୁ ଆର ଘରକୁ ପଡ଼ି ପଡ଼ିଯାଇଥିବା ପାଦଚିହ୍ନ ଦେଖି ବୁଝିଗଲେ ଯେ ଏସବୁ ସେଇ ଦୁଷ୍ଟର କାଣ୍ଡ । ସେ ଏଣେତେଣେ ଚାହିଁଲେ । ଶ୍ରୀକୃଷ୍ଣ ପାଖରେ କୋଉଠି ହେଲେ ନ ଥିଲେ । ସେ ସେଇଥିରୁ ବିଶ୍ୱାସ କଲେ ଯେ କୃଷ୍ଣ ନିଶ୍ଚୟ ସବୁ ଭଙ୍ଗାଭଙ୍ଗି କରି ଡରି ପଳେଇଛି । ପିଲାଙ୍କର ଏଭଳି ଦୁଷ୍ଟାମି ଦେଖିବାର ସୌଭାଗ୍ୟ ଭାଗ୍ୟବାନ ପୁରୁଷଙ୍କୁ ହିଁ ମିଳିଥାଏ । ତଥାପି ମାଆ ଉପରେ ମନରେ ରାଗିବା ଉଚିତ, ଯେଭଳି ପୁଅ ଆଉଥରେ ସେଭଳି କାମ କରିବ ନାହିଁ । ତା'ପରେ ପୁଅ କୁଆଡ଼େଗଲା, ସେ ସେଇକଥା ଚିନ୍ତା କରିବାକୁ ଲାଗିଲେ ।

ଧାତ୍ରୀ ତ ନିଜ ମନକୁ ଭାରି ବୁଦ୍ଧିଆ । ହେଲେ ମାଆଙ୍କ ଆଗରେ ତାଙ୍କର ବୁଦ୍ଧି ହଜିଯାଏ । ଲହୁଣୀ ଚୋରି କରିବାକୁ ଯାଇଥିଲେ, ସେଇ ଦହି କୁନ୍ଦ କୁନ୍ଦ ହୋଇଥିଲେ । ଅନ୍ୟ ସବୁଠାରୁ ତାଙ୍କର ପାଦଚିହ୍ନ ପଡ଼ି ପଡ଼ି ଯାଇଥାଏ । ମାଆ ସେଇ ପାଦଚିହ୍ନ ଦେଖି ଦେଖି ସେଇ ଘରକୁ ଗଲେ, ଯୋଉ ଘରେ ଲହୁଣୀ ରଖିଥିଲେ । ଯାଇ ଦେଖିଲେ, ଯୋଉ

ହାଣ୍ଡିରେ ଲହୁଣୀ ରଖିଥିଲେ ସେ ହାଣ୍ଡିଟି ନାହିଁ । ବୁଝିଗଲେ, କୃଷ୍ଣ ଆଜି ଏଇ ଘରେ ପଶି ଚୋରି କରିଛି । ତା'ହେଲେ ଗୋପୀଙ୍କ କଥା ପୁରା ସତ । ସେମାନେ ସବୁଦିନ କହିବାକୁ ଆସୁଥିଲେ ଯେ ମୁଁ ବିଶ୍ୱାସ କରୁ ନ ଥିଲି । ଇଏ ମୋତେ ଯଦି ଛାଡ଼ୁନାହିଁ, ଗୋପୀଙ୍କୁ କ'ଣ ନ କରୁଥିବ ! ଆଜି ଆଉ ତାକୁ ଛାଡ଼ିବି ନାହିଁ, ମାରିବି, ବାନ୍ଧିଦେବି !

ସେତେବେଳେ ଖୋଲା ଝରକା ଉପରେ ତାଙ୍କର ନଜର ପଡ଼ିଗଲା । ସେ ବୁଝିଗଲେ ଏଇ ଝରକା ବାଟେ ହିଁ ସେ ପଳେଇଛି । ଡରି ବଣକୁ ଯେମିତି ନ ପଳାଉ ! ସେଇଆ ଭାବି ସେ ସେଇ ପଟକୁ ଗଲେ । ସେ ତାଙ୍କର ପାଦର ନୂପୁର ଟେକିଦେଲେ, ଯେମିତି ଗଲାବେଳେ ରୁଣୁଝୁଣୁ ହୋଇ ବାଜିବ ନାହିଁ । ସେଇ ଶବ୍ଦ ଶୁଣିଲେ ବି ସେ କୁଆଡ଼େ ପଳେଇବ । ସେ ପାଦ ଚପିଚପି ଝରକା ପାଖକୁ ଗଲେ । ସେଠାକୁ ଯାଇ ସେ ଯାହା ଦେଖିଲେ, ହସ ରୋକି ପାରିଲେ ନାହିଁ । ସେଠି ମାଙ୍କଡ଼ଙ୍କ ପଙ୍ଗତ ବସିଥିଲା । ଚକାପକେଇ ମର୍କଟଙ୍କ ଭଳି ସେମାନେ ବସିପଡ଼ି ଲହୁଣୀ ଖିଆରେ ଲାଗିଥାଆନ୍ତି । ଶ୍ରୀକୃଷ୍ଣ ମଝିରେ ବସିପଡ଼ି ସେମାନଙ୍କୁ ଆକଟ କରୁଥିଲେ । ଯଦିଓ ସେ ପରଷିବା କାମରେ ଲାଗିଥିଲେ ତଥାପି ଜାଣେ ମାଆ ଆସି ଯିବେ ବୋଲି ସତର୍କ ହୋଇ ଏଣେତେଣେ ଚାହୁଁଥିଲେ । ମାଆ ସେଇ ଓର ଉଣ୍ଡି ରହିଥିଲେ । ଯେମିତି ସେ ତାଙ୍କ ଯିବା କଥା ଜାଣି ପାରିବନାହିଁ ଆଉ ସେ ପଛେ ପଛେ ଯାଇ ତାକୁ ଧରି ପକେଇବେ ; ହେଲେ କୃଷ୍ଣ ମନେ ମନେ ସତର୍କ ହୋଇ ରହିଥିଲେ ଯେମିତି ତାଙ୍କ ଚୋରି ଧରା ନ ପଡ଼ୁ । ମାଆ ଜାଣିବା ଅଗରୁ ଲହୁଣୀ ଖିଆ ସରିଯାଉ ।

ସୂତ କହୁଛନ୍ତି—"ହେ ମୁନିଗଣ ! ମାଆ ଯିବା ଶ୍ରୀକୃଷ୍ଣଙ୍କୁ ଦେଖୁଥିଲେ; କିନ୍ତୁ କୃଷ୍ଣ ବାଣ୍ଟିବା କାମରେ ଲାଗିଥିଲେ । ହଠାତ୍ ସେ ମାଆଙ୍କୁ ବେତ ଧରି ତାଙ୍କର ଆଡ଼କୁ ଆସୁଥିବାର ଦେଖିଲେ । ଚଞ୍ଚଳ ଲହୁଣୀ ହାଣ୍ଡିଟି ତଳେ ପକେଇଦେଇ, ଉଦୁଖଳ ଉପରୁ ତଳକୁ ଡେଇଁପଡ଼ି, ହାତ ମୁଠେଇ ଦଉଡ଼ି ପଳେଇଲେ । ଭୟରେ ଡରି ସେ ଲୁଚିଯିବାକୁ ଚାହୁଁଥିଲେ । ଯା'ର ବିଜୟ ହେବ ସେକଥା ମୁଁ ପରେ କହିବି ।"

## ଛପ୍ପୟ

ନହୀଁ ଅଘାୟେ ଶ୍ୟାମ ଶେଷ ନୌୟାପୈ ଅୟେ ।  
ଲେତା ଡିଁଗଇ ଧରୌ କ୍ରୋଧ କରି ତାହୁ ଉଠାୟେ ।।  
ମାରୌ ତକକେ ସଁଡ଼ ଦହୀ କୋ ଫୁଟ୍ୟୋ ଫଟଇ ।  
ଫୁଟତ ମଥାନୀ ଭଗେ ଶ୍ୟାମ ମାଖନ ଲୈ ଝଟଇ ।।  
ଅଇ ଯଶୋଦା ଦୃଶ୍ୟ ଲଖି, ହଁସୀ ପୁତ୍ର ପକରନ ଚଲୀ ।  
ସୋଚେଁ ମନମେଁ ଶ୍ୟାମ ଜୀ, ଚୋରୀ କୀ କଲଈ ଖୁଲୀ ।।

## ଶ୍ରୀକୃଷ୍ଣ ଧରାପଡ଼ିଲେ

ନ ଚାନ୍ତର୍ନ ବହିର୍ଯସ୍ୟ ନ ପୂର୍ବ ନାପି ଚାପରମ୍ ।
ପୂର୍ବାପରଂ ବହିଶ୍ଚାନ୍ତର୍ଜଗତୋ ଯୋ ଜଗଚ୍ଚ ଯଃ ॥
ତଂ ମତ୍ୱାତ୍ମଜମବ୍ୟକ୍ତଂ ମର୍ତ୍ୟଲିଙ୍ଗମଧୋକ୍ଷଜମ୍ ।
ଗୋପିକୋଲୂଖଲେ ଦାମ୍ନା ବବନ୍ଧ ପ୍ରାକୃତଂ ଯଥା ॥

(ଶ୍ରୀ ଭା ୧୦ ସ୍କ, ୯ ଅ, ୧୩, ୧୪ ଶ୍ଳୋକ)

### ଛପ୍ପୟ

ମାତା ଚୂପକେ ଚଲୀ ଚୋର କୀ ଚୋରୀ ପକରନ ।
କରଖତ ଇତ ଉତ ସମୟ ଚପଲ ଦୃଗ ଜନମନରଞ୍ଜନ ॥
ଜନନୀ ଆବତ ଲଖୀ ଓଖରୀ ତଜି ହରି ଭଗେ ।
ପୀଛେଁ ଦୌରୀ ମାତୁ କୃଷ୍ଣ ଡର କାଁପନ ଲଗେ ॥
କରମହଁ ଛୋଟୀ ସୀ ଛଗୀ, ଖର ଜତମ୍ ଜଟେଁ ନମିତ ।
ଖୁଲେ କେଶ ଗିରତେଁ ସୁମନ, ଗିରହିଁ, ଭଗହିଁ ତନ ଅତ ଶ୍ରମିତ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଯାହାର ନା ବାହାର ଅଛି ନା ଭିତର ଅଛି, ନା ପୂର୍ବ ନା ପର ଅଛି; ଏବଂ ଯେ ଏହି ସମ୍ପୂର୍ଣ୍ଣ ଜଗତର ବାହାରେ, ଭିତରେ, ଆଦି ଓ ଅନ୍ତରେ ବର୍ତ୍ତମାନ ହୋଇ ରହିଛି ତଥା ଯେ ଜଗତ୍ ସ୍ୱରୂପ, ସେହି ଇନ୍ଦ୍ରିୟାତୀତ ମାୟାରେ ମାନବ ରୂପ ଧାରଣ କରିଥିବା ଅବ୍ୟକ୍ତ ଅଚ୍ୟୁତଙ୍କୁ ଯଶୋଦା ଆପଣାର ପୁତ୍ର ମନେକରି ପ୍ରାକୃତ ଶିଶୁଭଳି ଉଦୂଖଳରେ ବାନ୍ଧିବାକୁ ଲାଗିଲେ ।"

ଯେତେ ସବୁ କହିବା, ଶୁଣିବା, ଦେଖିବା, ଭାବିବା, ନାଚିବା କୁଦିବା ଆଦି କାର୍ଯ୍ୟ ଅଛି ସବୁ ମାୟାଦ୍ୱାରା ସମ୍ଭବ । ସବୁ କ୍ରିୟା ଏବଂ ଲୀଳା ମାୟାଦ୍ୱାରା ସମ୍ଭବ । ମାୟାରେ କୌଣସି କଥା ଅସମ୍ଭବ ନୁହେଁ । ମାୟା ବିନା ରହିଥିବା ବ୍ରହ୍ମ ବା ଜୀବ ଯଦି ଥାଏ

ତା'ହେଲେ ସେ ଲୀଳା ରହିତ, କହିବା ଶୁଣିବାକୁ ଅସମର୍ଥ, ରସବିହୀନ ଛତ୍ର ଭଳି । ସେ ହିଁ ମାୟାର ଆଶ୍ରୟ ନେଇ ରସମୟ ହୋଇଯାଏ । ରସଗୋଲା ଭଳି ମଧୁର ସୁସ୍ୱାଦୁ କହିବା, ଶୁଣିବା ଓ ରସାସ୍ୱାଦନର ଯୋଗ୍ୟ ହୋଇଯାଏ । ବୈଷ୍ଣବମାନେ ମାୟାର ତିନୋଟି ଭେଦ କଥା କହିଛନ୍ତି । ପ୍ରଥମଟି ସଂସାରକୁ ମୋହିତ କରୁଥିବା ମାୟା, ଦ୍ୱିତୀୟଟି ଭକ୍ତଙ୍କୁ ମୋହିତ କରୁଥିବା ରସମୟୀ ମାୟା ଏବଂ ତୃତୀୟଟି ସ୍ୱୟଂ ଭଗବାନଙ୍କୁ ମୋହିତ କରୁଥିବା ପରମ ରସରୂପା ଅଭିନ୍ନ ସ୍ୱରୂପା ମାୟା । ସଖ୍ୟ, ଦାସ୍ୟ ଏବଂ ବାତ୍ସଲ୍ୟ ରସର ଆସ୍ୱାଦନ ଭକ୍ତମୋହିନୀ ମାୟାଦ୍ୱାରା ହୋଇଥାଏ ଏବଂ ମଧୁର ରସର ଅନୁଭୂତି ତ ଭଗବାନଙ୍କୁ ମୋହିତ କରୁଥିବା ମାୟାର ଆଶ୍ରୟରେ ହିଁ ସମ୍ଭବ । ତାଙ୍କୁ ପାଇବାର ଅନ୍ୟ କୌଣସି ଉପାୟ ନାହିଁ । ସଖ୍ୟ, ଦାସ୍ୟ ଓ ବାତ୍ସଲ୍ୟ ରସର ରସିକଙ୍କ ପାଖରେ ଐଶ୍ୱର୍ଯ୍ୟ ଅପେକ୍ଷା ମାଧୁର୍ଯ୍ୟର ମାତ୍ରା ଅଧିକ ବଢ଼ିଯାଏ । ଦାସ୍ୟ ରସରେ ଯେତେ ଐଶ୍ୱର୍ଯ୍ୟ ଅଛି, ସଖ୍ୟରସରେ ସେତେ ନାହିଁ । ସଖ୍ୟରେ କିଛି ବାକି ରହିଗଲେ ବି ବାତ୍ସଲ୍ୟରେ ତାହା ପୂରା ଶେଷ ହୋଇଯାଏ । ମଧୁର ରସରେ ତ ଐଶ୍ୱର୍ଯ୍ୟ କୁଞ୍ଜ କୁଟୀରେ ଲୁଚି ରହି ପାଦ କଚାଡ଼େ, କମ୍ପିଉଠେ ଓ ସବୁବେଳେ ଭୟଭୀତ ହୋଇ ରହିଥାଏ । ବାତ୍ସଲ୍ୟରେ କେତେବେଳେ ଜିଦ୍, କେତେବେଳେ ରାଗ ଆଉ କେତେବେଳେ ଭୟ ବି ରହିଥାଏ । ସେଠାରେ ଐଶ୍ୱର୍ଯ୍ୟର କୌଣସି ଗନ୍ଧ ନ ଥାଏ । ମାତା କୃଷ୍ଣଙ୍କୁ ଧମକ ଦିଅନ୍ତି, ମାରି ଗୋଡ଼ାନ୍ତି, ଡରାଇବାକୁ ବାନ୍ଧି ଦିଅନ୍ତି । ମାତ୍ର କୃଷ୍ଣଙ୍କ ପାଖରେ ଏଭଳି ଇନ୍ଦ୍ରଜାଲ ଅଛି ଯେ ସେ କାହାରିକୁ ବି ଧରି ଦିଅନ୍ତି ନାହିଁ । ସେ ସ୍ୱତନ୍ତ୍ର । ସବୁ ପ୍ରକାର ବନ୍ଧନ ମୁକ୍ତ । ମାତ୍ର ସେ ମଧ୍ୟ ପ୍ରେମପାଶରେ ବାନ୍ଧିହୋଇ ଯାଆନ୍ତି । ଭକ୍ତ ବାନ୍ଧିଲେ ବାନ୍ଧି ହୋଇ ଯାଆନ୍ତି । ଏହା ଭକ୍ତ ମୋହିନୀର କମନୀୟ କ୍ରୀଡ଼ା ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଭଗବାନଙ୍କର ଲୀଳାରେ ତର୍କ କାମ ଦିଏନାହିଁ । ଚୋର ଅପରାଧୀ ହେଇ ଶ୍ରୀକୃଷ୍ଣଙ୍କୁ ଯଶୋଦା ମାତା ତତ୍‌କ୍ଷଣାତ ଧରିନେବାକୁ ଚାହୁଁଥିଲେ । ଯାହାଙ୍କୁ ଧରିବା ପାଇଁ ଯୋଗୀ, ଯତି, ସାଧକ, ସିଦ୍ଧ, ତପସ୍ୱୀ ସତତ ସାଧନା କରୁଥିଲେ ହେଁ ଧରିପାରନ୍ତି ନାହିଁ । ସେମାନେ କେବଳ ମାତ୍ର ଚିତ୍ତରେ ଧରିରଖିବାକୁ ଚାହାନ୍ତି; ମାତ୍ର ମାତା ତାଙ୍କୁ ପ୍ରତ୍ୟକ୍ଷ ରୂପରେ ଧରି ବାନ୍ଧିବାକୁ ଚାହାନ୍ତି । ଯୋଗୀ ତପସ୍ୱୀ ତ ଜନ୍ମଜନ୍ମାନ୍ତର ତପସ୍ୟା କରି ଅସଂଖ୍ୟ ବର୍ଷର ଜପତପ ଯୋଗ ଅନୁଷ୍ଠାନ କରିବାର ଆଶା କରିଥାନ୍ତି; କିନ୍ତୁ ମାତା ଚୋର ପାଇଁ ଅଟେକେ ଧରିବାକୁ ଉଦ୍ୟତ ହୋଇଛନ୍ତି । ଯେଉଁ ଶ୍ରୀକୃଷ୍ଣଙ୍କର ଭୟରେ ଭୟ ମଧ୍ୟ ଭୟଭୀତ ହୋଇ ପଳାୟନ କରେ ସେହି ଭକ୍ତବତ୍ସଳ ଭଗବାନ ମାତାଙ୍କର ଭୟରେ ପଳାୟନ କରୁଛନ୍ତି । ମାତାଙ୍କର ଧାରଣା ହିଁ ନାହିଁ ଯେ ଏ ଈଶ୍ୱର । ଈଶ୍ୱର ହେଲେ ହୋଇଥାଉ । ମାଆ ଆଗରେ ଅବୋଧ, ଛୋଟ ଛୁଆଟିଏ ତ ! ତା'ର ସବୁ କାମ ମାଆଙ୍କ କଥା ଅନୁସାରେ କରିବା କଥା । ଲହୁଣୀ ନେଇ ଖାଇବା ଓ ମାଙ୍କଡ଼ଙ୍କୁ ବାଣ୍ଟିବାର କି ଅଧିକାର ଅଛି ତା'ର । ତାହା ଅନଧିକାର ଚେଷ୍ଟା, ସେଥିପାଇଁ ସେ ଦଣ୍ଡ

ପାଇବା ଉଚିତ । ଦଣ୍ଡ ସେତେବେଳେ ଦିଆ ଯାଇ ପାରିବ ଯେତେବେଳେ ସେ ଧରା ହେବ । ଆଗରୁ ଅପରାଧୀ ନ ଥିଲେ ଦଣ୍ଡ କାହାକୁ ଦିଆଯିବ ! ତେଣୁ ପ୍ରଥମେ ତାଙ୍କୁ ଧରିବା ଦରକାର । ମାଆ ଏଣେ ଏ ଭଳି ଭାବୁଥିଲେ, ତେଣେ ଶ୍ରୀକୃଷ୍ଣ ଭାବୁ ଥିଲେ ମୁଁ ଲହୁଣୀ ଆଉ କାର ନୁହଁ ମାଆର ଖାଇଛି । ଯାହା ମାଆର ତାହା ସବୁ ମୋର । ସେଥିରେ ପୁଅର ପୁରା ଅଧିକାର । ସେ ତାକୁ ଯାହା ଇଚ୍ଛା ତାହା କରୁ । ଖାଇପାରେ, ଖୁଆଇ ପାରେ, ଦାନ ଦେଇପାରେ, ଫିଙ୍ଗିପାରେ, ନଷ୍ଟ କରି ପାରେ । ଏ ସବୁ ତା'ର ଇଚ୍ଛା ଉପରେ ନିର୍ଭର କରୁଛି । ମାଆ ରଖିଥିଲା ଲହୁଣୀ ହାଣ୍ଡି ମୁଁ ଉଠେଇ ଆଣିଲି, ତା'ର ଲହୁଣୀ ନିଜେ ଖାଇନେଲି, ନିଜର ସାଙ୍ଗମାନଙ୍କୁ ଖୁଆଇଲି । ଏହା ଚୋରି କେମିତି ହେଲା । ଅପରାଧ କେମିତି ହେଲା ? ହେଲେ ଶ୍ରୀକୃଷ୍ଣଙ୍କର ଏତେ ବୁଦ୍ଧି କୁଆଡ଼ୁ ଆସିବ । ସେ ତ କେତେ ସରଳ ହୋଇଯାଇଛନ୍ତି ଅଜ୍ଞ । ମୁଁ ତ ପିଲା ଲୋକଟେ, ମୋର ତ ମାଆର କଥା ମାନି କାମ କରିବା କଥା, ବୋଲ ମାନି ଚାଲିବା କଥା, ତାକୁ କହି ଯାହା କିଛି ଜିନିଷ ନେବା କଥା । ମୋତେ ଭୋକ ହେଲେ ମାଗିବା କଥା ଅଉ ସେ ଯାହା ଦେବ ଖାଇବା କଥା । ସେ ଦେଲେ ଅନ୍ୟକୁ ଖୁଆଇବା କଥା । ତାକୁ ନ ପଚାରି ମୁଁ ଯାହା ବି ନେଇ ଆସିଲି ତାହା ଚୋରି ନୁହଁ ତ ଆଉ କଣ ? ତେଣୁ ମୋତେ ଦଣ୍ଡଦେବାର ପୁରା ଅଧିକାର ତା'ର ଅଛି । ଯେଉଁ-ବେଳେ ଚୋର ନିଜେ ନିଜକୁ ଚୋର ବୋଲି ସ୍ୱୀକାର କରିନିଏ ସେତେବେଳେ ତାକୁ ଚୋର ବୋଲି ପ୍ରମାଣ କରିବାର କୌଣସି ଦରକାର ନାହିଁ । ଯେଉଁ ଚୋରି କଲାବେଳେ ସେ ଦଣ୍ଡ ଦବା ଲୋକ ହାତରେ ଧରାପଡ଼ିଛି, ସେତେବେଳେ ସାକ୍ଷୀ ପ୍ରମାଣର ବି ଦରକାର ପଡ଼ୁ ନାହିଁ । ତାକୁ ସେକ୍ଷଣି ଦଣ୍ଡ ଦିଆଯାଇ ପାରିବ । ଶ୍ରୀକୃଷ୍ଣ ତ ନିଜକୁ ଚୋର ବୋଲି ଧରିନେଇଥିଲେ । ତେଣେ ମାଆ ବି ତାଙ୍କର ସର୍ବାଧିକାର ହେତୁ ବେତ ନେଇ ଆସୁଥିଲେ, ଏଇଆ ଭାବି ଯେ ତାକୁ କିଛି ନ ପଚାରି ଦଣ୍ଡ ଦେବ । ତେଣୁ ତାଙ୍କ ହାତରେ ବେତ ଥିଲା । ଚୋର ବି ଆପଣାର ସାଧ୍ୟମତେ ଧରା ପଡ଼ିବାରୁ ନିଜକୁ ବଞ୍ଚାଇ ଥାଏ । ଶ୍ରୀକୃଷ୍ଣ ମାଆଙ୍କୁ ପାଖରେ ଦେଖି ଦଉଡ଼ି ପଳେଇବାକୁ ଲାଗିଲେ । ମାଆଙ୍କର ଗର୍ବ ଥିଲା, ଏ ଛୁଆ ଲୋକଟେ, ମୋ ଆଗରୁ ପଳେଇ ପଳେଇ କେତେ ବାଟ ପଳେଇବ । ଘର ପାହଣ୍ଡ ଅଟେଇ ଗଲେ ଧରି ପକେଇବ । ଏଇଆ ଭାବି ସେ ନିଜର ଶକ୍ତିମତେ ଦଉଡ଼ିଗଲେ । ମାଆ ତ ବେଶ୍ ସାହସ କଲେ, ହେଲେ କାହିଁ ପିଲା ଆଉ କାହିଁ ତାଙ୍କ ଭଳି ପରିଣତ ବୟସ୍କା ପାଚିଲା ଶରୀରର କୃଷ୍ଣ କାହିଁ, ଆଉ କାହିଁ ବପୁରିଆ ଯଶୋଦା ମାଆ । ସୁକୁମାରୀ ଗୋରୀ ମାଆ ଆଉ କାଳିଆ ଗଉଡ଼ ପିଲାର କି ବଳ କଷାକଷି !

ଶ୍ରୀକୃଷ୍ଣଙ୍କ ପଛେ ପଛେ ମାଆ ଦଉଡ଼ି ଦଉଡ଼ି ବେଦମ୍ ହୋଇଗଲେ । ଏକେତ ତାଙ୍କର ମୋଟା ଶରୀର । ତା'ପରେ ଅତି ସ୍ଥୂଳ ନିତମ୍ବ ହେତୁ ପିଲା ସାଙ୍ଗରେ କେମିତି ଦଉଡ଼ି ପାରିବେ । ମାରିବା ପାଇଁ ଦଉଡ଼ି ଥିଲେ; ହେଲେ ତାଙ୍କର ବେଣୀ ଏଣେତେଣେ

ଦୋହଲ ପ ହୁଥିଲ, ଯତେ ଯେମିତ ନାହିଁ ନାହିଁ କରି ମନା କରୁଥିଲ । ଲହୁଣୀ ଟିକଏ ପ ଁ ଲବଣି ପିଲ୍ଲାକୁ ମାରନାଇଁ; ହେଲେ ମାତା ସେ କଥା ଶୁଣୁ ନ ଥିଲେ । ତାଙ୍କର ମୁହଁ ବାରମ୍ବାର ଝାଳେଇ ଯାଉଥିଲ, ଯେମିତ ତା'ର ଶୀତଳତାରେ ରାଗ ଶାନ୍ତ ହୋଇଯିବ । ହୋଧାଗ୍ନି ଲିଭିଯିବ; କନ୍ତୁ ମାଆ ସେଇ ପିଲାମାନଙ୍କୁ ରାଗି ଦଣ୍ଡ ଦେଇ ଗୁଲୁଥିଲେ । ଝାଳ ବାହାର ଆସିବା ମାତକେ ପୋଛୁ ପକଉ ଥିଲେ । ସେମାନଙ୍କ ସ୍ଥାନରେ ଅନ୍ୟମାନେ ଆସି ଯାଉଥିଲ । ଗୋଟାଏ ହାତରେ ଝାଳ ଯାଗରେ ଲଢ଼େଇ କରି ଗୁଲୁଥିଲେ, ଆଉ ହାତରେ ବେତଧରି କାହ୍ନା ପଛେ ପଛେ ଦଉଡ଼ ଯାଉଥିଲେ ।

ଶ୍ରୀକୃଷ୍ଣ ଦେଖିଲେ ମାଆ କଦାପି ମାନବ ନାହିଁ । ସେ ଗ୍ଲହିଁଥିଲେ ଯୋଉ ସଖା-ମାନଙ୍କୁ ଲହୁଣୀ ଖୁଆଇଥିଲେ ସେମାନଙ୍କ ସାହାଯ୍ୟରେ ଗଛ ଉପରେ ଚଢ଼ିଯାଇ ପାରଥାନ୍ତେ । ମାଆ ତ ଆଉ ଗଛ ଉପରକୁ ଚଢ଼ି ଯାଇ ପାରିବ ନାହିଁ ! ତା'ର ଭିତରେ ବାବା ଯୁଆଡ଼ୁ ହେଲେ ଆସି ପହଞ୍ଚ ଯାଆନ୍ତେ । ସେ ମାଆଠୁ ବଡ଼ । ସେ ତାକୁ ଆକଟ କରି ମାରିବାକୁ ମନା କରିବେ । ହେଲେ ଶ୍ରୀକୃଷ୍ଣ ଏମିତ ଡର ଯାଇଥିଲେ ଯେ ଦଉଡ଼ି ପଳେଇବା ଛଡ଼ା ଆଉ କିଛୁ ଉପାୟ ପାଇଲେ ନାହିଁ । ମାଆ ଆଗରୁ କେଉଁଆଡ଼େ ବା ପଳେଇବ ? ତେଣୁ ଶୀଘ୍ର ଧରିଦେଲେ । ଶ୍ରୀକୃଷ୍ଣଙ୍କର ସବୁବଳ ଯେମିତ ଗ୍ଲଙ୍ଗିଗଲ । ସେ ମାଆ ଆଗରେ ଦୋଷୀଭଳ ଠିଆ ହୋଇଗଲେ । ଯେତେବେଳେ ଜୀବ ସବୁମନ୍ତେ ଚେଷ୍ଟା କରି ହାରିଯାଏ, ସେତେବେଳେ ସେ କାନ୍ଦେ । ଯାହା ଆଗରେ କାନ୍ଦେ, ସେ ଯଦ ଦୟାଳୁ ହୋଇଥିବେ ତା'ହେଲେ ଏ କାନ୍ଦବା ଦେଖି ନିଶ୍ଚୟ ତା'ର ଦୟା ହେବ । ଏଣୁ ପିଲାମାନେ ମାଆ ଆଗରେ ପ୍ରତି କଥାରେ କାନ୍ଦନ୍ତି । କାନ୍ଦବାଟା ହିଁ ଛନ୍ଦକପଟଶୂନ ପିଲାଙ୍କର କାମ । ଶ୍ରୀକୃଷ୍ଣ ବି ଯେତେବେଳେ ସବୁ ଚେଷ୍ଟା କରି ହାରିଗଲେ, ସେତେବେଳେ ମାଆ ଆଗରେ ଡରିମରି ଭୟରେ ଥରି ଯାଇ କାନ୍ଦବା ଆରମ୍ଭ କରିଦେଲେ । ଅପରାଧ ତ କରିଛନ୍ତି, ଦଣ୍ଡ ପାଇବା କଥା । ତେବେ କାନ୍ଦାକଟା କରି ଦଣ୍ଡକୁ ଟିକିଏ ହେଲେ କମେଇ ଦଆଯାଉ । ଏଇଆ ଭାବି ସେ ମାଆ ମନରେ ଦୟାଭାବ ଜଗେଇବାର ଚେଷ୍ଟା କଲେ । ଘରରେ ମାଆ ତାଙ୍କ ଆଖିରେ ମୋଟା କରି କଜଳ ଲଗେଇ ଦେଇଥିଲେ । ସେ ଗ୍ଲହୁଁଥିଲେ ଆଖିରୁ ଲୁହ ଗଡ଼ ଆସୁ ଯେମିତ ମୁହଁ କଳା ସଳବଳ ହୋଇଯିବ । ପିଲାଙ୍କ ଲୁହ ଦେଖିଲେ ଯେ କେହ ତରଳଯାଏ, ହେଲେ ଆଜ ସେ ଲୁହ ବି ବାହାରୁ ନ ଥିଲ । ବେଳ ପଡ଼ିଲାବେଳକୁ ଧୋକା ଦେଲା । ଲୁହ ବି ନିଜ ଇଚ୍ଛାରେ ଆଖିରୁ ଗଡ଼ି ଆସିବାକୁ ଗ୍ଲହୁଁ ନ ଥିଲେ । ସତେ ଯେମିତ ତାଙ୍କର ବି ମାଆକୁ ଡର । ଶ୍ରୀକୃଷ୍ଣ ଭାବିଲେ—ସବୁକଥା ବିପରୀତ ହେଲାଣି । ଲୁହ, ସେ ବି ଦରକାରବେଳେ ବାହାରୁ ନାହିଁ ! ତା'ପରେ ସେ ନିଜେ ତାଙ୍କର ଗୋଲାପୀ କଅଁଳ ପାପୁଲରେ ଆଖି ମଳି ବସିଲେ । ଯେମିତ କହୁଥିଲେ, ଦୁଷ୍ଟ, ତମେ ସବୁ ଏମିତ ବେଳକୁ କେମିତ ଶୁଖିଗଲ । ଦ'ଗ୍ଲବ ବୁନ୍ଦା ହେଲେ ବାହାର ଆସ ! ଲୁହ ତ ଆଖି

ଭିତରେ ଥିଲା । ଉପରେ କଜଳ ଥିଲା । କଜଳ ଖେଳେଇ ହୋଇଗଲା । ପଦ୍ମଭଳି ପାଚୁଲି ଆଉ ଗାଲ କପାଳକୁ କଳାକରି ପକେଇଲା । ଯାହାର ସଙ୍ଗ କରିବ ତା'ର କଳୁହେଲେ ରଙ୍ଗ ତ ଲାଗିବ ନିଶ୍ଚୟ !

ଦୋଷୀ ତ ଆଉ ଆଖିଟେକି ଚାହିଁ ପାରିବ ନାହିଁ ! ଶ୍ରୀକୃଷ୍ଣ ମାଡ଼ ଖାଇବା ଭୟରେ ଆତୁର ଆଖିରେ ଆକାଶକୁ ଚାହିଁବାକୁ ଲାଗିଲେ । ଯେମିତି ସେ ନୀଳ ଆକାଶକୁ କହୁଛନ୍ତି—"ଆକାଶ ! ତୋର ମୋର ରଙ୍ଗ ସମାନ । ତୁ ବର୍ଷାକର । ତୁ ହିଁ ଏ ଆଖିକୁ ଭିଜେଇ ଦେ । ଯେମିତି ଘରବୁଢ଼ା ହେଲେ ଲୁହ ଗଡ଼ିଆସୁ; ମାଜ ଆକାଶ ଏ ନୀଳା ଦେଖି ହସୁଥିଲା । ଯେମିତି କହୁଥିଲା—ସବୁ ଭୂତଙ୍କୁ ଆପଣ ଏକାଠି କରିଦେଇ ସବୁକଥା ଅଜ୍ଞା କରି ଦେଇଛନ୍ତି । ଆମକୁ ବାନ୍ଧିରଖିଛନ୍ତି । ବର୍ତ୍ତମାନ ବନ୍ଧନରେ ଥାଇ ଆପଣ ବି ବନ୍ଧନର ମିଠା ଚାଖନ୍ତୁ ।"

ମାଆ ଡରି ମୁହଁ ଆଡ଼ କରିଥିବା ଶ୍ରୀକୃଷ୍ଣଙ୍କର ଦୁଇ ହାତ ଧରିନେଲେ ଆଉ ଧମକେଇ କହିଲେ—"କାହ୍ନ'ଣ ରେ, ତୁ ଚୋରି କରିବା କେବଠୁ ଶିଖିଲୁ ? ଗୋପୀମାନେ ମୋତେ ଆସି କହିଲେ ମୁଁ ଘରେ ଯାଉ ନ ଥିଲି; ହେଲେ ଆଜି ନିଜେ ଦେଖିଲି ଯେତେବେଳେ ବିଶ୍ୱାସ କେମିତି କରିବି ନାହିଁ । ଆଜି ମୁଁ ତୋତେ କଦାପି ଛାଡ଼ିବି ନାହିଁ ।" ଏହା ଶୁଣି ଶ୍ରୀକୃଷ୍ଣ ଭୟରେ ଥରିବାକୁ ଲାଗିଲେ ।"

ପୁଅକୁ ଡରେଇବାର ଉଦ୍ଦେଶ୍ୟ ମାତାଙ୍କର ନ ଥିଲା । ସେ ତ ତାଙ୍କର ଚୋରି କରିବା ନେଇ ରାଗିଥିଲେ । ଶ୍ରୀକୃଷ୍ଣ ଏତିକି ବି କହିଲେ ନାହିଁ ଯେ ମୁଁ ଚୋରି ଆଉ କରିବି ନାହିଁ । ସେ ପୁରା ମୌନ ପାଳିଚି ଯାଇଥିଲେ । ଏହାଦେଖି ମାଆ ନିଜେ ଡରିବସିଗଲେ । ଭାବିଲେ—ପିଲାଲୋକ, ଖୁବ୍ ଡରି ଯାଇଛି । ଛାତିରେ ଡର ପଶିଗଲେ ଅନର୍ଥ ହେବ । ଏଇଆ ଭାବି ସେ ଧରିଥିବା ବେତଟି ଫିଙ୍ଗିଦେଲେ । ଯେମିତି ସଙ୍କେତରେ କହିଲେ "ତୁ ମୋ' ଶରୀରରୁ ଜନ୍ମ ହୋଇଛୁ ତେଣୁ ଅନ୍ୟ ଶରୀରରୁ ଜନ୍ମ ହୋଇଥିବା ବେତରେ ମୁଁ ତୋତେ ମାରିବି ନାହିଁ ।" ବେତଟି ଫିଙ୍ଗିଦେବା ହେତୁ ଶ୍ରୀକୃଷ୍ଣଙ୍କ ମନରେ ଟିକାଏ ଦମ୍ଭ ଆସିଲା ।

ମା' ତ ଭାରି ପୁତ୍ରବତ୍ସଳା । ସେ ପୁଅର ଭଲ ଚାହାନ୍ତି ଆଉ ପୁଅର ଭଲପାଇଁ ହିଁ ଦଣ୍ଡ ଦେବାକୁ ଚାହୁଁଥିଲେ । ତେଣୁ ବେତଟି ଫିଙ୍ଗିଦେଇ କହିଲେ—"ମୁଁ ତୋତେ ମାରିବି ନାହିଁ ! ତୋତେ ବାନ୍ଧି ରଖିବି । ତୁ ଭାରି ଦୁଷ୍ଟାମି କଲୁଣି । ଏଇଠି ତୋତେ ବାଲୁଙ୍ଗା ଭଳି ବାନ୍ଧିଦେଇ ରଖିବି । ଯେମିତି ତୁ ଆଉ କାହା ଘରେ ପଶି ଚୋରେଇ ପାରିବୁ ନାହିଁ ।"

ଶ୍ରୀକୃଷ୍ଣ ତ କହୁଛିବୋଲି କହୁ କହୁ ନ ଥିଲେ । ମାତା ସ୍ଥିର କରି ନେଇଥିଲେ ଯେ ଆଜି ତାଙ୍କୁ ବାନ୍ଧିବେ ହିଁ ବାନ୍ଧିବେ । ଏବେ ବାନ୍ଧିଦେଲେ ତା'ର ଚୋରି ଅଭ୍ୟାସ ଛାଡ଼ିଯିବ ନ ହେଲେ ସେ ଦିନକୁ ଦିନ ଅଧିକ ଦୁଷ୍ଟାମି କରି ବସିବ । ସେ ଭାବିଲେ, କିଛି ବେଳ ପାଇଁ ବାନ୍ଧି ରଖିଲେ ଗୋପୀମାନେ ବଳେ ଆସି ତାଙ୍କୁ ଛଡ଼େଇବେ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ପ୍ରେମର ଲୀଳା ତ ଦେଖନ୍ତୁ, ଯା'ର ନା ଭିତର ଅଛି ନା ବାହାର, ନା ପୂର୍ବ ନା ପର, ଯେ ସବୁ ପ୍ରକାର ବନ୍ଧନରୁ ମୁକ୍ତ, ତାଙ୍କୁ ମାଆ ଦଉଡ଼ିରେ ବାନ୍ଧି ରଖିବାକୁ ଚାହାନ୍ତି । ଶରୀରକୁ ନେଇ ଅନ୍ୟ କୌଣସି ବସ୍ତୁ ସହିତ ଯୋଡ଼ି ରଖିବାକୁ ବନ୍ଧନ କୁହାଯାଏ । ଶ୍ରୀକୃଷ୍ଣଙ୍କ ପାଇଁ ପର କିଏ ଅପର କିଏ ? ବନ୍ଧନ କ'ଣ ମୋକ୍ଷ ବା କ'ଣ ? ମାତ୍ର ଏ ସବୁ ତ ଜ୍ଞାନର କଥା । ଏଠାରେ ତ ମାଆ ପୁଅର ପ୍ରେମମୟୀ ଲୀଳା ହିଁ ଚାଲିଛି । ଏହାର ଆସ୍ୱାଦନ ଦ୍ୱୈତବିନା ସମ୍ଭବ ନୁହଁ । ବନ୍ଧନ ତ ପ୍ରେମର ସ୍ୱରୂପ । 'ବନ୍ଧନାତ୍ ବନ୍ଧୁରୁଚ୍ୟତେ' । ଯେ ଆମକୁ ପ୍ରେମପାଶରେ ବାନ୍ଧିଦିଏ ସେହି ବନ୍ଧୁ । ପ୍ରାଣୀମାନଙ୍କର ଏକମାତ୍ର ବନ୍ଧୁ ଶ୍ରୀହରି । ତେଣୁ ମାଆ ଆପଣାର ବେଣୀରୁ ବନ୍ଧନ ଖୋଲି ଡୋର କାଢ଼ି ନେଇ ପୁଅକୁ ବାନ୍ଧିବାକୁ ଆଗେଇଗଲେ ।

## ଛପ୍ପୟ

ଜିନକୋ ଜପ, ତପ, ଧ୍ୟାନ, ଯୋଗତେଁ ପକରି ନ ପାବେଁ ।
ତିନକୁଁ ଜନନୀ ଛରୀ ଲୟେ ଡର ସହିତ ଭଗାବେଁ ॥
ଦେହ ଥୂଳ ସୁକୁମାର ଶ୍ରମିତ ଜବ ଜାନୀ ମାତା ।
ସ୍ୱୟଂ ପକଡ଼ି ମହିଁ ଆଇ ଗୟେ ତବ ଭକ୍ତ ଭୟ-ତ୍ରାତା ॥
ନିଜ କରତେଁ ହରି-କର ପକରି, ବୋଲୀ କ୍ୟୋଁ ଚୋରୀ କରି ?
ରୋୟେ ଅଁଖିନ ମୀଡ଼ି ପ୍ରଭୁ, ତବ ଜନନୀ ଫେଁକୀ ଛରୀ ॥

## ଦମ୍ନାନ୍ତୁ ଦାମୋଦର

ସ୍ୱମାତୁଃ ସ୍ୱିନ୍ନଗାତ୍ରାୟା ବିସ୍ରସ୍ତକବରସ୍ରଜଃ ।
ଦୃଷ୍ଟ୍ୱା ପରିଶ୍ରମଂ କୃଷ୍ଣଃ କୃପୟାଽଽସୀତ୍ ସ୍ୱବନ୍ଧନେ ॥
ଏବଂ ସନ୍ଦର୍ଶିତା ହ୍ୟଙ୍ଗ ହରିଣା ଭୃତ୍ୟବଶ୍ୟତା ।
ସ୍ୱବଶେନାପି କୃଷ୍ଣେନ ଯସ୍ୟେଦଂ ସେଶ୍ୱରଂ ବଶେ ॥

(ଶ୍ରୀ ଭା ୧୦ ସ୍କ, ୯ ଅ, ୧୮-୧୯ ଶ୍ଳୋକ)

### ଛପ୍ପୟ

କସିକେଁ ପକରେ ଶ୍ୟାମ୍ ଦଇ ମୀଠୀ ସୀ ଗାରୀ ।
ହରିକୂଁ ବାଁଧନ ହେତୁ କଟନ ତେଁ ଡୋରୀ ନିକାରୀ ॥
ଦଇୟେ ଲପେଟା ଏକ କମର ମହଁ ବାଁଧନ ଲାଗୀ ।
ଦ୍ୱୈ ଅଂଗୁଲ କମ ରହୀ ଜେବରୀ ଦୂସରି ମାଁଗୀ ॥
ପୁନ ଦ୍ୱୈ ଅଙ୍ଗୁଲ କମ ରହୀ ପୁନ ବାଁଧୀ ପୁନ କମ ଭଇ ।
ଘର କୀ ସବ ରସ୍‌ସୀ ଚୁକୀ, ହସୀ ମାତୁ ବିସ୍ମିତ ଭଇ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଶ୍ରୀକୃଷ୍ଣ ଯେତେବେଳେ ଦେଖିଲେ ଯେ ପରିଶ୍ରମ କରି ମାଆଙ୍କ ଦେହ ଝାଳେଇ ଗଲାଣି, ତାଙ୍କର ବେଣୀରେ ବନ୍ଧା ହୋଇଥିବା ଫୁଲଗୁଡ଼ିକ ଅସ୍ତବ୍ୟସ୍ତ ହୋଇ ପଡ଼ିଲାଣି; ମାତାଙ୍କୁ ଏଭଳି ପରିଶ୍ରମ କରୁଥିବା ଦେଖି ତାଙ୍କ ମନରେ କୃପା ଉଦୟ ହେଲା ଏବଂ ସେ ନିଜେ ନିଜେ ବାନ୍ଧି ହୋଇଗଲେ । ରାଜନ୍ ! ଏଭଳି ଭୃତ୍ୟବଶ୍ୟତା ନିଜେ ଭଗବାନ୍ ଯଦି ନ ଦେଖାଇବେ, ତା'ହେଲେ ବ୍ରହ୍ମାଦି ଦେବଗଣଙ୍କ ସହିତ ଏ ବିଶ୍ୱବ୍ରହ୍ମାଣ୍ଡ ଯା'ର ଅଧୀନ, ସେହି ସ୍ୱାଧୀନ ଶ୍ରୀକୃଷ୍ଣଙ୍କୁ କିଏ ବା ବାନ୍ଧି ରଖି ପାରିବ !"

ବନ୍ଧନ ବିନା ରସ ନାହିଁ । ଯେ ବନ୍ଧନମୁକ୍ତ ସେ ରସ ଆସ୍ୱାଦନ କେମିତି କରିବ ? ପ୍ରଭେଦ ଖାଲି ଏତିକି ଯେ ଜୀବ ଯେତେବେଳେ ବିଷୟରେ ବାନ୍ଧି ହୋଇଯାଏ ସେତେ-ବେଳେ ସେ ବଦ୍ଧ ହୋଇଯାଏ । ଯେତେବେଳେ ଶିବ ସହିତ ତା'ର ସଂଯୋଗ ହୁଏ ସେତେବେଳେ ସେ ମୁକ୍ତ ହୁଏ, ସେ ସଙ୍ଗର ନାମ ମୁକ୍ତି । କିନ୍ତୁ ଆଉ ଏକ ରସ ଅଛି ଯାହା ସବୁ ରସଠାରୁ ଭିନ୍ନ । ସେଥିରେ ନା ଜୀବ ବିଷୟ ସହିତ ବାନ୍ଧିହୁଏ ନା ବ୍ରହ୍ମ ସହିତ ସେତେବେଳେ ସେ ସ୍ୱୟଂ ବ୍ରହ୍ମଙ୍କୁ ବାନ୍ଧିନିଏ । ଏହାର ନାମ ପଞ୍ଚମ ପୁରୁଷାର୍ଥ । ଏହାକୁ ରାଗମାର୍ଗ, ରସଅଧ୍ୱା ବା ପ୍ରେମପନ୍ଥା ବୋଲି କୁହାଯାଏ । ଏଥିରେ ଜୀବ ଶିବ ସହିତ ସାଯୁଜ୍ୟ ଲାଭ କରି ନ ଥାଏ, ମାତ୍ର ତାଙ୍କୁ ଇଚ୍ଛାନୁସାରେ ବାନ୍ଧି ନଚେଇ ଥାଏ । କିଏ ଦାସ ହୋଇ ସେବା ଦ୍ୱାରା ଅଧୀନ କରି ସ୍ୱାମୀଙ୍କୁ ନଚାଏ, କିଏ ସଖା ହୋଇ ବନ୍ଧୁ ତା'ର ବନ୍ଧନରେ ବାନ୍ଧି ଆଲିଙ୍ଗନ କରି ହୃଦୟ ସହିତ ହୃଦୟର ଡୋରି ବାନ୍ଧିଦିଏ । କିଏ କିଏ ମାତାପିତା ହୋଇ ସର୍ବେଶ୍ୱରଙ୍କୁ ପୁଅ କରି ତାଙ୍କର ଲାଳନ ପାଳନ କରନ୍ତି, ପୁଅ ବୋଲି ଡାକନ୍ତି, ଦୋଷକଲେ ଧମକ ଚମକ ଦିଅନ୍ତି । ସେଇ ପ୍ରୀତିଡୋରିରେ ବାନ୍ଧି ରଖିଥାନ୍ତି । ଆଉ କିଏ କାନ୍ତ, ଶ୍ରେଷ୍ଠ, ପ୍ରିୟ, ପ୍ରାଣନାଥ ତଥା ପତିଭାବରେ ଗ୍ରହଣ କରି ରତି ବନ୍ଧନରେ ବାନ୍ଧି ରଖି ଇଚ୍ଛାମତେ ନଚାନ୍ତି, ହସାନ୍ତି ଓ କନ୍ଦାନ୍ତି । ପ୍ରେମର ବନ୍ଧନ କେଉଁ ଭାଗ୍ୟରେ ଥିଲେ ମିଳେ । ସେଥିରେ ବାନ୍ଧିହୋଇ ଜୀବ କୃତାର୍ଥ ହୋଇଯାଏ । ବ୍ରହ୍ମ ମଧ୍ୟ ନିଜକୁ ଧନ୍ୟ ମନେ କରନ୍ତି ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ମାତା ଶ୍ରୀକୃଷ୍ଣଙ୍କୁ ଧରିନେଲେ । ପୁଅକୁ ବେଶ୍ ଡର ଲାଇଥିବା ଦେଖି ସେ ବେତ ଫୋପାଡ଼ି ଦେଇ କହିଲେ—ତୋତେ ବାନ୍ଧିବି ।" ଏହା କହି ଏ ଜୁଡ଼ାରେ ବନ୍ଧା ବେଣୀଡୋରି ଖୋଲିବାକୁ ଲାଗିଲେ । ମାତାମାନେ କୁଣ୍ଡେଇ ହେଲାବେଳେ ଯେଉଁ କେଶ ଝଡ଼ିଯାଏ ତାକୁ ରଖିଥାନ୍ତି । ରଖି ରଖି ଅଧିକ ହେଲେ ତାକୁ ବଳି ବଳି ଦଉଡ଼ି ତିଆରି କରନ୍ତି । ସେଇ ଡୋରିରେ ବେଣୀ ବାନ୍ଧନ୍ତି । ମାଆ ଭାବିଲେ ତନୟଙ୍କୁ ଆପଣା ତନୁରୁ ଜାତ ଏଇ କେଶଦଉଡ଼ିରେ ବାନ୍ଧିବି । ଭିନ୍ନ ଜିନିଷର ବନ୍ଧନ ଭିନ୍ନତା ସୃଷ୍ଟି କରିଥାଏ ।"

ଶ୍ରୀକୃଷ୍ଣ ଯେଉଁଭଳି ଶିଶୁ ହୋଇଥାନ୍ତୁ ନା କାହିଁକି, ଈଶ୍ୱର ତ ? ରାଜା ଭିକାରି ଭାବରେ ବୁଲିଲେ ମଧ୍ୟ ତା'ର ରାଜପଣ ଯେପରି ଯିବନାହିଁ, ଭଗବାନଙ୍କ ଐଶ୍ୱର୍ଯ୍ୟ, ଶକ୍ତିଗୁଡ଼ିକ ସେପରି କୁଆଡ଼େ ଯିବେ ? ସେମାନେ ତ ତାଙ୍କ ସହିତ ନିରନ୍ତର ରହିଛନ୍ତି । ମାତ୍ର ସେ ତାଙ୍କର ଉପଯୋଗ କଲେ ନାହିଁ । ଭକ୍ତବତ୍ସଳତାର ବଶୀଭୂତ ହୋଇ ସରଳ ବାଳକ ଭାବରେ ରହିଥିଲେ । ଐଶ୍ୱର୍ଯ୍ୟ ଆଦି ଶକ୍ତିମାନେ, ଅଣିମାଦି ସିଦ୍ଧି ସମୂହ ସର୍ବଦା ଶ୍ୟାମସୁନ୍ଦରଙ୍କର ମୁହଁକୁ ଚାହିଁ ରହିଥିଲେ, ସେବା ନିଯୁକ୍ତ ହେବାପାଇଁ; କିନ୍ତୁ ସେ ବାଳକ ହୋଇ ରହିଥିବାବେଳେ ଏ ଐଶ୍ୱର୍ଯ୍ୟ ଅଷ୍ଟ ସିଦ୍ଧିର କି କାମ ? ତଥାପି ମଧ୍ୟ ଏହି

ଶକ୍ତିମାନେ ଶ୍ରୀକୃଷ୍ଣଙ୍କୁ ଅତ୍ୟନ୍ତ ସଙ୍କଟରେ ରହିଥିବା ଦେଖିଲେ ରହି ପାରୁ ନ ଥିଲେ; ସେମାନେ ତୁରନ୍ତ ଶ୍ରୀକୃଷ୍ଣଙ୍କୁ ସାହାଯ୍ୟ କରିବାକୁ ଦଉଡ଼ି ଆସୁଥିଲେ । ଜଣେ ଅତି ସୁକୁମାରୀ କୋମଳାଙ୍ଗୀ ଗୃହିଣୀ ଅଛି । ତା'ର ପରମ ପରାକ୍ରମୀ ଶୂର-ବୀର ପତି । ସେ ପତି ସାଙ୍ଗରେ ଜଳବିହାର କରୁଛି । ଜଳବିହାର ସମୟରେ ପତି ଗଭୀର ଜଳକୁ ଯାଇ ବୁଡ଼ି ଯାଉଥିବା ଦେଖିଲେ ସେ କଦାପି ରହିପାରିବ ନାହିଁ । ଯଦିଓ ସେଇ ସୁକୁମାରୀ ଗୃହିଣୀକୁ ପହଁରି ଆସେନାହିଁ, ତଥାପି ମଧ୍ୟ ସେ ପତିକୁ ସେଭଳି ସଙ୍କଟରେ ଥିବା ଦେଖି ରହିପାରିବ ନାହିଁ । ,ତା'ର ପରିଶ୍ରମ ବୃଥା ହେଉ ପଛକେ ସେ ତାକୁ ଉଦ୍ଧାର କରିବାକୁ ପାଣିରେ ଧସେଇ ପଶିବ, ଆଉ ହୁଏତ ନିଜେ ବୁଡ଼ିଯିବ ଆଉ ଶେଷରେ ପତି ହିଁ ତାକୁ ବଞ୍ଚେଇବ ବା ଆଉ କିଛି ନୂଆ କଥା ହେବ । ହରିଙ୍କୁ ଆଖି ଆଗରେ ବିପତ୍ତିରେ ପଡ଼ିଥିବା ଦେଖି ସେଭଳି ସେଇ ଶକ୍ତିମାନେ ତାଙ୍କୁ ଉଦ୍ଧାର କରିବାକୁ ଆଗେଇ ଆସନ୍ତି । ଉଦ୍ଧାର କରି ନ ପାରିବା ଅନ୍ୟକଥା ।

ଶ୍ରୀକୃଷ୍ଣ ଅନନ୍ତ କୋଟି ବ୍ରହ୍ମାଣ୍ଡର ଈଶ୍ୱରଙ୍କର ମଧ୍ୟ ଈଶ୍ୱର; ମାତ୍ର ଆଜି ସେ ମାତା ଯଶୋଦାଙ୍କର ଅଧୀନ । ଐଶ୍ୱର୍ଯ୍ୟାଦି ଶକ୍ତିମାନେ ସ୍ୱାମୀଙ୍କର ଏ ଲୀଳା ଦେଖି ଲଜେଇ ଯାଉଛନ୍ତି । ଆମର ସ୍ୱାମୀ ସର୍ବେଶ୍ୱର; ସେ ବା କିପରି କାହାର ଅଧୀନତା ସ୍ୱୀକାର କରିବେ ! ତାଙ୍କର ଯେତେବେଳେ ଯାହା ମନ ତାକୁ ସେ ପୂରା କଲେ ଯାହିଁ ଛାଡ଼ିବେ । ଏବେ ସେ ବାନ୍ଧି ହୋଇଛନ୍ତି ତ କାହା ହାତରେ ! ଗୋଟାଏ ସାଧାରଣ ଗଉଡ଼ୁଣୀ ହାତରେ ! ସେଇ ଗୋପୀ ଏହାଙ୍କର ମହତ୍ତ୍ୱ କିପରି ବୁଝିବ ? ଏହା ଭାବି ଐଶ୍ୱର୍ଯ୍ୟ ଶକ୍ତିମାନେ ଦୁଃଖ କରନ୍ତି । ଯେତେବେଳେ ମାତା ବତ୍ସଳତାର ପରାକାଷ୍ଠା ଦେଖାଇ ସର୍ବେଶ୍ୱରଙ୍କୁ ମଧ୍ୟ ଦଣ୍ଡ ଦେବାକୁ ଅଡ଼ି ବସନ୍ତି ସେତେବେଳେ ଶକ୍ତିମାନଙ୍କର ଧୈର୍ଯ୍ୟ ତୁଟିଯାଏ । ଆଉ ସେମାନେ ଦଉଡ଼ି ଆସନ୍ତି । ମାଆଙ୍କ ଆଗରେ ମାଟିଖାଇ ପାଟିଖୋଲି ଦେଖେଇବା କାଳରେ ବି ଐଶ୍ୱର୍ଯ୍ୟ ଶକ୍ତି ତା'ର ଚମତ୍କାର ଦେଖେଇଥିଲା । ମାତ୍ର ମାତାଙ୍କ ଉପରେ କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ ଭାବିଲେ କ'ଣ ସବୁ କେଜାଣି ପୁଅ ପାଟିରେ ଦେଖା ଯାଉଛି । ମାତା ସେସବୁ ଜଞ୍ଜାଳ ବୋଲି ମନେ କରିଥିଲେ ।

ବର୍ତ୍ତମାନ ଯେତେବେଳେ ଡରି ଯାଉଥିବା କୃଷ୍ଣଙ୍କୁ ବି ମାତା ଛାଡ଼ୁ ନାହାନ୍ତି ଆଉ ତାଙ୍କୁ ବାନ୍ଧିବେ ବୋଲି ଚନ୍ଦ ହେଉଛନ୍ତି; ତେଣୁ ଐଶ୍ୱର୍ଯ୍ୟ ଶକ୍ତି ଧୈର୍ଯ୍ୟଧରି ରହି ପାରିଲା ନାହିଁ । ସେ ଶ୍ରୀକୃଷ୍ଣଙ୍କର ଏଭଳି ଦୁର୍ଦ୍ଦଶା ଦେଖି ପାରିଲା ନାହିଁ । ସେ ଆସି ଉଦରରେ ପଶିଗଲା । ମାଟି ଖାଇଥିଲାବେଳେ ପାଟିରେ ଥାଇ ବିଶ୍ୱବ୍ରହ୍ମାଣ୍ଡର ଦର୍ଶନ କରାଇଥିଲା । ଏଥର ଉଦରରେ ଅନନ୍ତ ଶକ୍ତିକୁ ଅଧିଷ୍ଠିତ କଲା । କୃଷ୍ଣଙ୍କର କଟି ଯେମିତି ଥିଲା ସେମିତି ଦେଖାଯାଉଥିଲା; ମାତ୍ର ଯେଭଳି ଅର୍ଜୁନକୁ ବିଶ୍ୱରୂପ ଦେଖାଇବାବେଳେ ଭଗବାନଙ୍କର ସମଗ୍ର ଶରୀର ମଧ୍ୟ ବିଶ୍ୱମୟ ହୋଇ ଯାଇଥିଲା, ସେ କଥା ଏଠାରେ ନ ଥିଲା । ଶ୍ରୀକୃଷ୍ଣଙ୍କର ଅଣ୍ଟା ଠିକ୍ ସେଇଭଳି ମନେ ହେଉ ଥିଲା । କୌଣସି ଅଙ୍ଗର କୌଣସି ବୃଦ୍ଧି ହୋଇ ନଥିଲା । କୌଣସି ପ୍ରକାର ପରିବର୍ତ୍ତନ ହୋଇ ନ ଥିଲା, ତେବେ ତା'ର ଅନ୍ତ ରହିଲା ନାହିଁ ।

ମାଆ ତାଙ୍କର ବେଣୀ ଡୋର ଖୋଲି ଶ୍ରୀକୃଷ୍ଣଙ୍କ ଅଣ୍ଟାକୁ ବାନ୍ଧିବା ଆରମ୍ଭ କରିଦେଲେ । ଶେଷରେ ଗୁଡ଼େଇ ଦେଇ ଗଣ୍ଠି ପକେଇବାକୁ ଉଦ୍ୟତ ହୁଅନ୍ତେ ଦେଖିଲେ ଡୋରଟି ଦୁଇ ଅଙ୍ଗୁଳ ମାତ୍ର ଛୋଟ ହେଲା । ମାଆ ଭାବିଲେ କିଛି କଥା ନାହିଁ ଆଉ ଗୋଟାଏ ଯୋଡ଼ି ଦେବା । ଏଇଆ ଭାବି ସେ ଦାସୀକୁ ଡାକିଲେ—"ଆଉ ଡୋରଟିଏ ଆଣ !"

ଦାସୀ ଉତ୍ତର ଦେଲା—"ଆଉ ବେଣୀ ଡୋର କ'ଣ କରିବ ରାଣୀ ମା' !"

ଏ କୃଷ୍ଣ ଭାରି ଦୁଷ୍ଟାମି କଲାଣି । ଘର ଘର ଯାଇ ଲହୁଣୀ ଚୋରାଉଛି । ମୋର ବିଶ୍ୱାସ ହେଉ ନ ଥିଲା । ଆଜି ଶେଷକୁ ଇଏ ନିଜ ଘରେ ଚୋରି କଲା । ଆଜି ତାକୁ ଆଉ ଛାଡ଼ିବି ନାହିଁ, ଯେମିତି ହେଉ ବାନ୍ଧିବି । ମୋର ମୁଣ୍ଡର ଡୋରଟି ଛୋଟ ପଡ଼ୁଛି ଯେ ଆଉ ଗୋଟାଏ ମାଗୁଛି । ଯା' ଦଉଡ଼ି ଯାଇ ଆଣ । ମାତା ଏତେ କଥା ଏକା ନିଃଶ୍ୱାସକେ କହିଗଲେ । ଯେ କଥାଟି ଖାଲି ଦାସୀକୁ କହିଲେ ସିନା, ଶୁଣିଲେ ସଭିଏଁ । ଯେତେ ଗୋପୀ ପାଖ ପଡ଼ିଶାରେ ଥିଲେ ସଭିଏଁ ଶୁଣିଲେ । ଏକାନରୁ ସେକାନ ହୋଇ କଥାଟି ସାରା ଗୋପରେ ଘଡ଼ିକେ ବ୍ୟାପ୍ତ ହୋଇଗଲା ।...ଆଜି କୃଷ୍ଣ ଚୋରି କରି ଧରା ପଡ଼ିଛି । ନିଜ ଘରେ ଚୋରିଉଥିଲା । ସେ ଲହୁଣୀ ଚୋର ବୋଲି ଆଜି ମାଆର ବିଶ୍ୱାସ ହେଲା, ଏଣିକି ସେ ତାକୁ ବାନ୍ଧିବେ, ମାରିବେ, ଆକଟ କରିବେ । ଚାଲ ଯାଇ ଦେଖିବା । ବନ୍ଧାଯାଇ କୃଷ୍ଣ କେମିତି ଦିଶିବେ । ସେମାନେ ଜାଣିଛନ୍ତି, ଯଶୋଦା କୃଷ୍ଣଙ୍କୁ କେତେ ଭଲ ପାଆନ୍ତି । ନୟନ-ପିତୁଳା କରି ରଖିଛନ୍ତି । ଏକୋଇରବଳା, କେତେ ମନାସ କରି ପାଇଛନ୍ତି । କେତେ ଆଶା କରି ଚାହିଁ ଚୁହିଁ ବୁଢ଼ାକାଳର ପୁଅ । ମନ ଭିତରେ ରାଗ ରଖି ସିଏ କ'ଣ ତାଙ୍କୁ ଦଣ୍ଡ ଦେଇ ପାରିବେ । ସେମିତି ଉପରେ ଉପରେ ପୁଅକୁ ଧମକଉଥିବେ । ସେଇଆ ଭାବି ମାଆ କୃଷ୍ଣଙ୍କୁ ମାରିବେ ବାନ୍ଧିବେ ଶୁଣି କେହି ହେଲେ ଦୁଃଖ କଲେନାହିଁ । ବରଂ ସଭିଏଁ ଆନନ୍ଦିତ ହେଲେ । ଏ ପ୍ରେମମୟ ଲୀଳା ଦେଖିବାର ସୁଯୋଗ ମିଳିବ । ଏଇଆ ଭାବି ସବୁ ଗୋପୀ ଦଳ ଦଳ ହୋଇ ଆସି ରୁଣ୍ଡ ହୋଇଗଲେ । ଶ୍ରୀକୃଷ୍ଣ ମାଆଙ୍କ ଆଗରେ ଦୋଷୀଟିଭଳି ମୁଣ୍ଡ ନୁଆଁଇ ଠିଆ ହୋଇଥିଲେ । ତାଙ୍କ ଅଣ୍ଟାରେ ମାଆ ଦଉଡ଼ି ଗୁଡ଼େଇ ଦୁଇ ଅଗ ଧରି ଅଡ଼ି ଝଟେଣ୍ଡ ହେଲେ ଗଣ୍ଠି ପକେଇବେ ବୋଲି ଚାହିଁ ରହିଥିଲେ । ଦାସୀମାନେ ବେଣୀଡୋର-ମାନ ଧରି ଆସିଲେ । କେହି ବଢ଼େଇ ଦେଲେ ନାହିଁ । ସଭିଏଁ ଠିଆ ହୋଇ କହିବାକୁ ଲାଗିଲେ—"ଆଉ ମା ପିଲାଲୋକ, ତମର କ'ଣ ଲହୁଣୀର ଅଭାବ ଅଛି ?"

ବିରକ୍ତ ହୋଇ ମାଆ କହିଲେ—"ଭାରି ବକ୍ତୁରବାଦୀ ଇଏ । ପଳା ଏଠୁ ! ଲହୁଣୀ କଥା ପଡ଼ିଛି ନା ? ନିଜେ ଯେତେ ଖାଇବ ଖାଉ, ଅନ୍ୟକୁ ଖୁଆଇବ ଖୁଆଉ । ମନାନାହିଁ, କିନ୍ତୁ ସ୍ୱା'ର ଚୋରି କରିବା ଅଭ୍ୟାସରେ ପଡ଼ିଲାଣି । ସିଏ ଭାରି ଖରାପ ଅଭ୍ୟାସ । ଆଜି ମୁଁ ତାକୁ ନ ବାନ୍ଧି ଛାଡ଼ିବି ନାହିଁ । ଦାସୀ ଆଉ କରେ କ'ଣ ? ଦାସୀ ତ ! ବାଧ୍ୟ ହୋଇ

ଡୋର ଖଣ୍ଡକ ବଢ଼େଇ ଦେଲା । ମାଆ ପ୍ରଥମ ଡୋରରେ ସେ ଡୋର ଯୋଡ଼ିଦେଲେ, ଆଉଥରେ ଗୁଡ଼େଇ ଗଣ୍ଠି ପକେଇବାକୁ ଚେଷ୍ଟା କଲେ । ସେତେବେଳେ ବି ଦୁ' ଆଙ୍ଗୁଳ କମ୍ ହେଲା । ଏମିତି ଭାବରେ ମାତା ଯେତେ ଯେତେ ଡୋର ଯୋଡ଼ି ଦେଇ ଗଲେ, ସବୁବେଳେ ସେଇ ଦୁ'ଆଙ୍ଗୁଳ କ୍ଷେଟ ପଡ଼ୁଥାଏ ।"

ଶୌନକ ପଚାରିଲେ—"ହେ ସୂତ ! ଡୋର ଦୁଇ ଆଙ୍ଗୁଳ ହିଁ କ୍ଷେଟ ପଡ଼ୁଥିଲା କେମିତି ?"

ହସି ହସି ସୂତ କହିଲେ—"ମହାଭାଗ ! ଜୀବ ଓ ପରମ ମଧ୍ୟରେ ବ୍ୟବଧାନ ତ କେବଳ ମାତ୍ର ଦୁ'ଆଙ୍ଗୁଳ । ଗୋଟାଏ ଆଙ୍ଗୁଳ ତ ଜୀବଠାରେ କମ୍ ଯେ ସେ ତା'ର ଅହଂକାର ଛାଡ଼ି ନାହିଁ । ଆଉ ଗୋଟାଏ ଈଶ୍ୱରଙ୍କଠାରେ କମ୍ ଯେ ସେ କୃପା କରନ୍ତି ନାହିଁ । ଜୀବ ତା'ର କର୍ତ୍ତୃତ୍ୱର ଗର୍ବଟିକୁ ଛାଡ଼ିଦେଲେ ଆଉ ଈଶ୍ୱର କୃପା କଲେ ଏ ବ୍ୟବଧାନ ଆଦୌ ରହିବ ନାହିଁ ।"

ଶୌନକ କହିଲେ—"ହେ ସୂତ ! ଭଗବାନଙ୍କଠାରେ ତ କମ୍ ନଥିବା କଥା ନୁହଁ । କାରଣ ତାଙ୍କର କୃପା ଦୃଷ୍ଟି ସବୁରି ଉପରେ ସମାନ ଭାବରେ ପଡ଼ିଥାଏ । ମାତ୍ର ସେଇ କୃପା ଗ୍ରହଣ କରିବାର ପାତ୍ରତା ଜୀବର ନାହିଁ ତା'ହେଲେ ଈଶ୍ୱର ବି କ'ଣ କରି ପାରିବେ ? ସ୍ୱାତୀ ନକ୍ଷତ୍ର ସବୁଠି ହୁଏ । ଶାମୁକାର ପାତ୍ରତା ଥିଲେ ସେଥିରେ ପଡ଼ି ସେଇ ବିନ୍ଦୁ ମୁକ୍ତା ପାଲଟି ଯିବ । ହାତୀ ମୁଣ୍ଡରେ ପଡ଼ିଲେ ଗଜମୁକ୍ତା ହେବ । କଦଳୀରେ ପଡ଼ିଲେ କର୍ପୂର ହେବ, ବାଉଁଶରେ ପଡ଼ିଲେ ବଂଶଲୋଚନ ଏବଂ ଗୋରୁ ଉପରେ ପଡ଼ି ଗୋରଚନା ହେବ । ସେଇ ଫୋଟଟି ଗାଡ଼ିଆ କାଦୁଅ ପଙ୍କରେ ପଡ଼ି ବୃଥାଯାଏ । କାରଣ ଗ୍ରହଣ କରିବାର କ୍ଷମତା ଏମାନଙ୍କର ନାହିଁ । ତେଣୁ ଯାହା କିଛି କମ୍ ହୁଏ ସେ ଜୀବ ଭିତରେ, ଈଶ୍ୱରଙ୍କର କୌଣସି କଥାରେ କିଛି କମ୍ ନାହିଁ ।"

ସୂତ କହିଲେ—"ହଁ ମହାରାଜ ! ଆପଣଙ୍କର କଥା ସତ । ଭଗବାନଙ୍କର କୃପା ଦୃଷ୍ଟି ପ୍ରାଣୀମାନଙ୍କ ଉପରେ ସମାନ ଭାବରେ ପଡ଼ିଥାଏ । ମାତ୍ର ତାକୁ ଗ୍ରହଣ କରିବାର ପାତ୍ରତା ତ ତାଙ୍କର କୃପା ବିନା ମିଳେନାହିଁ । ଏହା ନିଜର ପୁରୁଷାର୍ଥ ବଳରେ କେହି ପାଏନାହିଁ । ପୁରୁଷାର୍ଥ କର୍ମ ନିବୃତ୍ତି ହୋଇ ମଣିଷ ରହିପାରିବ ନାହିଁ । ପୁରୁଷାର୍ଥ ପାଇଁ ହିଁ ତା'ର ଉତ୍ପତ୍ତି । ପୁରୁଷର ଯେଉଁ ଅର୍ଥର ପ୍ରଯ୍ନେ କର ଦଳ ତାହା ପୁରୁଷାର୍ଥ ବୋଲାଏ । ପୁରୁଷାର୍ଥ କରି ଜୀବ ଯେଉଁଠି ଅଟକିଯାଏ, ସବୁ ଦିଗରୁ ନିଜକୁ ଅସମର୍ଥ ମନେକରେ, ସେତେବେଳେ ଶ୍ରୀକୃଷ୍ଣ ସ୍ୱୟଂ କୃପା କରିଥାନ୍ତି ଓ ବାନ୍ଧି ହୋଇଯାଆନ୍ତି । ତେଣୁ ଜୀବର ଧର୍ମ ହେଲା ନିଜ ପକ୍ଷରୁ କିଛି ତ୍ରୁଟି ନ ରଖୁ । ନିରନ୍ତର ପୁରୁଷାର୍ଥ କରୁଥାଉ । ପୁରୁଷାର୍ଥ କରି କରି ସେ ଯେତେବେଳେ ଅଟକିଯିବ, ଧୂଳ କନାରୁ ପାଇବ ନାହିଁ ସେତେବେଳେ

ଭଗବାନ ନିଜେ ଆଙ୍ଗୁଳେ ବଢ଼ିଆସି କୃପା କରିଥାନ୍ତି ଏବଂ ତାଙ୍କର ପ୍ରେମର ବନ୍ଧନକୁ ସ୍ୱୀକାର କରି ସେଥିରେ ବାନ୍ଧି ହୋଇ ଯାଆନ୍ତି । ମାଆଙ୍କ ମନରେ ଗର୍ବ ଥିଲା । ମୋ' ପାଖରେ ଏତେ ଡୋରି ଅଛି ମୁଁ କ'ଣ କୃଷ୍ଣଙ୍କୁ ବାନ୍ଧିଦେଇ ପାରିବି ନାହିଁ । ଯେତେବେଳେ ସବୁତକ ଡୋରି ସରିଗଲା, ସେ ତାଙ୍କର ଅସଫଳତା ପାଇଁ ଦୁଃଖ ନ କରି ହସି ଦେଲେ । ଆଶ୍ଚର୍ଯ୍ୟ ହୋଇ କୃଷ୍ଣଙ୍କୁ ଚାହିଁଲେ ।''

ମାଆ ନିଜର ସବୁ ବଳ ଖଟେଇ ସାରିଥିଲେ । ସେ ନିଜ କାମରେ ଜାଣିଶୁଣି ବି ହେଳା କରି ନ ଥିଲେ । ଘରର ସବୁ ଦଉଡ଼ି ତ ସରି ଯାଇଥିଲା । ପାଖ ପଡ଼ିଶାର ଗୋପୀମାନେ ବି କୁତୂହଳରେ ନିଜ ନିଜ ଘରୁ ଯାହାର ଯାହାଥିଲା ନେଇ ଆସିଥିଲେ । ସେମାନେ କୃଷ୍ଣଙ୍କୁ ବନ୍ଧା ହୋଇଥିବା ଦେଖିବାକୁ ଚାହୁଁଥିଲେ । କୃଷ୍ଣ ଆମକୁ ସବୁଦିନ ଛକୁଛନ୍ତି ଏବେ ହେଲେ ତ ଶେଷର ଫଳ ପାଇବା କଥା । ସେ ଠକଦେଇ ଗୋପୀଙ୍କୁ ବାନ୍ଧି ହସନ୍ତି ଆଉ ବର୍ତ୍ତମାନ ମାଆ ଦଉଡ଼ି ନ ପାଇ ବାନ୍ଧି ପାରିବେ ନାହିଁ ! ଆମେ ମାଆଙ୍କୁ ସାହାଯ୍ୟ କରିବା କଥା । ତାଙ୍କୁ ଆଣି ମନଇଚ୍ଛା ଦଉଡ଼ି ଦେବା । ହେଲେ ସେମାନଙ୍କ ସାହାଯ୍ୟ କୋଉ କାମକୁ ଆସିଲା ନାହିଁ । କୌଣସିମତେ ସେ ବାନ୍ଧି ହେଲେ ନାହିଁ । ଯେତେବେଳେ ଦେଖ ସେଇ ଦୁଇ ଆଙ୍ଗୁଳି କମ୍ । ଡୋରି ଯୋଡ଼ି ଯୋଡ଼ି ତେଣେ ମାଆ ବି ଥକିଗଲେ । ସାରାଦେହ ଝାଳେଇ ଗଲା । ତାଙ୍କ ବେଣୀର ଗୁନ୍ଥାମାଳ ଏଣେତେଣେ ଛିଟି ପଡ଼ିଲା । ମୁଖମଣ୍ଡଳରେ ଚିନ୍ତା ଓ ବିଷଣ୍ଣଭାବ ଖେଳିଗଲା । ମାତାଙ୍କର ଏଭଳି ଦୃଶ୍ୟ ଦେଖି ଶ୍ରୀକୃଷ୍ଣଙ୍କ ଚିତ୍ତରେ କୃପାଭାବ ଖେଳିଗଲା । କୃପା ଉଦୟ ହେବାମାତ୍ରକେ ଐଶ୍ୱର୍ଯ୍ୟ ଶକ୍ତି ତିରିଗଲା । ଭାବିଲା—ଯେଉଁଠି କୃପା ଅଛି ସେଠାରେ ମୋ' ଦେଇ କ'ଣ ହେବ ? ଦୟାରେ ତ କର୍ତ୍ତବ୍ୟ ପାଳନ ବି କରାଯାଇ ପାରିବ, ମାତ୍ର କୃପା ହେଲେ ସବୁ କିଛି ଭୁଲେଇ ଦିଆଯାଇପାରେ ।

ଏହାଶୁଣି ଶୌନକ ପଚାରିଲେ—''ହେ ସୂତ ! ଆମେ ତ ଦୟା ଆଉ କୃପାକୁ ଏକା କଥା ବୋଲି ମନେକରୁଁ । ଆପଣ କିନ୍ତୁ ଅଲଗା ବୋଲି କହିଲେଣି ।''

ସୂତ କହିଲେ—''ମହାଭାଗ ! ଦୟା ଓ କୃପା ବାସ୍ତବିକ ଏକା କଥା । କିନ୍ତୁ କେତେବେଳେ ଏମାନଙ୍କୁ ଗୋଟାଏ ପର୍ଯ୍ୟାୟବାଚୀ ବୋଲି ବୁଝାଯାଇଛି । ମାତ୍ର କୃପା ଆଉ ଦୟାରେ କିଛିଟା ପ୍ରଭେଦ ରହିଛି । ଦୟା ତ ସବୁରି ଉପରେ ସମାନ ଭାବରେ ହୋଇଥାଏ । ଅନ୍ୟର ଦୁଃଖ ଦେଖି ତାକୁ ଦୂର କରିବା ପାଇଁ ଯେଉଁ ଚିନ୍ତା ମନରେ ଉଦୟ ହୁଏ ତାକୁ ଦୟା ବୋଲି ବୁଝାଯାଏ; କିନ୍ତୁ ସେହି ଦୟା ଯେତେବେଳେ ନିଜର ସମ୍ବନ୍ଧୀୟଙ୍କ ପାଇଁ କରାଯାଏ, ସେତେବେଳେ ତାହା କୃପା ବୋଲାଏ । ଦୟାରେ ସମ୍ବନ୍ଧର ଆବଶ୍ୟକତା ନାହିଁ ମାତ୍ର କୃପାରେ ସମ୍ବନ୍ଧ ଆବଶ୍ୟକ । ଜଣେ ଆମର ସେବା କରୁଛି ।

ତା' ସହିତ ଆମର ସ୍ୱାମୀ ସେବକର ସମ୍ପର୍କ ହେଲା । ସେଇ ସେବାପରାୟଣ ଲୋକଟିର ସେ ପୁଅ ଦୁଃଖ ଦେଖି ଦୂର କରିବାର ଯେଉଁ ଭାବନା ମନରେ ଜାଗରିତ ହେବ ତାକୁ କୃପା ବୋଲି କୁହାଯିବ, କାରଣ ଜଣେ ଜଣକ ସହିତ ସଖାଭାବ ରହିଛି, ପୁଅ ସ୍ୱାମୀ ଅଥବା ସ୍ତ୍ରୀ, ସେଭଳି କୌଣସି ଲୋକର ଦୁଃଖ ଦେଖି ତରଳି ଯିବା ହେଉଛି କୃପା । ଯୁଦ୍ଧରେ ନିଜର ଆତ୍ମୀୟ ପରିଜନଙ୍କୁ ଦେଖି ମୋହବଶତଃ ସେହି କୃପାଭାବ ଅର୍ଜୁନଙ୍କ ମନରେ ଜାଗ୍ରତ ହୋଇଥିଲା । କୃପା ହେତୁ ବନ୍ଧନ ହୁଏ । ଭଗବାନ ତ ପ୍ରାଣୀମାନଙ୍କୁ ଦୟା କରିଥାନ୍ତି; ମାତ୍ର କୃପା ତାହା ଉପରେ କରିଥାନ୍ତି ଯେ ତାଙ୍କ ସହିତ ସଖ୍ୟ, ବାତ୍ସଲ୍ୟ, ଦାସ୍ୟ ଅଥବା ମଧୁର ସମ୍ପର୍କ ସ୍ଥାପିତ କରନ୍ତି, ସେମାନଙ୍କୁ ଯେତେବେଳେ ସେ କ୍ଲାନ୍ତ ଅବସନ୍ନ ଦେଖନ୍ତି ସେତେବେଳେ ସେ 'କୃପୟାସୀତ୍ ସ୍ୱବନ୍ଧନେ' ନିଜେ ନିଜେ ବନ୍ଧନରେ ବାନ୍ଧି ହୋଇଯାଆନ୍ତି ।"

ଶ୍ରୀକୃଷ୍ଣ ଭାବିଲେ—"ମାଆ ବିଶେଷ କ୍ଲାନ୍ତ ହୋଇ ପଡ଼ିଲଣି", ସେ କଣି ଆଉ ଐଶ୍ୱର୍ଯ୍ୟ ଶକ୍ତିକୁ ଦେଖିଲେ । ତାଙ୍କର ସେ କୁଟିଳ ଭ୍ରୂକୁଟି ଦେଖି ଐଶ୍ୱର୍ଯ୍ୟ ଶକ୍ତି ଡରି ପଳେଇଲା । ଅନନ୍ତ ଶରୀର ପୁଣି ସୀମିତ ହୋଇଗଲା । ସେତେବେଳେ ମାତା ତାଙ୍କୁ ଗୋଟାଏ ମାତ୍ର ଡୋରରେ ବାନ୍ଧି ପକେଇଲେ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ରୀକୃଷ୍ଣଙ୍କୁ ଭଳି କିଏ ବାନ୍ଧି ଦେଇ ପାରିବ ? ବାନ୍ଧିବାରେ ସେହି ସମର୍ଥ ହେବ ଯେ ବନ୍ଧାହେବା ଲୋକଠାରୁ ରୂପ, ଆକର୍ଷଣ, ଗୁଣ, ଐଶ୍ୱର୍ଯ୍ୟ, ସରଳତାରେ ଅଧିକ ହେବ । ଶ୍ରୀକୃଷ୍ଣଙ୍କଠାରୁ ବଳି ସୁନ୍ଦର ଆଉ କିଏ ହୋଇପାରେ । ତାଙ୍କ ଭଳି ଆକର୍ଷଣ ପୃଥିବୀର ଆଉ କେଉଁ ବସ୍ତୁରେ ଥିବା ସମ୍ଭବ ? ସେ ତ ସମସ୍ତ ସଦ୍‌ଗୁଣରେ ଖଣି । ସବୁ ସଦଗୁଣ ତାଙ୍କଠାରୁ ଜନ୍ମିଛି । ସେ ଗୁଣମାନଙ୍କର ନିୟାମକ । ତାଙ୍କଠାରୁ ବଳି ଐଶ୍ୱର୍ଯ୍ୟ କାହାର ଆଇପାରେ ? ତାଙ୍କର କୌଣସି ବସ୍ତୁର ଅଭାବ ନାହିଁ । କେହି ତାଙ୍କଠାରୁ ବଡ଼ ଲୁହେଁ ଯେ ତାଙ୍କୁ ଦେଖି ସେ ଲୋଭ କରିବେ ଓ ବାନ୍ଧି ହୋଇଯିବେ । ଗୋଟାଏ ମାତ୍ର ଜିନିଷ ଅଛି, ତାହା ପ୍ରେମ । ସେ ପ୍ରେମର ଅଧୀନ ହୋଇ ଭକ୍ତମାନଙ୍କର ବଶୀଭୂତ ହୋଇଥାନ୍ତି । ସେହି ଭଳି ସେ ମାତାଙ୍କ ଦ୍ୱାରା ନିଜେ ବାନ୍ଧି ହୋଇ, ସେହି-ସର୍ବେଶ୍ୱର, ସମସ୍ତଙ୍କୁ ବନ୍ଧନରୁ ମୁକ୍ତ କରୁଥିବା ଭଗବାନ ଏହା ଦେଖାଇ ଦେଲେ ଯେ 'ମୁଁ ଭକ୍ତର ଅଧୀନ' । ଭକ୍ତ ମୋତେ ଯେପରି ନଚାଇବ ମୁଁ ସେପରି ନାଚିବି । ସେମାନେ ଯାହା କରିବେ ସେପରି କରିବି । ସେ ବାନ୍ଧିଲେ ବାନ୍ଧି ହୋଇଯିବି । ତେଣୁ ସେ ମାଆ ଉପରେ କୃପାକରି ନିଜେ ବାନ୍ଧି ହୋଇଗଲେ ।"

## ଛପ୍‌ପୟ

ଚକିତ ଚକିତ ହେବୁ ମାତୁ ଖଲ କେ। ଉଦର ନିହାରେ ।
ଦୁଇ ଦୂଇ ପଲକରେ ପେଟ ଭୟୋ କା ସମୟ ବଢ଼ରେଁ ॥

ଉଠିଯାଏ ସ୍ୱେଦ ସବୁ ଅଙ୍ଗ ଅଟକ ଖୋଲି ଯାଏ ସବୁ ।
ମାଳ ଖସିଗଲା ଗଳେର ଫୁଲ ହୋଇ ଫୁଲି ଉଠେ ତବ ॥
କୃଷ୍ଣ କୃପା ଯେବେ ହୋଇ, ଭକତେ କାରଣ ସାଧିଗଲେ ।
ଶ୍ୟାମ ନେହ ବଶ ଆପୁଣି, ପ୍ରେମପାଶରେ ବନ୍ଧାଇଗଲେ ॥

●

# ଜୀବ ଉଦ୍ଧାର ଲୀଳା

କୃଷ୍ଣସ୍ତୁ ଗୃହକୃତ୍ୟେଷୁ ବ୍ୟଗ୍ରାୟାଂ ମାତରି ପ୍ରଭୁଃ ।
ଅଦ୍ରାକ୍ଷୀଦର୍ଜୁନୌ ପୂର୍ବଂ ଗୁହ୍ୟକୌ ଧନଦାତ୍ମଜୌ ॥

(ଶ୍ରୀଭା ୧୦ସ୍କ, ୯ଅ, ୨୨ ଶ୍ଲୋକ)

## ଛପ୍ପୟ

ଗୋପୀ କାହିଁ ସଦା କରେ ଗୃହ କାରଜ ମୈୟା ।
ଗ୍ୱାଲ ବାଲ ମିଳି କହେ ଖେଲ କଛୁ ହେବେ ଭୈୟା ॥
ଦାମ ଉଦର ମହଁ କସି ଉଲୁଖଲ ମହଁ ସୋ ବାଁଧି ।
ଉଲଟେ ଗାଡ଼ୀ ବନି ଖେଲ ବନ ପ୍ରଭୁକେ ସାଧି ॥
ଗ୍ୱାଲ ବାଲ ଜଗ ଜଗ କରେଁ, ହୁଁଠେ ହରି ଖୀଚନ ଲଗେ ।
ସମ୍ମୁଖ ଯମଳାର୍ଜୁନ ଲଖେ, ଧନଦପୁତ୍ର ଧନମଦ ଠଗେ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଯେତେବେଳେ ମାତା ଘର କାମରେ ବ୍ୟସ୍ତ ହୋଇ ପଡ଼ିଲେ ସେତେବେଳେ ଭଗବାନ ଶ୍ରୀକୃଷ୍ଣ ସାମନାରେ ଥିବା ଦୁଇଟି ଅର୍ଜୁନ ଗଛକୁ ଦେଖିଲେ । ଏମାନେ ପୂର୍ବ ଜନ୍ମରେ ଯକ୍ଷପତି କୁବେରଙ୍କର ପୁତ୍ର ଥିଲେ ।"

ଜଣେ ସେପରି କଣବା ଲୋକ ଅଛି । ସେ ତ ରାନ୍ଧବାଡ଼ି ସମସ୍ତଙ୍କୁ ଖୁଆଏ । ତା'ର କାମ କେବଳ ସମସ୍ତଙ୍କୁ ତୃପ୍ତି ଦେବା । ତଥାପି ତା'ର ଯାହା ସାଙ୍ଗରେ ଏକାନ୍ତିକ ମିତ୍ରତା ଅଛି ତାକୁ ସେ ସ୍ନେହରେ ଖୁଆଏ । କାରଣ ସେଇ ଏକା, ସେଥିରେ କିଛି ପ୍ରଭେଦ ନ ଥାଏ ।

ପରସିବା ଲୋକ ବି ସେଇ ଜଣେ । ତେବେ ଏ କ୍ଷେତ୍ରରେ ସେ କର୍ତ୍ତବ୍ୟ ପାଳନ ସାଙ୍ଗକୁ ସ୍ନେହ ଟିକିଏ ବି ମିଶେଇ ଦିଏ । ପ୍ରେମ ତ ବସ୍ତୁରେ ନ ଥାଏ, ତାହା ଏକ ଭିନ୍ନ ଜିନିଷ, ତାକୁ ଯେ କୌଣସି ଜିନିଷ ସାଙ୍ଗରେ ମିଶେଇ ଦିଆଯାଇ ପାରେ । ଯେଉଁଥିରେ ମିଶିବ ତାକୁ ବଳେ ସୁମଧୁର କରିଦେବ । ମୁକ୍ତିଦାତା ଶ୍ରୀହରି ସମସ୍ତଙ୍କୁ ମୁକ୍ତି ପ୍ରଦାନ କରନ୍ତି । ତାଙ୍କର କାମ ମୁକ୍ତିଦେବା । ସେ ଯୋଗୀ, ଯତି, ସନ୍ନ୍ୟାସୀ, ତ୍ୟାଗୀ, ଜ୍ଞାନୀ, ଧ୍ୟାନୀ ଏବଂ ସମସ୍ତ ସାଧକଙ୍କୁ ମୁକ୍ତି ପ୍ରଦାନ କରନ୍ତି । ମାତ୍ର ଭକ୍ତଙ୍କୁ ଯେଉଁ ସୁଖରେ ତାହା ମିଳିଥାଏ, ତାହା ଶୁଷ୍କ ତତ୍ତ୍ୱଜ୍ଞାନୀ କଦାପି ଅନୁଭବ କରିପାରିବେ ନାହିଁ । ପତିବ୍ରତା ପତ୍ନୀ ଘରେ ପ୍ରତ୍ୟେକଙ୍କର ସେବା କରେ, ସମସ୍ତଙ୍କ ପାଇଁ ରୋଷେଇ କରେ । ଲିପାପୋଛି କରେ, ସବୁରି ସାଙ୍ଗରେ ହସି ହସି କଥା କହେ । ସେ ବାହ୍ୟତଃ ପତି ସହିତ ସେଭଳି କୌଣସି ବିଶେଷ ବ୍ୟବହାର ରଖେ ନାହିଁ; କିନ୍ତୁ ପତି ସହିତ ତା'ର ଐକାନ୍ତିକ ସମ୍ବନ୍ଧ, ତାହା କେବଳ ପତିକୁ ହିଁ ପ୍ରାପ୍ତ ହୋଇଥାଏ । ଯେ ଶ୍ରୀକୃଷ୍ଣଙ୍କ ସହିତ ସମ୍ବନ୍ଧ କରି ଭକ୍ତି କରନ୍ତି ଏବଂ ସେଥିରୁ ଯେଉଁ ସୁଖ ମିଳେ ସେ ସୁଖ ବ୍ରହ୍ମାଦି ଦେବତା, ଯୋଗୀ ଏବଂ ଆତ୍ମ ସ୍ୱରୂପ ତତ୍ତ୍ୱଜ୍ଞାନୀମାନଙ୍କୁ ଦୁର୍ଲଭ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ୟାମ ସୁନ୍ଦର କୃପାକରି ବଶୀଭୂତ ହୋଇ ସ୍ୱୟଂ ବାନ୍ଧି ହୋଇଗଲେ । ମାତା ତାଙ୍କର ସୁନ୍ଦର ପିପ୍ପଳପତ୍ର ଭଳି ଉଦର ତଳେ କଟିଦେଶରେ ଠିକ୍ ମେଖଳା ଉପରକୁ ଡୋରି ବାନ୍ଧି ଦେଇଥିଲେ । ମନେ ହେଉଥିଲା ମାତା ଯେଉଁପରି କଳାକୃଷ୍ଣଙ୍କୁ କୃଷ୍ଣ ବର୍ଣ୍ଣର ଅଣ୍ଟା ସୂତାଟିଏ ପିନ୍ଧେଇ ଦେଇଛନ୍ତି । ଯେଉଁକାଠର ଉଦୂଖଳ ଉପରେ କୃଷ୍ଣ ବସିଥିଲେ ତା'ର ତଳ ଉପର ଗୋଲ ଆଉ ମଝିରେ ଡମ୍ବରୁ ଭଳି ହୋଇଥିଲା । ସେଥିରେ ମାତା ଅନ୍ୟ ଡୋରି ନେଇ ବାନ୍ଧି ଦେଇଥିଲେ ଯେମିତି କୃଷ୍ଣ ଖୁଆଡ଼େ ପଳେଇ ଯାଇପାରିବ ନାହିଁ । ଏପରି ଭାବରେ ମାଆ ପୁଅକୁ ବାନ୍ଧି ରଖିଥିଲେ । ଗୋପୀମାନେ ନାନା ଇଙ୍ଗିତରେ କୃଷ୍ଣଙ୍କୁ ଚିଡ଼େଇବାର ଚେଷ୍ଟା କରୁଥିଲେ । କିଏ କେମିତି ମୁହଁ ବଙ୍କେଇ, ଆଖି ନଚେଇ ପଚାରୁଥିଲେ—'କେମିତି ? ଏଯାଏଁ ଆମକୁ ଭୁଆଁ ବୁଲେଇ ଆସୁଥିଲୁ ନା ! କ'ଣ ହେଲା ଆଜି ? କେମିତି ମଜା ? କହନା, କିଏ ଆସି ଛଡ଼େଇବ ?"

ମାଆଙ୍କର ବୟସ ହୋଇ ଯାଇଥିଲେ ହେଁ ସେ ଏଇ ଯୁବତୀ ଗୋପୀମାନଙ୍କର ଇଙ୍ଗିତ କଥା ବେଶ୍ ବୁଝିପାରୁଥିଲେ । ସେ ଭାବିଲେ—ଏ ଯୁବା ଛଇଳୀଗୁଡ଼ା ଯେତେବେଳେ ଯାଏଁ ଥିବେ ସେତେବେଳ ଯାଏଁ ପୁଅକୁ ଚିଡ଼େଇ ଚାଲିଥିବେ ।..."ଆଲୋ, ତମେ ସବୁ ଗଲ ଯେଝା ଘରକୁ । ଘର କାମ ପୁଣି ଦେଖିବ ବୁଝିବ ତ ?' ଗୋପୀମାନେ ଯିବାକୁ ଚାହୁଁ ନ ଥିଲେ । ହେଲେ ନିଜେ ମାଲିକାଣୀ କହୁଛନ୍ତି ଯେତେବେଳେ ଜଣେ ଜଣେ ଗଲେ, କେତେଜଣ ବାହାନା ଦେଖେଇଲେ । ଏ ସବୁ ଦେଖି ନିଜେ ମାଆ କାମ ବାହାନାରେ ଉଠିଗଲେ । ଗୋପୀମାନେ ବି ବୁଝିଗଲେ, ଏଇଠି ଆଉ ବସିବା ବୁଦ୍ଧିକୁ ସୁହାଉ ନାହିଁ ।

ସେମାନେ ବି ସେଇଆ ଭାବି ଗୋଟି ଗୋଟି ହୋଇ ଧୀରେ ଧୀରେ ଘରକୁ ଗଲେ । ଶ୍ରୀକୃଷ୍ଣଙ୍କର ଅନେକ ସାଙ୍ଗ ଆସି ସେତେବେଳକୁ ସେଇଠି ଜୁଣ୍ଡ ହୋଇ ସାରିଥିଲେ । ମାଆ ବି ସେଇଆ ଚାହୁଁଥିଲେ । ପିଲାଏ କୃଷ୍ଣ ପାଖରେ ରହିଲେ ତା' ମନ ବି ଭୁଲିଯିବ । ତେଣୁ ସେ ପିଲାଙ୍କ ହାତକୁ ବଡ଼ ବଡ଼ ଲଡ଼ୁ ଗୋଟିଏ ଗୋଟିଏ ବଢ଼େଇ ଦେଇ କହିଲେ—"ତୁମେ ସବୁ ଖେଳୁଥା ଏଇଠି ।"

ଭାରି ଖୁସୀ ହେଲେ ପିଲାଏ । ତେଣେ ମାଆ କାମ ସିନା କରୁଥିଲେ ହେଲେ ନଜର ଥାଏ ସେଇ କୃଷ୍ଣ ଉପରେ । ସେ ବାରମ୍ବାର ଭାବୁଥାଆନ୍ତି—"ବେଶ୍ ହେଲା, ଏଥର ଯାଇ ଖୋଲିଦେବି । ହେଲେ ପୁଣି ଭାବନ୍ତି—'ଆଉ ଘଡ଼ିଏ ଯାଉ । ବନ୍ଧାରେ କଷ୍ଟ ତ କିଛି ହେଉନି । ପିଲାଙ୍କ ସାଙ୍ଗରେ ତ ଖୁସିରେ ହସୁଛି ପୁଣି ସେ କାମରେ ଲାଗନ୍ତି ।"

ପିଲାଏ ପଚାରିଲେ—"କାହ୍ନା, ଲଡ଼ୁ ଖାଇବୁ ଲଡ଼ୁ !"

ଶ୍ୟାମ କହିଲେ—"ଦବ ଯଦି ଖାଇନେବି ।"

କିଏ ଜଣେ କହିଲା—"ଆମେ କଲେ କଲେ କାମୁଡ଼ି ଖାଇଛୁ ଯେ !"

ଶ୍ୟାମ ଉତ୍ତର ଦେଲେ—"ଯେ କ'ଣ ହେଲା ! ମୁଁ ଚଲପତ୍ରୁ ଖାଇ ନେବି ।"

ଏଇଆ ଶୁଣି ସଭିଏଁ ନିଜ ନିଜ ଲଡ଼ୁରୁ ତାଙ୍କୁ ଦେଲେ । ଶ୍ୟାମ ଏମିତି ଖାଇବାକୁ ଲାଗିଲେ ଯେମିତି କେତେ ଦିନର ଭୋକିଲା । ଯେ ଯଜ୍ଞରେ କେତେ ବିଧି ବିଧାନରେ ତିଆରି ଚରୁ, ବେଦମନ୍ତ୍ର ପାଠକରି ବାରମ୍ବାର ସ୍ତୁତି କଲେ ମଧ୍ୟ ଗ୍ରହଣ କରନ୍ତି ନାହିଁ ସେଇ ମଙ୍ଗଳମୟ ଗଉଡ଼ ପିଲାଙ୍କ ଅଇଁଠା କେଡ଼େ ଖୁସିରେ ଖାଇ ଚାଲିଛନ୍ତି ।

ଖିଆପିଆ ସରିଲାରୁ ସାଙ୍ଗମାନେ କହିଲେ—"କାହ୍ନା ! କିଛି ଗୋଟାଏ ଖେଳ ହେଉ ।"

ଶ୍ରୀକୃଷ୍ଣ କହିଲେ—"ମୁଁ ଆଉ ଖେଳିବି କ'ଣ, ମାଆ ତ ବାନ୍ଧି ଦେଇ ଯାଇଛି !"

ଗୋଟାଏ ଚାଲାକ ପିଲା କହିଲା—"ସେଇ ବନ୍ଧା ଖେଳ ହେଉ । ଖେଳରେ କ'ଣ ବନ୍ଧନ ନାହିଁ ! ଆମେ ଏ ଉଦୁଖଳକୁ ଓଲଟେଇ ଦଉଛୁ । ଇଏ ତ ଆପେ ଗାଡ଼ି ଭଳି ହୋଇଛି । ଆଉ ତୁ ବି ତ ବଳଦ ପରି ଯୋଚି ହୋଇଛୁ । ତୁ ଟାଣିବୁ ଆଉ ଆମେ ଅଟେଇବୁ । ସେଇ ହବ ଗାଡ଼ି ଖେଳ ।"

ଭଗବାନ କହିଲେ—"ବଢ଼ିଆ ଖେଳ ! ବଢ଼ିଆ କଥା କହିଲୁ ତୁ ! ମୁଁ ବେଶ୍ ଟାଣି ନେବି । କର୍ଷଣ କରେ ବୋଲି ମୋ' ନା କୃଷ୍ଣ ! ମୁଁ ଟାଣିବି, ତମେ ସବୁ ଘଉଡ଼ିବ ।"

ତେଣିକି ଆଉ କ'ଣ । ସେଇ ବନ୍ଧା ଅବସ୍ଥାରେ ଖେଳ ଆରମ୍ଭ ହୋଇଗଲା । କୃଷ୍ଣଙ୍କୁ ଲୀଳା ଛଡ଼ା ଆଉ କ'ଣ ଜଣା ! ସେ କୌତୁକୀ ! ଖେଳ ଆରମ୍ଭ ହୋଇଗଲା ।

ଗଉଡ଼ ପିଲାଏ ତାକ୍ ତାକ୍ ଟ ଟ କରି ବୃଷଭ ହୋଇଥିବା ବାଳକୃଷ୍ଣଙ୍କୁ ଘଉଡ଼ିବାକୁ ଲାଗିଲେ—"ଆରେ କାହ୍ନା ! ଟାଣ ଗାଡ଼ି । ଦେଖିବା, ତୁ ମାଆର କେମିତି ଦୁଧ ଖାଇଛୁ ? ଏଇଥା ଶୁଣି କୃଷ୍ଣ ସବୁ ବଳ ଖଟେଇଲେ । ଗାଡ଼ି ଆଗକୁ ବଢ଼ିଲା ନାହିଁ ସଭିଏଁ ପାଟି କଲେ—ଅଳସୁଆ ବଳଦ, ଅଳସୁଆ !"

ଶୌନକ କହିଲେ—"ହେ ସୂତ ! ଯେ ଏହି ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡର ଭାର ସମ୍ଭାଳିଛନ୍ତି; ତାଙ୍କ ଦ୍ୱାରା ଏଇ ଉଦୁଖଳଟି ଘୁଞ୍ଚିଲା ନାହିଁ ! ସେ'ର କି କାରଣ ଥାଇ-ପାରେ ? ଭଗବାନ ଉଦୁଖଳଟିକୁ ଟାଣିପାରିଲେ ନାହିଁ କେମିତି ?"

ହସି ହସି ସୂତ କହିଲେ—"ମହାଭାଗ ! ଖେଳରେ କାହିଁକି ପ୍ରଶ୍ନ ଟି କ'ଣ ପଚାରୁଛ ! ଯେଉଁମାନେ ଖେଳକୁ ଖେଳ ମନେ କରନ୍ତି ନାହିଁ, ସତ ବୋଲି ମଣନ୍ତି, ସେମାନେ ଧନ୍ଦି ହୁଅନ୍ତି । ସବୁ ଶ୍ରୀକୃଷ୍ଣଙ୍କର କ୍ରୀଡ଼ା । ସବୁ ସେଇ ଖେଳୁଆଡ଼ର ଖେଳ । ସବୁ ସେଇ ବୃନ୍ଦାବନ ବିହାରୀର ବିହାର, ସେଇ ପରମ କୌତୁକୀର କୌତୁକ । ସେ ସବୁ ଦେଖିଯିବା, ଶୁଣିଯିବାରେ ସବୁଠାରୁ ବେଶୀ ଆନନ୍ଦ ମିଳିବ ।"

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଯେତେବେଳେ ଆମେ ଶ୍ରୀକୃଷ୍ଣଙ୍କର ସ୍ୱରୂପକୁ ଭୁଲିଯାଉଁ ସେତେବେଳେ ଆମେ କାହିଁକି ବୋଲି ପଚାରୁ । ସେ ରହିଗଲେ ତା'ହେଲେ ସେ ଗାଡ଼ି ପୁଣି ଚାଲିଲା ନା ନାହିଁ !"

ସୂତ କହିଲେ—"ଚାଲିବ ନାହିଁ କେମିତି । ଚଳେଇବାକୁ ହିଁ ଶ୍ରୀକୃଷ୍ଣ ରହି ଯାଇଥିଲେ । ରସବୃଦ୍ଧି ନିମନ୍ତେ ସେ ବଳହୀନ ହୋଇଥିଲେ । ଗଉଡ଼ ଟୋକାଙ୍କ ପରିହାସ ଶୁଣି ସେ ପୂରାବଳ ଖଟେଇଲେ । ହାତ ତଳେ ଥାପି ସେ ବୃଷଭ ଭଳି ହୋଇଥିଲେ । ଗୋଟାଏ ଟାଣରେ ଚାଲିଲା ଗାଡ଼ି । ଉଦୁଖଳ ଗଡ଼ିଗଲା, ପିଲାଏ ତାଳିମାରି ନାଚ ନାଚ ପାଟି କରିବାକୁ ଲାଗିଲେ—ଟାଣୁଆ ବଳଦ···ଭାରି ଟାଣ !"

ଶ୍ରୀକୃଷ୍ଣ କିଛି ଦୂର ଆଗେଇ ଗଲେ । ସେତେବେଳେ ସେ ସାମନାରେ ଥିବା ଯାଆଁଳା ଅର୍ଜୁନ ଗଛକୁ ଦେଖିଲେ । ସେମାନେ ଉତ୍ତର ଦିଗର ଲୋକପାଳ ଯକ୍ଷପତି କୁବେରଙ୍କ ପୁଅ । ନାରଦଙ୍କର ଅଭିଶାପ ହେତୁ ବୃକ୍ଷ ହୋଇଥିଲେ । ସେମାନଙ୍କ ଉପରେ ଭଗବାନଙ୍କ ଦୃଷ୍ଟି ପଡ଼ିଲା ।

ଶୌନକ କହିଲେ—"ହେ ସୂତ ! ଏ ଗଛ ଦୁଇଟି ଭଗବାନଙ୍କ ଦୁଆରେ ହିଁ ଥିଲେ ନା ? ତା' ତଳ ଦେଇ କେତେଥର ସେ ଯାଇଥିବେ । ସେତେବେଳ ଯାଏଁ ତାଙ୍କ ଉପରେ ଭଗବାନଙ୍କ ଦୃଷ୍ଟି କ'ଣ ପଡ଼ି ନ ଥିଲା ?"

ସୂତ କହିଲେ—"ହଁ, ଦେଖିବେ ନାହିଁ କେମିତି ? ସେ ତାଙ୍କୁ ନିତ୍ୟ ଦେଖୁ-ଥିଲେ । ଆଜି କିନ୍ତୁ କୃପା ଦୃଷ୍ଟିରେ ଦେଖିଲେ । ଆଜି ସେମାନଙ୍କୁ ବୃକ୍ଷ ଯୋନିରୁ ଉଦ୍ଧାର

କରିବେ ବୋଲି ଦେଖିଲେ । ସେ ସେମାନଙ୍କୁ ଶାପବନ୍ଧନରୁ ମୁକ୍ତ କରିବେ ବୋଲି ଇଚ୍ଛାକଲେ ।

ଶୌନକ କହିଲେ—"ହେ ସୂତ ! ଆଜି ହିଁ କାହିଁକି ସେ ସେମିତି ଭାବିଲେ । ଏତେ ଦିନ କାହିଁକି ସେ ସେମାନଙ୍କ କଥା ମନେ ପକେଇଲେ ?"

ହସି ହସି ସୂତ କହିଲେ—"ମହାଶୟ ! ସେ ନଟବର କଥା କିଏ ଜାଣିବ । କେତେବେଳେ ତାଙ୍କର କୃପାଦୃଷ୍ଟି କାହା ଉପରେ ପଡ଼ିବ । ସମସ୍ତଙ୍କର ସମୟ ବନ୍ଧା ହୋଇ ରହିଥିବ ବୋଧହୁଏ । ସମୟ ଆସିଲେ ଯାଇ ସେ କୃପାବର୍ଷଣ କରୁଥିବେ ହୁଏତ ବା ଆଉ କିଛି କଥା ଥିବ । ମୁଁ ଭାବୁଛି ଆପଣା ବନ୍ଧନ ଦେଖି ଭଗବାନଙ୍କୁ ସେଇ କୁବେର ପୁଅଙ୍କ ଶାପବନ୍ଧନ କଥା ମନେ ପଡ଼ି ଯାଇଥିବ । ଦୁଃଖୀ ବିନା ପର ଦୁଃଖ କ'ଣ ବୁଝିବ ? ସେଇଭଳି ନିଜେ ବନ୍ଧାପଡ଼ି ସେଇ ଅଭିଶାପରେ ବନ୍ଧା କୁବେର ପୁତ୍ରମାନଙ୍କ କଥା ସେ ସ୍ମରଣ କଲେ । ଭାବିଲେ—ଏମାନେ ତ ହେଉଁ ମୋ'ର ଦୁଆରେ ବନ୍ଧା ହୋଇ ରହିଛନ୍ତି । ଯଦି ମୁଁ ଏମାନଙ୍କ ବନ୍ଧନ ଖୋଲିବି ନାହିଁ ତା'ହେଲେ ମାଆକୁ ମୋ' ବନ୍ଧନ ଖୋଲିବାକୁ କହିବି କେମିତି ? ମୁଁ ଏମାନଙ୍କ ବନ୍ଧନ ଖୋଲି ଦେଲେ ମୋ' ବନ୍ଧନ ବି ଖୋଲି ହୋଇଯିବ । ସଂସାର ତ ଏଇ ବିଷୟର ବ୍ୟବହାରରେ ଚାଲୁଛି । ଏ ହାତରେ ଦେଇ ସେ ହାତରେ ନିଅ । ଏହି ବିଷୟରେ ସେମାନଙ୍କର ଉଦ୍ଧାର ବିଷୟ ସେ ଚିନ୍ତା କଲେ । ଭଗବାନ ତ କୃପାସାଗର । ସେ ମାତାଙ୍କ ପ୍ରତି କୃପାଭାବରେ ନିଜେ ବାନ୍ଧ ହେଲେ ଏବଂ ଯାମଳାର୍ଜ୍ଜୁନ ବୃକ୍ଷପ୍ରତି କୃପା ରଖି ଆଗେଇ ଗଲେ ।"

ଶୌନକ ପଚାରିଲେ—"ହେ ସୂତ ! ବନ୍ଧାପଡ଼ି ପ୍ରଭୁ ମାଆଙ୍କ ଉପରେ କୃପା କିପରି କଲେ ।"

ଏହା ଶୁଣି ସୂତଙ୍କ ଆଖିରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ତାଙ୍କର କଣ୍ଠ ଗଦ୍‌ଗଦ ହୋଇଗଲା । ଅତି କରୁଣା ପୂରିତ କଣ୍ଠରେ କହିଲେ—"ମହାଶୟ ! ପ୍ରେମର ବନ୍ଧନରେ ମଧ୍ୟ ଭଗବାନଙ୍କର ଅପାର କୃପା ପୂରି ରହିଛି । ଭଗବାନ ଲକ୍ଷ୍ମୀଙ୍କର ପତି । ପତ୍ନୀ ଉପରେ ପତି ଯେତେ ଅନୁଗ୍ରହ କରେ, ସେତିକି ଅନ୍ୟ କାହାପ୍ରତି କରେନାହିଁ । କରି ପାରିବ ନାହିଁ ମଧ୍ୟ । ଆପଣାର ସର୍ବସ୍ୱ ତାକୁ ସମର୍ପିତ କରିଦିଏ । ଆପଣା ଅଙ୍ଗରେ ତାକୁ ମିଶେଇ ନିଏ । ତେଣୁ ପତ୍ନୀ ଅର୍ଦ୍ଧାଙ୍ଗିନୀ ବୋଲାଏ । ଭଗବାନ ଲକ୍ଷ୍ମୀଙ୍କୁ ନିଜ ହୃଦୟରେ ସ୍ଥାନ ଦେଲେ । ଚରଣ ସେବାର ସର୍ବୋତ୍କୃଷ୍ଟ ସୁଯୋଗ ଦେଲେ । ତା'ଠାରୁ ବଳି କେଉଁ କୃପା ଅଧିକ ହେବ ! ତେବେ ସେ କୃପାର ମଧ୍ୟ ସୀମା ଅଛି । ପ୍ରଭୁଙ୍କର ଏତେ କୃପା ପାଇ ମଧ୍ୟ ତାଙ୍କୁ ବାନ୍ଧି ଦେବାର ସାହସ ଲକ୍ଷ୍ମୀ କରିବେ ନାହିଁ । କେବଳ ତାଙ୍କର ମୁଖାରବିନ୍ଦକୁ ଚାହିଁ ରହିଥିବେ । ମନୁଷ୍ୟ ନିଜର ପୁତ୍ର ଉପରେ ମଧ୍ୟ ଅତ୍ୟଧିକ କୃପାକରେ । ପୁତ୍ର ପିତାର

ଆତ୍ମା । ପିତାର ସମସ୍ତ ଚଳ ଅଚଳ ସମ୍ପତ୍ତିର ଅଧିକାରୀ । ଭଗବାନ ତାଙ୍କର ପୁତ୍ର ବ୍ରହ୍ମାଙ୍କ ଉପରେ ମଧ୍ୟ ସେତେ କୃପା କରି ନାହାନ୍ତି ଯେତେ ଯଶୋଦା ମାତାଙ୍କ ପ୍ରତି କରିଛନ୍ତି । ଦେଖନ୍ତୁ, ତାଙ୍କର ଅଧୀନ ହେଲେ, ସ୍ତନ୍ୟପାନ କଲେ । ତାଙ୍କ ଆଗରେ ଭୟରେ ଥରିଲେ ଏବଂ ସେ ବାନ୍ଧିଲାରୁ ବାନ୍ଧି ହୋଇଗଲେ । ଭଗବାନ ଅପରାଧର ଫଳ ସ୍ୱରୂପ ବାନ୍ଧି ହୋଇ ନାହାନ୍ତି । ସେ ତ ସର୍ବେଶ୍ୱର, ବିଶ୍ୱପତି । ତାଙ୍କ ଦେଇ କେଉଁ ଅପରାଧ ବା ହେବ ? ମାତାଙ୍କୁ ବାତ୍ସଲ୍ୟ ସୁଖ ପ୍ରଦାନ କରିବାକୁ ସେ ବାନ୍ଧି ହେଲେ ଏବଂ ଗଛରୂପରେ ତାଙ୍କର ଦୁଆର ମୁହଁରେ କେତେ କାଳରୁ ଠିଆ ହୋଇ ରହିଥିବା କୁବେର ପୁତ୍ର ନଳ କୁବେରଙ୍କୁ ଉଦ୍ଧାର କରିବା ନିମନ୍ତେ ଉଦୁଖଳ ଟାଣି ଟାଣି ଆଗେଇବାକୁ ଲାଗିଲେ !"

ଏହା ଶୁଣି ଶୌନକ କହିଲେ—"ହେ ସୂତ ! ଦାମୋଦରଙ୍କର ଏ ଲୀଳା ତ ରସମୟ । ମହାଭାଗ, ଏ ଲୀଳାରେ ତ ଭଗବାନ ବାତ୍ସଲ୍ୟରସର ମହତ୍ତ୍ୱ ଚରମ ସୀମାକୁ ପହଞ୍ଚେଇ ଦେଇଛନ୍ତି । ଯଶୋଦା ମାତାଙ୍କର ଭାଗ୍ୟର ଯେତେ ବି ପ୍ରଶଂସା କରିବା ତାହା କମ ହେବ । ଅନନ୍ତ କୋଟି ବ୍ରହ୍ମାଣ୍ଡର ନାୟକ ପରମ୍ପରରେ ଯାହାଙ୍କର ସ୍ତନ୍ୟପାନ କରିବେ ତା'ଠାରୁ ବଳି ଭାଗ୍ୟବତୀ ଆଉ କିଏ ଅଛି । ଏ ଯାମଳାର୍ଜ୍ଜୁନ ଉଦ୍ଧାର କଥା ପରେ ଶୁଣିବେ । ଭଗବାନ ତ ଉଦୁଖଳଟି ସାଙ୍ଗରେ ଖେଳୁଛନ୍ତି । ସେ ଯାଆଁ ସେ ଖେଳୁଥାନ୍ତୁ ! ଆପଣ ଆମକୁ ସେଇ କଥା ବୁଝେଇ ଦିଅନ୍ତୁ; ନନ୍ଦ ଏବଂ ଯଶୋଦା ସେଭଳି କ'ଣ ସୁକୃତ କରିଥିଲେ ଯେ ସେମାନେ ତାଙ୍କର ମାତାପିତା ହେବାର ଦୁର୍ଲଭ ପଦ ପ୍ରାପ୍ତ ହେଲେ । ଯଶୋଦାମାତା ଏଭଳି କେଉଁ ସୁକୃତ କର୍ମ କରିଥିଲେ ଯେ ପ୍ରଭୁ ତାଙ୍କର ସ୍ତନ୍ୟପାନ କଲେ । ଏ ପ୍ରଶ୍ନର ଉତ୍ତର ଦେଇ ଆପଣ ପରବର୍ତ୍ତୀ କଥା କହିବାର କୃପା କରନ୍ତୁ !"

ଏହାଶୁଣି ସୂତ ଗମ୍ଭୀର ହୋଇଗଲେ ଏବଂ କହିଲେ—"ମହାଭାଗ ! ଏଭଳି ମହତ୍ତ୍ୱ କର୍ମଦ୍ୱାରା ମିଳେ ନାହିଁ । ଏ ପଦ ସାଧନ ସାଧ୍ୟ ନୁହେଁ କୃପା ସାଧ୍ୟ । ଭଗବାନ କେଜାଣି କେତେବେଳେ ମୁଗଧ ହୋଇଯିବେ । କେତେବେଳେ କୃପାବୃଷ୍ଟି କରିବେ । ଶ୍ରୀ ନନ୍ଦ ଏବଂ ମାତା ଯଶୋଦାଙ୍କ ବିଷୟରେ ଗୋଟାଏ ପୌରାଣିକ କଥା ରହିଛି, ତାହା ମୁଁ ଆପଣଙ୍କୁ ଶୁଣାଉଛି ଆପଣ ମନ ଦେଇ ଶୁଣନ୍ତୁ ।"

## ଛପୟ

ବଡ଼ୋ ଅଟପଟୋ ପନ୍ଥ ତପ୍ରେମ କୋ ନହିଁ ସବ ଜାନେଁ ।<br>
ଜିନକୁଁ ଜୋଗୀ ଜତୀ ଜଗନ୍ମୟ ଜଗପତ ମାନେଁ ।।<br>
ତିନକୁଁ ମୈୟା ପକରୀ ବାହ ମାରେ ଧମକାବେଁ ।<br>
ପଟ ପିଟାଇକେଁ ଶ୍ୟାମ ଗୋଦ ତାହୀ କୀ ଆବେଁ ।।

ଜିନକୀ ଲୀଲା ଲଳିତ ସୁନି, ସବ ଜଗ ଆନନ୍ଦ ମହଁ ଭରେଂ ।
ଜଗଦୀଶ୍ୱର ଜିନ ସୁତ ବନେ, କୌନ ସୁକୃତ ଯଶୁମତ କରୌ ॥

●

# ଶ୍ରୀକୃଷ୍ଣ ଯଶୋଦାଙ୍କର ସ୍ତନ୍ୟପାନ କାହିଁକି କଲେ ?

ନନ୍ଦଃ କିମକରୋଦ୍ ବ୍ରହ୍ମନ୍ ଶ୍ରେୟ ଏବଂ ମହୋଦୟମ୍ ।
ଯଶୋଦା ଚ ମହାଭାଗା ପପୌ ଯସ୍ୟାଃ ସ୍ତନଂ ହରିଃ ॥

(ଶ୍ରୀଭା ୧୦ସ୍କ, ୮ ଅ, ୪୬ ଶ୍ଳୋକ)

## ଛପ୍ପୟ

ନନ୍ଦ ଦ୍ରୋଣ ଦ୍ୱିଜ ହୁତେ ଧରା ପତ୍ନୀ ସଁଗ ବନ ମହ ।
ଭିକ୍ଷା ପୈ ନିର୍ବାହ କରହିଁ ଧର ଶ୍ରୀହରି ମନମହିଁ ॥
କରନ ପରୀକ୍ଷା ବିଷ୍ଣୁ ଅତିଥି ଦ୍ୱିଜ ବନି ବନ ଆୟେ ।
ଧରା କରୌ ସତ୍କାର ମାତୃପିତୁ ବର ପଠାୟେ ॥
କର ଯାଚନା ଅନ୍ନ କୀ, ଧରା ଅଧିକ ଚିନ୍ତିତ ଭଈ ।
ପତି ଅଗ୍ରବମହିଁ ଅନ୍ନହିତ, ସ୍ୱୟଂ ବଣିକ ଦ୍ୱାରେ ଗଈ ॥

ପରୀକ୍ଷିତ ମହାରାଜ ଶ୍ରୀ ଶୁକଦେବଙ୍କୁ ପଚାରୁଛନ୍ତି—"ମହାଭାଗ ! ମାତା ଯଶୋଦା ଏଭଳି କେଉଁ ପୁଣ୍ୟ କରିଥିଲେ ଯେ ଭଗବାନ ତାଙ୍କର ସ୍ତନ୍ୟପାନ କଲେ । ନନ୍ଦ ମଧ୍ୟ ଏଭଳି କେଉଁ ପୁଣ୍ୟ ଅର୍ଜନ କରିଥିଲେ ଯାହାଫଳରେ ତାଙ୍କୁ ମଧ୍ୟ ସାମିପ୍ୟ ପ୍ରାପ୍ତ ହେଲା ।

ଦରିଦ୍ରତାରେ ଗୁଣହିଁ ଗୁଣ ଥାଏ ଧନରେ ଦୋଷ ହିଁ ଦୋଷ ପୂର୍ଣ୍ଣ ରହିଛି । ଧନ ବେଶି କଷ୍ଟରେ ଉପାର୍ଜନ କରାଯାଏ । ଜୀବନ ବାଜି ଲଗେଇ ଅର୍ଥ ଉପାର୍ଜନ ହେଲାପରେ ତାକୁ ରକ୍ଷାକରି ରଖିବାପାଇଁ ମଧ୍ୟ ଅନେକ କଷ୍ଟ ସହିବାକୁ ପଡ଼େ । ଧନୀ ଲୋକଙ୍କୁ ରାତିରେ ନିଦ ହୁଏ ନାହିଁ । ସବୁବେଳେ ଛାତିରେ ଛନକା ପଶି ରହିଥାଏ । ସବୁବେଳେ ସେ

ଡରୁଥାଏ, କାଳେ ମୋ ଧନ କିଏ ଚୋରାଇ ନବ । କିଏ ଆସି କାଳେ ମାଗିବ । ଭାଇ ବନ୍ଧୁ ଧନପାଇଁ ଝଗଡ଼ା କରିବେ । ରାଜା ଅଧିକ କର ଲଗେଇବେ, ମୁଁନିଜେ କୋଉଠି ରଖି ଦେଇ ଭୁଲି ଯିବି । ଏମିତି ନାନା ଚିନ୍ତା ସବୁବେଳେ ମନକୁ ଘାରୁଥାଏ । ତାକୁ ରକ୍ଷାକରିବାରେ ଯେମିତି ଦୁଃଖ, ପାଖରେ ରଖିଥିବାରେ ବି ସେମିତି ଦୁଃଖ ଯେ କାମରେ ଲଗେଇ ତାକୁ ବଢ଼େଇ ହଉନି । ଖରଚ ହେଲେ ବି ଦୁଃଖ; ବୃଥାଟାରେ ଖର୍ଚ୍ଚ ହୋଇ ଯାଉଛି । ଆଉ ନଷ୍ଟ ହେଲେ ତ ପ୍ରାଣାନ୍ତକ କଷ୍ଟ । ଏପରି ଭାବରେ କେତେବେଳେ ହେଲେ ନିଶ୍ଚିନ୍ତ ହୋଇ ରହିପାରେ ନାହିଁ । ତା'ର ଚିନ୍ତା ନିରନ୍ତର ଲାଗି ରହିଥାଏ । ସେମିତି କେଜାଣି କୋଉଠି ସେଭଳି ଧନୀ ଥିବେ ଯେଉଁମାନଙ୍କୁ ଏପରି ଚିନ୍ତା ଘାରୁ ନ ଥିବ ଆଉ ସେମାନେ ଏଭଳି ଚୋରି କରୁ ନ ଥିବେ । ଅନ୍ୟକୁ କଷ୍ଟ ଦେଇ ଧନ ଏକତ୍ରିତ କରୁ ନ ଥିବେ । ଧନୀମାନଙ୍କ ପାଇଁ ମିଛ କହିବା ତ ସାଧାରଣ କଥାଟିଏ । କଥା କଥାରେ ତାଙ୍କ ମୁହଁରେ ମିଛ ବାହାରେ । ତାଙ୍କୁ ପଚାରିଲେ କେଡ଼େ ଖୁସିରେ କହିଦେବେ, ଆରେ ଭାଇ ମିଛ ନ କହିଲେ କ'ଣ ଚଳୁଛି ? ବେପାର ତ ସତ ମିଛ ଦି' କଥାକୁ ଧରି ଚାଲୁଛି । ଧନୀ କରେ ଗୋଟାଏ କଥା, କହେ ଆଉ ଗୋଟାଏ ! ଧନ ପାଖରେ ଥିଲେ କାମର ବେଗ ବଢ଼ିଯାଏ । ଧନୀ ଭାରି ଅହଂକାରୀ । ସେମାନେ ଆପଣା ଆଗରେ କାହାକୁ କିଛି ବୋଲି ଦେଖି ପାରନ୍ତି ନାହିଁ । ତାଙ୍କର ପ୍ରତିକୂଳ ସାମାନ୍ୟଟିକିଏ କଥାରେ ସେମାନେ ରାଗିଯିବେ । ସେମାନେ ଗର୍ବର ମୂର୍ତ୍ତି । ସେ ବଡ଼ ସେ ସାନ, ସ୍ତ୍ରୀ ସାଙ୍ଗରେ କଥା ହେବା କଥା, ସ୍ତ୍ରୀ ସାଙ୍ଗରେ ନୁହଁ ଏଭଳି ଭେଦଭାବ ଧନ ସାଙ୍ଗରେ ତାଳ ମିଳେଇ ବଢ଼ିଥାଏ । ଧନୀ ଲୋକର ଶତ୍ରୁ ବି ଅନେକ ହୋଇ ଯାଆନ୍ତି । କାରଣ ସେମାନେ ଦରକାରଠାରୁ ଅଧିକ ଜିନିଷକୁ ଅଧିକାର କରି ରଖିଥାନ୍ତି । ଧନୀମାନେ ହଠାତ୍ କାହାକୁ ହେଲେ ବିଶ୍ୱାସ କରନ୍ତି ନାହିଁ । ମାତା ପିତା ଭାଇ ବନ୍ଧୁ ସବୁରି ଉପରେ ଅବିଶ୍ୱାସ । ଧନ ହେତୁ ଈର୍ଷା ସ୍ୱାଭାବିକ ହୋଇଯାଏ । କିଏ ମୋର ସମକକ୍ଷ କେମିତି ହେବ ! ଧନ ବଢ଼ିଲେ ସାଙ୍ଗକୁ ଜୁଆ ମଦ ସ୍ତ୍ରୀ ଆଦି ବି ବଢ଼େ । ଏ ଭଳି ଧନର ଅନେକ ଦୋଷ । ଦରିଦ୍ରକୁ କେହି ଦେଲେ ପୁଚ୍ଛାନ୍ତି ନାହିଁ । ଏଣୁ ସେମାନେ ଇଚ୍ଛା ଥିଲେ ବି ଏ ସବୁ ଅବଗୁଣଠାରୁ ବାଧ୍ୟ ହୋଇ ଦୂରେଇ ରହନ୍ତି । ତେବେ ମଧ୍ୟ ଦରିଦ୍ରତାରେ ସବୁ ଗୁଣଥାଇ ବି ଦୁର୍ଗୁଣଟିଏ ରହିଛି । ଉଚିତ ଭାବରେ ଅତିଥି ସତ୍କାର ହୋଇପାରେ ନାହିଁ । ଯେଉଁମାନେ ଦରିଦ୍ର ହୋଇ ମଧ୍ୟ ତନୁ ମନ ଧନ ତଥା ସର୍ବସ୍ୱ ଅର୍ପଣ କରି ଅତିଥିଙ୍କର ସତ୍କାର କରନ୍ତି, ତା'ଠାରୁ ବଳି ଆଉ କୌଣସି ସୁକୃତ ସଂସାରରେ ନାହିଁ । ସେମାନେ ଏଇ ସୁକୃତ ବଳରେ ଭଗବାନଙ୍କୁ କିଣି ନିଅନ୍ତି । ତାଙ୍କୁ ନିଜର ଅଧୀନ କରି ପକାନ୍ତି । ନିଜେ ଭଗବାନ ବିକି ହୋଇ ଯାଆନ୍ତି । କାରଣ ସେମାନେ ସବୁରି ଦେହରେ ଆପଣାର ସ୍ୱାମୀର ଦର୍ଶନ କରନ୍ତି । ଯେଉଁମାନେ ଅତିଥି ସେବାରେ ଆପଣାର ସର୍ବସ୍ୱ ଅର୍ପଣ କରି ପାରିଛନ୍ତି, ସେମାନେ ଜାଣ ସବୁ କିଛି ପାଇ ଯାଇଛନ୍ତି ।

ସୂତ କହିଲେ—"ହେ ମୁନିଗଣ, ମହାଭାଗ୍ୟବତୀ ଯଶୋଦା ମାତାଙ୍କର କେଉଁ କାର୍ଯ୍ୟ ନିମନ୍ତେ ଭଗବାନ ମୁଗ୍ଧ ହୋଇଗଲେ ସେ ବିଷୟରେ ଆପଣମାନଙ୍କୁ ଗପଟିଏ ଶୁଣାଉଛି ।"

ଗୋଟାଏ ଅତି ଶାନ୍ତ ବଣ ଥିଲା । ସେଇ ବଣରେ ଗୋଟାଏ ସାଧାରଣରୁ ସାଧାରଣ ପତ୍ର କୁଡ଼ିଆ ଥିଲା । ସେଇ କୁଡ଼ିଆରେ ଗୋଟାଏ ବ୍ରାହ୍ମଣ ରହୁଥିଲେ । ତାଙ୍କ ନାଆଁ ଦ୍ରୋଣ ଆଉ ପତ୍ନୀଙ୍କ ନାମ ଧରା । ଦୁହେଁ ଭଗବତ ଭକ୍ତ ଆଉ ସଂସାର ବିଷୟରୁ ବିରକ୍ତ ଥିଲେ । କୃଷ୍ଣ ପ୍ରେମରେ ଅନୁରକ୍ତ ହୋଇ ଭଗବାନଙ୍କର ରୂପାସବରେ ଆସକ୍ତ ହୋଇ ରହୁଥିଲେ । ବ୍ରାହ୍ମଣ ସକାଳୁ ଭିକ୍ଷା କରି ତୃତୀୟ ପ୍ରହରବେଳକୁ ଯାହାକିଛି ବି ନେଇ ଆସୁଥିଲେ ! ବ୍ରାହ୍ମଣୀ ତାହା ରାନ୍ଧି, ଆସିଥିବା ଅତିଥି ଅଭ୍ୟାଗତ ଓ ସ୍ୱାମୀଙ୍କୁ ଖୁଆଇ ଯାହା ବଳୁଥିଲା ନିଜେ ଖାଇ ନେଉଥିଲେ । ଯଦି କୌଣସି ଦିନ କିଛି ବଳୁ ନ ଥିଲା ତା'ହେଲେ ସେ ଉପାସ ରହୁଥିଲେ । ସେ ଗାଆଁ ଦେଖି ନ ଥିଲେ । ସେଇ ବଣର କୁଡ଼ିଆଟି ଭିତରେ ଥାଇ ଯାହାକିଛି ପୂଜା ଧ୍ୟାନ ଆଦି କରୁଥିଲେ । ଭଗବାନ ତାଙ୍କୁ ଅପୂର୍ବ ସୌନ୍ଦର୍ଯ୍ୟ ବୃଥାଟାରେ ଦେଇଥିଲେ । ସେ ସେଇ ବଣର ମାଳତୀ କଢ଼ିଭଳି ରହିଥିଲେ: ଯେଉଁଠାରେ ତାଙ୍କର ସୌନ୍ଦର୍ଯ୍ୟ ପ୍ରଶଂସା କରିବାକୁ କେହି ହେଲେ ନ ଥିଲେ । ଯୌବନ ଆସି ତାଙ୍କୁ ଆଲୋଡ଼ିତ କଲା ସିନା ତାଙ୍କ ଉପରେ ସେଭଳି ପ୍ରଭାବ ପକେଇ ପାରି ନ ଥିଲା । ସେ ସତୀ ସାଧ୍ୱୀ ଆପଣାର ପତିଙ୍କୁ ପରମେଶ୍ୱର ମନେ କରି ତାଙ୍କର ଆଦେଶ ପାଳନ କରୁଥିଲେ । ସେ ପତିଙ୍କ ସେବାକୁ ହିଁ ପରମ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ସେ ପତିଙ୍କର ଆଦେଶକୁ ବେଦ ଧର୍ମଶାସ୍ତ୍ରର ଆଦେଶ ମନେ କରୁଥିଲେ । ସେ ସ୍ୱାମୀଙ୍କର ଇଚ୍ଛା ଅନୁସାରେ ତୁଳସୀ ଦଳ, ବେଲପତ୍ର ନାନାପ୍ରକାର ଫୁଲ ସଂଗ୍ରହ କରି ନେଇ ଆସୁଥିଲେ । ପତି କହୁଥିଲେ, ଅତିଥି ହେଉଛନ୍ତି ଈଶ୍ୱରଙ୍କ ସ୍ୱରୂପ । ଈଶ୍ୱରଙ୍କର ଅନାଦର କରିବା ଯାହା ଅତିଥିଙ୍କର ଅନାଦର କରିବା ତାହା । ଅତିଥି ଯେଉଁ ଦୁଆରରୁ ନିରାଶ ହୋଇ ଫେରନ୍ତି, ସେ ଘରର ସବୁ ସୁକୃତ ନଷ୍ଟ ହୋଇଯାଏ । ସର୍ବସ୍ୱ ଦେଇ ଅତିଥିଙ୍କର ସେବା କରିବା ଉଚିତ । ପତିଙ୍କର ଏଇ କଥାକୁ ଗଣ୍ଠି ଧନ କରି ରଖିଥିଲେ । ପତିଙ୍କର ଅନୁପସ୍ଥିତିରେ ମଧ୍ୟ କେହି ଅତିଥି ଆସିଲେ ସେ ନିଜର ସାଧ୍ୟମତେ ତାଙ୍କର ଆଦର ସତ୍କାର କରୁଥିଲେ ।

ଦିନେ ତାଙ୍କର ସ୍ୱାମୀ ପାଖ ଗାଆଁକୁ ଭିକ୍ଷାପାଇ ଯାଇ ଥିଲେ । ସେତେବେଳେ ଜଣେ ଯୁବକ ବ୍ରାହ୍ମଣ ବୁଢ଼ା ବାପ-ମାଆଙ୍କୁ ନେଇ ସେଇ ପତିବ୍ରତାଙ୍କର କୁଡ଼ିଆରେ ପହଞ୍ଚିଲା । ସତୀ ଶ୍ରଦ୍ଧାରେ ସେମାନଙ୍କର ସ୍ୱାଗତ ସତ୍କାର କଲେ ।

ଯୁବକ କହିଲା—"ଦେବି ! ଏମାନେ ମୋର ବୁଢ଼ା ବାପ ମାଆ, ଅନେକ ଦିନ ହେଲା ଏମାନଙ୍କୁ କିଛି ହେଲେ ଖାଇବାକୁ ମିଳି ନାହିଁ । ଭୋକରେ ସେମାନେ ଅଧମରି ପାଉଛନ୍ତି ହେଲେଣି । ପ୍ରାଣ କଣ୍ଠାଗତ ହେଲାଣି, କିଛି ଖାଇବାକୁ ଥିଲେ ଦିଅନ୍ତୁ !"

ପତିବ୍ରତା କହିଲେ—"ବିପ୍ରବର ! ଆପଣ କିଛି କାଳ ବିଶ୍ରାମ କରନ୍ତୁ । ମୋର ସ୍ୱାମୀ ଏଇମାତ୍ର ଭିକ୍ଷା ନେଇ ଆସୁଥିବେ । ସେ ଆସି ପହଞ୍ଚିବା ମାତ୍ରକେ ମୁଁ ପ୍ରଥମେ ଆପଣଙ୍କର ପିତାମାତାଙ୍କ ଲାଗି ଖାଇବାର ବ୍ୟବସ୍ଥା କରିବି ।"

ଯୁବକ ପଚାରିଲା—"ତାଙ୍କର ଆସିବାରେ ଆଉ କେତେ ବିଳମ୍ବ ହେବ ।"

ସତୀ ଚଞ୍ଚଳ କହିଲେ—"ଏଇ ଆସି ପହଞ୍ଚିବେ । ଶୁଣି ଯୁବକ ବ୍ରାହ୍ମଣ କିଛି କହିଲା ନାହିଁ । କିଛି ସମୟ ପରେ ବ୍ରାହ୍ମଣ ପୁଣି ପଚାରିଲେ—ଆସିଲେ କି ?"

ପତିବ୍ରତା ଚିନ୍ତିତ ହୋଇ କହିଲେ—"ଏତେ ଡେରି ତ ସେ କେବେହେଲେ କରନ୍ତି ନାହିଁ, ଆଜି କେଜାଣି କାହିଁକି ଏତେ ବିଳମ୍ବ ହେଉଛି !

ଯୁବକ କହିଲା—"ମୋର ଆଉ କୌଣସି ଚିନ୍ତା ନାହିଁ । କେବଳ ଏଇ ବୁଢ଼ା ବାପ ମାଆଙ୍କ କଥା ଭାବୁଛି । ଏମାନଙ୍କୁ ଯଦି ଏତ ଶୀଘ୍ର କିଛି ଖାଇବାକୁ ନ ମିଳିଲେ ଏମାନଙ୍କର ଜୀବନ ରହିବ ନାହିଁ । ବଡ଼ଲୋକେ ସତ କହିଛନ୍ତି । ଭିକ୍ଷୁକ ଘରେ ଭୋକିଲା ଲୋକ ଅତିଥି ହେବା ଆଦୌ ଉଚିତ ନୁହେଁ । ମୁଁ ଅନେକ ସମୟ ଅପେକ୍ଷା କଲି ପରେ ନିରାଶ ହୋଇ ଫେରିଯିବାଟା ଉଚିତ ହେବ କି ?"

ପତିବ୍ରତା କାତର ହୋଇ କହିଲେ—"ଆପଣ ମୋ' ଘରୁ ନିରାଶ ହୋଇ ଫେରିଯିବେ ?"

ଅନ୍ୟ କୌଣସି ସୁରା ନ ଦେଖି ଯୁବକ କହିଲା—"ଆଉ କିଛି ଉପାୟ ବି ତ ନାହିଁ ।"

ପତିବ୍ରତା କହିଲେ—"ନା' ମୁଁ ସେମିତି ହେବାକୁ ଦେବିନାହିଁ । ଏଭଳି ଅବସ୍ଥାରେ ଆପଣଙ୍କର ପିତାମାତାଙ୍କର ଏଠାରୁ ଯିବା ମଧ୍ୟ ନିରାପଦ ନୁହେଁ ।"

ଯୁବକ କୃତଜ୍ଞତା ପ୍ରକାଶ କରି କହିଲା—"ଦେବି ! ମୁଁ ଆପଣଙ୍କର ସହାନୁଭୂତି ପାଇଁ ଧନ୍ୟବାଦ ଜଣାଉଛି । ମାତ୍ର ମୋତେ ବାଧ୍ୟ ହୋଇ ଏମାନଙ୍କ ପାଇଁ କିଛି ନା କିଛି ଖାଇବାର ବ୍ୟବସ୍ଥା କରିବାକୁ ହେବ ; ତେଣୁ ଆପଣଙ୍କର ସ୍ୱାମୀ ଆସିବାଯାଏଁ ଅପେକ୍ଷା କରିବା ଉଚିତ ହେବନାହିଁ ।"

ଏହା ଶୁଣି ଦେବୀ ଚିନ୍ତିତ ଜଣା ପଡ଼ିଲେ । କିଛି ବେଳ ଭାବି କହିଲେ—"ଏଇ ପାଖରେ ଗାଆଁଟିଏ ଅଛି । ସେମିତି ମୁଁ କେବେହେଲେ ସେ ଗାଆଁକୁ ଯାଇନାହିଁ । ତଥାପି ମୁଁ ଜାଣେ ଯେ ଏଇ ପାଖରେ ଗାଆଁଟିଏ ଅଛି । ଆପଣ କିଛି ସମୟ ଅପେକ୍ଷା କରନ୍ତୁ, ମୁଁ କିଛି ନା କିଛି ଖାଇବାକୁ ନେଇ ଆସିବି । ଏତିକି କହି ସେ ଯେପରି ଅବସ୍ଥାରେ ଥିଲେ ସେପରି ଚାଲିଗଲେ ।"

ଗାଆଁଟି ପାଖରେ ଥିଲା । ଗାଆଁରେ ଜଣେ ଯୁବକ ବଣିକର ଦୋକାନ ଥିଲା । ପତିବ୍ରତା ଧର୍ମଦେବୀ ସେଇ ଦୋକାନ ଆଗରେ ଠିଆ ହେଲେ । ଆହୁରି ଅନେକ ସ୍ତ୍ରୀ ପୁରୁଷ ସଉଦା ନବାକୁ ସେଠାରେ ଥିଲେ । ଯୁବକ ଦୋକାନୀ ସମସ୍ତଙ୍କୁ ଜିନିଷ ତଉଲି ତଉଲି ଦେଉଥିଲା । ସେ ତାଙ୍କୁ ମଧ ପଚାରିଲା—କ'ଣ ଦରକାର ?

ପତିବ୍ରତା କହିଲେ—"ମୋର ସ୍ୱାମୀ ଭିକ୍ଷା କରିବାକୁ ଯାଇଛନ୍ତି । ସେ ଏଯାଏଁ ଫେରି ନାହାନ୍ତି । ମୋ' କୁଡ଼ିଆକୁ ତିନିଜଣ ଅତିଥି ଆସିଛନ୍ତି । ସେମାନଙ୍କ ପାଇଁ ଖାଇବାକୁ କିଛି ନିହାତି ଦରକାର । ମୁଁ ସେମାନଙ୍କ ପାଇଁ ଆହାର ନେବାକୁ ଆସିଛି ।"

ଯୁବକଟି ଭିକ୍ଷୁକ ବ୍ରାହ୍ମଣଙ୍କୁ ଜାଣିଥିଲା । ସେ ଭଲଭାବେ ଜାଣିଥିଲା ଯେ ଦ୍ରୋଣ ବ୍ରାହ୍ମଣ ପାଖରେ କାଣି କଉଡ଼ିଟିଏ ବି ନାହିଁ ; କିନ୍ତୁ ସେ ଏଯାଏଁ ବ୍ରାହ୍ମଣଙ୍କର ସ୍ତ୍ରୀଙ୍କୁ ଦେଖି ନ ଥିଲା । ଥରେ ସେ ତାଙ୍କୁ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁଦେଲା । ଅସହାୟ ଅବସ୍ଥା ଦେଖି ସଭିଏଁ ଲାଭ ଉଠେଇବା କଥା ଭାବନ୍ତି । ସୁନ୍ଦରତା ଦେଖି ବଡ଼ ବଡ଼ ଲୋକଙ୍କର ମନ ବିଚଳିତ ହୋଇଯାଏ । କାମ ବାସନାର ଉଦୟ କାମ ସାମଗ୍ରୀକୁ ଦେଖି ହୋଇଥାଏ । ତାଙ୍କୁ ଦେଖି ଯୁବକ ବଣିକ ମନରେ ପାପ ଉଦୟ ହେଲା । ସେ ପଚାରିଲା—"କ'ଣ କ'ଣ ଦରକାର !"

ଯୁବା ଦୋକାନୀଟି ଆବଶ୍ୟକତାରୁ ଅଧିକ ଅଟା, ଡାଲି, ଚାଉଳ, ଘିଅ, ଲୁଣ, ମରିଚ, ମସଲା, ପରିବାପତ୍ର ବି ଗୋଟାଏ ପଗଡ଼ରେ ସଜାଡ଼ି ତାଙ୍କ ଆଗରେ ଥୋଇଦେଲା, କହିଲା—"ଏଇ ନିଅ ତୁମର ସଉଦା । ମୁଁ ତ ତମକୁ ଏତକ ଦେଲି, ତମେ ମୋତେ କ'ଣ ଦେବ ?"

ସତୀ ବିନୟ କରି କହିଲେ—"ମୁଁ ତ କାଙ୍ଗାଳୁଣୀ । ମୋ' ପାଖରେ କ'ଣ ଅଛି ଯେ ଦେଇ ପାରିବି ।"

ତାଙ୍କୁ ସତୃଷ୍ଣ ଆଖିରେ ଦେଖି ଦୋକାନୀଟି କହିଲା—"ମୁଁ କ'ଣ ଏଇଠି ଦୁଃଖୀ ରଙ୍କୀକୁ ବାଣ୍ଟିବାକୁ ବସିଛି ନା ? ବଣିଜ କରୁଛି, ବଣିଜ ! ଗୋଟାଏ ଜିନିଷ ବଦଳରେ ଆଉ ଗୋଟାଏ ଜିନିଷ ନେବା ହେଉଛି ବଣିଜ । ତମ ପାଖରେ ଟଙ୍କା ନାହିଁ ଯଦି, ଯାହାଅଛି ସେଇଆ ଦିଅ ।"

ବ୍ୟାକୁଳ କଣ୍ଠରେ ଦେବୀ କହିଲେ—"ମୋ' ପାଖରେ ଏ ଚିରା ଦେହର ଶାଢ଼ୀ ଖଣ୍ଡିକ ଛଡ଼ା ଆଉ କ'ଣ ଅଛି ?" ଏହା କହି ସେ ତାଙ୍କର ଚିରା ଶାଢ଼ୀ ଦେଖେଇଲେ । ଚିରା କାନିଅରୁ ସୁନା କଳସ ଭଳି ସୁନ୍ଦର ସ୍ତନ ଯୁଗଳକୁ ଦେଖି ଦୋକାନୀ କହିଲା—"ତା'ହେଲେ ତମ ପାଖରେ ଯାହା ଅଛି ଦିଅ ?"

ଦେବୀ କହିଲେ—"ମୁଁ ଈଶ୍ୱରଙ୍କ ଗୁଣ ପକେଇ କହୁଛି, ମୋ' ପାଖରେ ଯାହା ଅଛି ତମେ ତାହା ନେଇଯାଅ !"

ଏହାଶୁଣି ସେ ତା'ର କାମ୍ପୀ ଭାଷା (ଠାର)ରେ ଦେବୀଙ୍କର ସ୍ତନ ଯୁଗଳକୁ ଦେଖେଇଲା । ଦେବୀଙ୍କର ସତୀତ୍ୱ ଝଲସି ଉଠିଲା । ସେ ଆଦୌ ରାଗିଲେ ନାହିଁ । କିଛି ଖରାପ ବି ଭାବିଲେ ନାହିଁ । ଯେତେବେଳେ ମୁଁ ଭଗବାନଙ୍କର ଗୁଣ ପକେଇ ମୋ'ପାଖରେ ଯାହା ଅଛି ତାହା ଦେବି ବୋଲି କହିସାରିଛି, ତାହା ନିଶ୍ଚୟ ଦେବି । ସେ କଥା ଟାଳି ଦେବା ଉଚିତ ହେବନାହିଁ । ଇଏ ଏଇ ଦୁଇଟି ମାଂସ ପିଣ୍ଡୁଳାକୁ ମାଗୁଛି ତ ? ଯଦି ଏହାକୁ ଦେବାଦ୍ୱାରା ଅତିଥି ସତ୍କାର କରିହେବ ତା'ହେଲେ ବୃଥାରେ ବୋଝ ମୁଣ୍ଡେଇ ରହିଥିଲେ ଲାଭ କ'ଣ ? ଏହାଭାବି ଦେବୀ ସାମନାରେ ଥିବା ଏକ ଦାଢ଼ୁଆ ଛୁରୀ ଉଠେଇ ନେଲେ ଆଉ ତତ୍‌କ୍ଷଣାତ୍ ସ୍ତନ ଦୁଇଟିକୁ କାଟି ଦେଇ ସେ ଦୁଇଟିକୁ ଯୁବକ ଉପରକୁ ଫିଙ୍ଗି ଦେଇ ଭୋଜନ ସାମଗ୍ରୀ ନେଇ ଚାଲିଗଲେ । ସେ ଦଉଡ଼ିଲା ଭଳି ନିଜ କୁଡ଼ିଆ ଆଡ଼କୁ ଯାଉଥାନ୍ତି । ଛାତିରୁ ଦୁଇଧାର ରକ୍ତ ବହି ଆସୁଥାଏ । ପିନ୍ଧା ଲୁଗା ରକ୍ତରେ ତିନ୍ତି ଯାଉଥାଏ । ଯିବା ବାଟରେ ରକ୍ତ ପଡ଼ି ଚାଲିଥାଏ । ସେ କୌଣସିମତେ କୁଡ଼ିଆରେ ପହଞ୍ଚି ଆଣିଥିବା ସାମଗ୍ରୀ ବ୍ରାହ୍ମଣ ଯୁବକଙ୍କୁ ଦେଇ ଅଧିକ ରକ୍ତସ୍ରାବ ହୋଇଥିବା ହେତୁ ଅଚେତ ହୋଇ ପଡ଼ିଲେ ।

କିଛି ସମୟ ପରେ ସେ ଆଶ୍ଚର୍ଯ୍ୟ ହୋଇ ଯାହା ଦେଖିଲେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଯେଉଁ ଯୁବକ ପାଇଁ ଖାଇବାକୁ ଆଣି ଦେଇଥିଲେ ସେ ବର୍ତ୍ତମାନ ଚତୁର୍ଭୁଜ ବିଷ୍ଣୁ ରୂପରେ ରହିଥିଲେ । ବୃଦ୍ଧା ମାତା ସିଂହବାହିନୀ ଦେବୀ ମହାମାୟା ଓ ବୃଦ୍ଧ ପିତା ତ୍ରିଲୋଚନ ଶଙ୍କର ରୂପରେ ବିଜେ ହୋଇଥିଲେ । ଭଗବାନ ସତୀଙ୍କୁ ଅଭୟ ଦେଇ କହିଲେ—"ତମେ ଆମ ପାଇଁ ସ୍ତନ ଦାନ କରିଛ ; ତେଣୁ ଆମେ ଦ୍ୱାପରର ଶେଷ ଭାଗରେ ଆପଣଙ୍କ ସନ୍ତାନ ଭାବରେ ସେଇ ସ୍ତନପାନ କରି ତୁମକୁ ଆନନ୍ଦ ଦେବୁ ।"

ସିଂହବାହିନୀ ଭଗବତୀ ମଧ୍ୟ ବର ଦେଲେ—"ମୁଁ ମଧ୍ୟ ତୁମର ପୁତ୍ରୀ ହୋଇ ଜନ୍ମଗ୍ରହଣ କରିବି । ଶିବ ମଧ୍ୟ ବର ଦେଲେ ଯେ ସେ ମଧ୍ୟ ବ୍ରଜଭୂମିରେ ଜନ୍ମଗ୍ରହଣ କରିବେ । ଏଭଳି ଭାବରେ ସେମାନେ ବରଦାନ କରୁଥିବାବେଳେ ଦ୍ରୋଣ ବ୍ରାହ୍ମଣ ଆସି ପହଞ୍ଚିଲେ । ସେ ମଧ୍ୟ ଭଗବାନଙ୍କର ଦର୍ଶନ କରି କୃତାର୍ଥ ହେଲେ । ଏହି ଦ୍ରୋଣ ଅଷ୍ଟବସୁଙ୍କ ମଧ୍ୟରେ ଜଣେ ହେଲେ । ଧରା ତାଙ୍କର ଭାର୍ଯ୍ୟା ହେଲେ । ବ୍ରହ୍ମା କହିଲେ—ତୁମେ ପୃଥିବୀରେ ଜନ୍ମ ଗ୍ରହଣ କରି ଗୋବଂଶର ପାଳନ କର ।"

ଦ୍ରୋଣ ବସୁ କହିଲେ—"ଆପଣଙ୍କର ଆଦେଶ ଆମର ଶିରୋଧାର୍ଯ୍ୟ । ତେବେ ଆମେ ଯେଉଁଠି ଜନ୍ମିଲେ ବି ସେଇ ଦେବାଧିଦେବ ବିଶ୍ୱପତି ଶ୍ରୀହରିଙ୍କ ପ୍ରତି ଅଚଳା ଭକ୍ତି

ରହୁଥାଉ—ଏଇ ବର ଦିଅନ୍ତୁ । କାରଣ ସେଇ ଭକ୍ତି ଦ୍ୱାରା ମଣିଷ ସମସ୍ତ ଦୁର୍ଗତିରୁ ମୁକ୍ତି ଲାଭ କରିଥାଏ ।"

ବ୍ରହ୍ମା କହିଲେ—"ତଥାସ୍ତୁ ! ତାହା ହିଁ ହେବ । ଭଗବାନ ତୁମମାନଙ୍କର ପୁତ୍ର ଭାବରେ ଜନ୍ମଗ୍ରହଣ କରିବେ । ତୁମକୁ ଆନନ୍ଦ ଦେବା ପାଇଁ ନାନାପ୍ରକାର ଲୀଳା କରିବେ ।"

ଏଭଳି ଭାବରେ ବ୍ରହ୍ମାଙ୍କର ବରପ୍ରାପ୍ତ ହୋଇ ଦ୍ରୋଣ ମହାରାଜ, ନନ୍ଦଭାବରେ ଜନ୍ମ ହେଲେ ଏବଂ ପତ୍ନୀ ଧରାଦେବୀ ଯଶୋଦା ଭାବରେ ଜନ୍ମ ହେଲେ । ଏଭଳି ଭାବରେ ସେମାନଙ୍କର ଭଗବାନଙ୍କ ପ୍ରତି ପ୍ରଗାଢ଼ ଭକ୍ତି ରହିଥିଲା । ଭଗବାନ ତ ନିଜର ପ୍ରତିଜ୍ଞା ପୂରଣ କରିବେ ହିଁ କରିବେ । ତେଣୁ ସେ ଶ୍ରୀକୃଷ୍ଣ ରୂପରେ ମାତାଙ୍କର ସ୍ତନପାନ କଲେ । ଶ୍ରୀ ବଳଦେବ ଓ ଅନ୍ୟାନ୍ୟ ସାଙ୍ଗମାନଙ୍କୁ ନେଇ ନାନା ଲୀଳାର ଉଆଣ କଲେ । ଏହି ସୁକୃତ ପାଇଁ ପିତା ମାତାଙ୍କ ହୃଦୟରେ ପୁତ୍ର ସ୍ନେହ ଉଚ୍ଛୁଳି ଉଠିଲା । ଏହା ତ ବ୍ୟାବହାରିକ କଥାଟିଏ । ବାସ୍ତବରେ ଶ୍ରୀକୃଷ୍ଣ ନିତ୍ୟ । ତାଙ୍କର ଧାମ ନିତ୍ୟ ଧାମ । ନନ୍ଦ ଯଶୋଦା ଆଦି ସମସ୍ତ ଗୋପ ଗୋପୀ, ଗଛଲତା ଓ ଗାଈ ଗୋରୁ ସବୁ କିଛି ନିତ୍ୟ । ତାଙ୍କର ଲୀଳା ମଧ୍ୟ ନିତ୍ୟ । ନିତ୍ୟ ମାଆ ତାଙ୍କୁ ଉଦୁଖଳରେ ବାନ୍ଧି ଦିଅନ୍ତି । ତେଣୁ ତ ତାଙ୍କ ନା ନିତ୍ୟ ଦାମୋଦର !

ଶୌନକ କହିଲେ—"ହେ ସୂତ ! ଏକଥା ତ ବୁଝିଗଲୁଁ । ଆପଣ ଏହାପରେ ଯମଳାର୍ଜୁନ ଉଦ୍ଧାର କଥା କହିବା ହୁଅନ୍ତୁ । ଉଦୁଖଳରେ ବନ୍ଧା ହୋଇ ତେଣିକି ଶ୍ରୀକୃଷ୍ଣ କ'ଣ କଲେ ?"

ସୂତ କହିଲେ—"ମହାଭାଗ ! ମୁଁ ସେଇ ଯମଳାର୍ଜୁନ କଥା ତ ଆପଣଙ୍କୁ ଶୁଣେଇବାକୁ ଯାଉଛି । ତାହା ଆପଣମାନେ ମନ ଦେଇ ଶୁଣିବା ହୁଅନ୍ତୁ ।"

## ଛପ୍‌ପୟ

ବଣିକ ଅନ୍ନ ଘୃତ ଦହୀ ରୂପନେ ଯାହୁ ତାରେ ।<br>
ଲଖି କୁଚ କର ସଙ୍କେତ ମୂଲ୍ୟ ମାଁଗତ ମତବାରେ ॥<br>
ସତୀ ପ୍ରତିଜ୍ଞା କରଁ କାଟି କୁଚ ଦୋଉ ଦତ୍ତେଁ ।<br>
ଚଲି ସାମଗ୍ରୀ ଆଇ ଅତିଥି ପଦ ବନ୍ଦନ କୀନ୍ହେ ॥<br>
ଅତିଥି ବସ୍ତୁ ବନ ବର ଦୟୋ, ମମ ହିତ କୁଚ କାଟେ ଜନନୀ ।<br>
ପଳୁ କନ୍ହଁ ସ୍ତନ ପିଉଁ, ତୂ ପ୍ରକଟେ ମମ ମାତୁ ବନ ॥

●

# ଯମଳାର୍ଜ୍ଜୁନ ଉଦ୍ଧାର

ବାଲେନ ନିଷ୍କର୍ଷୟତାନ୍ୱଗୁଲୂଖଲଂ ତଦ୍,
ଦାମୋଦରେଣ ତରସୋତ୍କଳିତାଙ୍ଘ୍ରିବନ୍ଧୌ
ନିଷ୍ପେତତୁଃ ପରମ ବିକ୍ରମିତାତିବେପ-
ସ୍କନ୍ଧପ୍ରବାଳବିଟପୌ କୃତଚଣ୍ଡଶବ୍ଦୌ ॥

(ଶ୍ରୀ ଭା ୧୦ ସ୍କ, ୧୦ ଅ, ୨୭ ଶ୍ଳୋକ)

## ଛପ୍ପୟ

ବସୁ ବର ପୁଣ ଦ୍ୱିଜ ଦ୍ରୋଣ ଭୟେ ବ୍ରଜ ନନ୍ଦ ଗୋପପତି ।
ଧରା ଯଶୋଦା ଭଇ ବନେ ସୁତ କୃଷ୍ଣ ଜଗତ୍‌ପତି ॥
ବାଁଧି ଉଲୂଖଲ ଦୟେ କୃଷ୍ଣ ଖୀଁଚେ ଗାଡ଼ୀ ସମ ।
ବାଲ ବୃଷଭ ସମ ଚଲେଁ ଶ୍ୟାମ ଶୋଭା ଅତି ଅନୁପମ ॥
ଯମଲାର୍ଜୁନ କେ ମଧ୍ୟ ହ୍ୱର, ଗୟେ ଉଲୂଖଲ ଫଁସି ଗୟୋ ।
ଖୀଁଚ୍ୟୋ ବଲତେଁ ବାଲ ପ୍ରଭୁ, ଗିରେ ବୃକ୍ଷ ଅତି ରବ ଭୟୋ ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଯାହାଙ୍କ କଟିରେ ଡୋରି ବନ୍ଧା ହୋଇଛି, ସେହି ବାଳକୃଷ୍ଣ ଯେମିତି ଉଦୂଖଳକୁ ଟାଣିବାକୁ ଲାଗିଲେ ତାହା ଗଡ଼ିଯାଇ ଦୁଇଟିଯାକ ବୃକ୍ଷ ମଝିରେ ରହିଗଲା ଏବଂ ତାଙ୍କର ପ୍ରବଳ ପରାକ୍ରମ ହେତୁ ଶାଖା ପ୍ରଶାଖା ସହିତ ପ୍ରଚଣ୍ଡ ଶବ୍ଦ କରି ଗଛଦୁଇଟି ମୂଳରୁ ଉପୁଡ଼ି ପଡ଼ିଲେ ।"

କୃଷ୍ଣଙ୍କର ପ୍ରତ୍ୟେକ ଲୀଳା ପ୍ରାଣୀମାନଙ୍କର ଉଦ୍ଧାର ନିମନ୍ତେ, ଜୀବମାନଙ୍କର ହିତ ପାଇଁ ହୋଇଥାଏ । ସେ ଯାହାଦ୍ୱାରା ଯାହା ବି କରାଇଥାନ୍ତି ସେ ସବୁରେ ଆନନ୍ଦ ହିଁ ରହିଥାଏ । ସବୁ କିଛି ସେ ଆନନ୍ଦ ନିମନ୍ତେ ହିଁ କରିଥାନ୍ତି । ସେ ତ ନିରାନନ୍ଦର ନାମ ମଧ୍ୟ ଜାଣନ୍ତି ନାହିଁ । ଯେଉଁ ପତ୍ର ଗଛରେ ଅଛି ତାହା ଦିନେ ନା ଦିନେ ନିଶ୍ଚୟ ଝଡ଼ିଯିବ । ଯେଉଁ ଜୀବ ଶ୍ରୀକୃଷ୍ଣଙ୍କ ଆଖିରେ ପଡ଼ିବ ତା'ର ମୁକ୍ତି ଅବଶ୍ୟ ହେବ । ପିମ୍ପୁଡ଼ିଠାରୁ ବ୍ରହ୍ମାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଦିନେନା ଦିନେ ମୁକ୍ତି ହେବ । କାହାର ଶୀଘ୍ର ତ କା'ର ବିଳମ୍ବରେ ହୋଇପାରେ । ବିଳମ୍ବ ଚଞ୍ଚଳର କୌଣସି ଅର୍ଥ ନାହିଁ । ଆଜି ଯଦି ସବୁ ଖେଳନା ଭାଙ୍ଗିଯିବ

ତେବେ ଖେଳ ଚାଲିବ କେମିତି ? କୃଷ୍ଣ ତ ସବୁବେଳେ ଖେଳପ୍ରିୟ । ଖେଳ ଛଡ଼ା ଆଉ କିଛି ସେ ଜାଣନ୍ତି ନାହିଁ । ଗୋଟାଏ ସରିଗଲେ ଆଉ ଗୋଟାଏ ବଳେ ଆସି ପହଞ୍ଚିବ । ଏହା ହିଁ ତାଙ୍କ ଗୁଣର ପ୍ରଭାବ । ଏଥିରେ ଶାପ କ'ଣ ଅନୁଗ୍ରହ କ'ଣ ?

ସୂତ କହୁଛନ୍ତି—"ହେ ମୁନିଗଣ ! ଯଶୋଦାନନ୍ଦନ ଶ୍ୟାମସୁନ୍ଦରଙ୍କ ଅଣ୍ଟାରେ ଡୋରି ବନ୍ଧା ହୋଇ ରହିଛି । ଅନ୍ୟ ଏକ ଡୋରି ବନ୍ଧା ହୋଇ ସେ ପୁଣି ଉଦୁଖଳ ସାଙ୍ଗରେ ବନ୍ଧା । ପିଲାମାନେ ଉଦୁଖଳ ଗଡ଼େଇ ଦେଉଥିବାରୁ ତାହା ଟାଙ୍ଗିଟିଏ ଭଳି ହୋଇଛି ଆଉ କୃଷ୍ଣ ହାତମାଡ଼ି ବଳଦ ଭଳି ଟାଣୁଛନ୍ତି । ଗଉଡ଼ ଟୋକାଏ ପଛରୁ ତାଳିମାରି ଚାଲିଛନ୍ତି । ଏମିତି ଚାଲିଛି ଗାଡ଼ି ଖେଳ । ଶ୍ୟାମସୁନ୍ଦର ତ ଭାରି ଦୁଷ୍ଟ । ତାଙ୍କ ମନକୁ କିଛି ନା କିଛି ନୂଆ କଥା ଚିକ ଆସେ । ସାମନାରେ ଦୁଇଟି ଯାଆଁଳା ଅର୍ଜୁନ ଗଛ । ସେମାନଙ୍କ କାଣ୍ଡପାଖରେ ଠାଏ କେରେ ଏକାଭଳି ଲଗାଲଗି ଦୁଇଟି ଶାଖା । ମଝିରେ କିଛି ଫାଙ୍କ । ଶ୍ରୀକୃଷ୍ଣ କଡ଼େଇ ନ ଯାଇ ସେ ଗଛ ଦୁଇଟି ମଝିରେ ସେଇ ବୃକ୍ଷ ଦୁଇଟିକୁ ସ୍ପର୍ଶ ଦେଇ କୃତାର୍ଥ କରିବାକୁ ଗଳି ଚାଲିଗଲେ । ନିଜେ ସିନା ଚାଲିଗଲେ, ଅଣ୍ଟା ଦଉଡ଼ିରେ ବନ୍ଧା ଉଦୁଖଳ ତେରଛେଇ ଯାଇ ଗଛ ସନ୍ଧିରେ ଲାଗି ରହିଲା ।"

ଗାଡ଼ି ଅଟକି ଗଲା । ବୃଷଭ ହୋଇଥିବା ବନମାଳୀଙ୍କର ଏହାଠୁଁ ବଳି ଆଉ କ'ଣ ଅପମାନ ଅଛି ଏଠାରେ ! ପିଲାଏ ତାଳିମାରିବେ 'ଅଳସୁଆ ବଳଦ, ଦେଖ ପୁଣି ରହିଗଲା ।' ସେଇ ହେତୁରୁ ସେ ପୂରା ବଳ ଖଟେଇ ଟାଣିବାକୁ ଲାଗିଲେ । ତା'ପରେ ଆଉ କ'ଣ ? ଶ୍ରୀକୃଷ୍ଣ ଯାହାକୁ ଟାଣିବେ, ସେ ପୁଣି ରହିବ ? ଶ୍ରୀକୃଷ୍ଣ ବଳ ଲଗେଇ ଟାଣିବା ମାତ୍ରକେ ଅର୍ଜୁନ ଗଛ ଦୁଇଟି କଡ଼ମଡ଼ ଶବ୍ଦ କରି ଭୂମିରେ ଲୋଟିପଡ଼ିଲେ । ସେମାନେ ମୂଳ ସହିତ ଉପୁଡ଼ି ପଡ଼ିଲେ । ଶାଖା ପ୍ରଶାଖା ଭାଙ୍ଗି ଗଲା । ପତ୍ର ଲୋଟେଇ ପଡ଼ିଲେ । ସେମାନଙ୍କର ଉପୁଡ଼ି ପଡ଼ିବା ଶବ୍ଦରେ ସାରା ବ୍ରଜଭୂମି କମ୍ପିଗଲା । ପଛରେ ଆସୁଥିବା ପିଲାଏ ଡରିଗଲେ । ଶ୍ରୀକୃଷ୍ଣ ସେମାନଙ୍କ ମଝିରେ ଠିଆ ହୋଇ ହସୁଥାନ୍ତି । ତାଙ୍କୁ କୌଣସି ଆଘାତ ଲାଗି ନଥିଲା । ଲାଗନ୍ତା ବା କେମିତି ? ସେ ତ ସେ ସବୁଠୁଁ ବାହାର ମଣିଷ । ସେ କୃପାକରି ଗଛ ଦୁଇଟିଙ୍କୁ ଚାହିଁଲା ମାତ୍ରକେ ଭାବି ଥିଲେ—"ଆରେ, ଏମାନେ ତ ଧନପତି କୁବେରଙ୍କ ପୁଅ । ଧନ ଗର୍ବରେ ମତ୍ତ ହୋଇ ଏମାନେ ମୋର ପରମଭକ୍ତ ନାରଦଙ୍କର ଅପମାନ କରିଥିଲେ । ସେ ଏମାନଙ୍କର କଲ୍ୟାଣ କରିବା ନିମନ୍ତେ ଅଭିଶାପ ଦେଇ ବୃକ୍ଷ ଯୋନିକୁ ପଠାଇ ଦେଇଛନ୍ତି । ଅନେକ ଅନୁନୟ ବିନୟ କଲାରୁ ମୋ'ଦ୍ୱାରା ଉଦ୍ଧାର ପାଇବେ ବୋଲି କହିଛନ୍ତି । ଦେବର୍ଷି ନାରଦ ମୋର ଅନୁଗତ । ଭାଗବତ ପୁରୁଷମାନଙ୍କ ମଧ୍ୟରେ ସେ ସର୍ବଶ୍ରେଷ୍ଠ । ମୋର ପରମଭକ୍ତ । ତେଣୁ ତାଙ୍କ କଥାର, ସତ୍ୟରକ୍ଷା କରି ଲୋକପାଳ କୁବେରଙ୍କର ପୁତ୍ରମାନଙ୍କର ଉଦ୍ଧାର କରିବି ।" ଏହା ଭାବି ଭଗବାନ ସେଇ ବୃକ୍ଷ ଦୁଇଟିର ମଝି ଦେଇ ଗଲେ ଏବଂ

ସଙ୍କଳ୍ପ କରି ସେମାନଙ୍କୁ ଉପାଡ଼ି ଦେଲେ । ନ ହେଲେ ଏତେ ବଡ଼ ବଡ଼ ଦୁଇଟି ବୃକ୍ଷ ଏଡ଼େ ବକଟେ ପିଲା ଅଣ୍ଟାରେ ବନ୍ଧା ଡୋରରେ ଟାଣି ହୋଇ ଟଳି ପଡ଼ନ୍ତେ ?"

ସେହି ଗଛମାନେ ଟଳି ପଡ଼ିବା ମାତ୍ରକେ ସେମାନଙ୍କ ଭିତରୁ ଅଗ୍ନି ଭଳି ପ୍ରକାଶବନ୍ତ ପରମ ତେଜସ୍ୱୀ ଦୁଇଜଣ ଦେବକୁମାର ବାହାରି ଆସିଲେ । ସେ ଦୁଇ ସିଦ୍ଧ ପୁରୁଷ ସେମାନଙ୍କର ଦିବ୍ୟକାନ୍ତି ଦ୍ୱାରା ଚତୁର୍ଦ୍ଦିଗ ଆଲୋକିତ କରୁଥିଲେ ଓ ସେମାନଙ୍କ ତେଜ ସୂର୍ଯ୍ୟଙ୍କଠାରୁ ଉଜ୍ଜ୍ୱଳ ମନେ ହେଉଥିଲା । ସେହି ମଳହୀନ ଦେବକୁମାରମାନେ ଚରାଚର ଜଗତର ଏକମାତ୍ର ସ୍ୱାମୀ ସଚ୍ଚିଦାନନ୍ଦ ଘନ ସ୍ୱରୂପ, ସୌନ୍ଦର୍ଯ୍ୟ-ବିଗ୍ରହ-ରସ-ରୂପ ଶ୍ରୀକୃଷ୍ଣ-ଚନ୍ଦ୍ରଙ୍କର ପାଦପଦ୍ମରେ ପ୍ରଣାମ କରି ଗଦଗଦ କଣ୍ଠରେ ସ୍ତୁତି କରିବାକୁ ଲାଗିଲେ ।

ସୂତ କହୁଛନ୍ତି—"ହେ ମୁନିଗଣ ! କୁବେର ପୁତ୍ର ନଳକୁବର ଓ ମଣିଗ୍ରୀବ ଭଗବାନଙ୍କର ଦିବ୍ୟ ସ୍ତୁତି କରିବାକୁ ଲାଗିଲେ । ତା'ର ବର୍ଣ୍ଣନା ମୁଁ ପରେ କରିବି । ସେମାନେ ହାତ ଯୋଡ଼ି ବିନୀତ ଭାବରେ ଭଗବାନଙ୍କର ସ୍ତୁତି କଲାବେଳେ ସେ ସରଳ ବାଳକ ଭଳି ସେମାନଙ୍କୁ ଚାହିଁ ରହିଥିଲେ ।"

ଦୁଇ ଭାଇ ସାଷ୍ଟାଙ୍ଗ ପ୍ରଣାମ କରି ସ୍ତୁତି ପରେ କହିଲେ—"ହେ ସର୍ବେଶ୍ୱର ! ଆପଣ ସର୍ବଜ୍ଞ । ସବୁ ଜାଣନ୍ତି । ଆମେ ଗୁହ୍ୟକ ଓ ଯକ୍ଷଙ୍କର ଅଧିପତି ଲୋକପାଳ କୁବେରଙ୍କର ନଳକୁବର ଓ ମଣିଗ୍ରୀବ ନାମକ ଦୁଇ ପୁତ୍ର ବୋଲି ଆପଣ ଜାଣନ୍ତି । ଆପଣ ଆମକୁ ଆପଣଙ୍କର ଅନୁଗତ ସେବକ ବୋଲି ମନେ କରନ୍ତୁ । ଆମେମାନେ ସବୁବେଳେ ଧନଗର୍ବରେ ଭୋଳ ହୋଇ ରହିଥାଉ । ଆପଣ ତ ଅକିଞ୍ଚନଙ୍କୁ ଗୋଚର ହୁଅନ୍ତି । ଆମଭଳି ଅଭିମାନୀ କେଉଁଭଳି ଭାବରେ ଆପଣଙ୍କର ଦର୍ଶନ ଲାଭ କରିବୁ । ଏହା ଦେବର୍ଷି ନାରଦଙ୍କର କୃପା ଯେ, ଆମେ ଆଜି ଆପଣଙ୍କର ଦର୍ଶନ ପାଉଛୁଁ । ସେ ପରୋପକାରୀ ସନ୍ଥ ଆମ ଉପରେ କୃପା କରି ନ ଥିଲେ ଆମେ ଆପଣଙ୍କର ଦେବଦୁର୍ଲ୍ଲଭ ଦର୍ଶନ କଦାପି ପାଇ ନ ଥାନ୍ତୁ । ଆପଣ ଆମକୁ ନିଜ କ୍ଷେତ୍ରକୁ ଯିବାକୁ ଅନୁମତି ଦିଅନ୍ତୁ ।"

ଭଗବାନ ପ୍ରସନ୍ନ ହୋଇ କହିଲେ—"ଯିବା ପୂର୍ବରୁ ଇଚ୍ଛାମତେ ବରମାଗି ନିଅ ।"

ଦୁଇ ଭାଇ କହିଲେ—"ଭଗବାନ ! ଏ ବିଷୟ ସଂସାର ତ ପ୍ରାଣୀକୁ ଆପଣଙ୍କଠାରୁ ଦୂରେଇ ନିଏ । ଆମେ ଆପଣଙ୍କଠାରୁ ଐଶ୍ୱର୍ଯ୍ୟ ଓ ବିଷୟ ଭୋଗର କାମନା କାହିଁକି କରିବୁ ! ଆପଣଙ୍କର ଦର୍ଶନ ପାଇ ଆମେ ସବୁକିଛି ପାଇ ଯାଇଛୁଁ ।"

ଭଗବାନ କହିଲେ—"ଠିକ୍ ଅଛି, ଯଶ ଐଶ୍ୱର୍ଯ୍ୟ ନ ମାଗିବ ଯଦି ନାହିଁ ଆଉ ଯାହା ଇଚ୍ଛା ତାହା ମାଗି ନିଅ ।"

ଏହା ଶୁଣି ନଳକୁବର ଓ ମଣିଗ୍ରୀବ କହିଲେ—"ହେ ଅଶରଣ ଶରଣ, ହେ ଭକ୍ତ ବତ୍ସଳ, ହେ କାରଣ ରହିତ କୃପାଳୁ, ହେ ସ୍ୱାମୀ ! ଆପଣ ଆମକୁ ସେହି ବର ଦିଅନ୍ତୁ ଯେପରି

ଆମର ଜିହ୍ୱା କେବଳ ଆପଣଙ୍କର ପ୍ରଶସ୍ତି ଗାନ କରୁଥିବ । ଅନ୍ୟର ଗୁଣ ଦୋଷ ବଖାଣ କରିବ ନାହିଁ । ଆମ କାନ ଆପଣଙ୍କର ଲୀଳା କଥା ସଦା ଶୁଣୁଥାଉ । ଆମ ହାତ ଆପଣଙ୍କର ପାଦ ସେବାରେ ନିୟୋଜିତ ହୋଇ ରହୁଥାଉ । ଆମର ମନ ମଧୁପ ସର୍ବଦା ଆପଣଙ୍କର ଅରୁଣବର୍ଣ୍ଣୀ ଚରଣ କମଳର ମକରନ୍ଦ ପାନ କରୁଥାଉ । ଆମର ମସ୍ତକ ସର୍ବଦା ଆପଣଙ୍କର ସଦନ ସ୍ୱରୂପ ସଂସାରର ସେବାରେ ନତ ହୋଇ ଥାଉ । ନେତ୍ର ସର୍ବଦା ଆପଣଙ୍କର ଶ୍ରୀ ବିଗ୍ରହ ଓ ସାଧୁ ସନ୍ଥଙ୍କର ଦର୍ଶନ ଲାଭ କରୁଥାନ୍ତୁ । ଆପଣଙ୍କର ଅଚଳ ରୂପ ପ୍ରତିମା ଆଦି ଏବଂ ଚଳରୂପ ସାଧୁ ସନ୍ଥଙ୍କ ଛଡ଼ା ଆମ ଦୃଷ୍ଟିରେ ଆଉ କେହି ନ ପଡ଼ନ୍ତୁ । ହେ ସର୍ବେଶ୍ୱର ! ଆପଣ ଆମକୁ କୃପାକରି ଏହି ବର ପ୍ରଦାନ କରନ୍ତୁ ।"

ଶ୍ରୀ ସୂତ କହୁଛନ୍ତି—"ଯେତେବେଳେ ଧନପତି କୁବେରଙ୍କର ପୁତ୍ରମାନେ ପ୍ରଭୁଙ୍କର ପବିତ୍ର ପାଦପଦ୍ମରେ ପ୍ରଣିପାତ କରି ସେଭଳି ପ୍ରାର୍ଥନା କଲେ, ସେତେବେଳେ ପ୍ରାଣୀମାତ୍ରଙ୍କର ପ୍ରେମାସ୍ପଦ ପରେଶ ପ୍ରସନ୍ନ ହୋଇ ସେହିଭଳି ଡୋରରେ ବନ୍ଧା ହୋଇଥିବା ଅବସ୍ଥାରେ ହସି ହସି କହିଲେ—'ମୁଁ ତୁମମାନଙ୍କର ଏସବୁ କଥା ପୂର୍ବରୁ ଜାଣିଛି । ତୁମେମାନେ ଧନଗର୍ବରେ ଦୃଷ୍ଟିହୀନ ହୋଇ ପଡ଼ିଥିଲ । ସେତେବେଳେ ତୁମ ଉପରେ ଦୟାକରି ପରମ କାରୁଣିକ, ମୋର ପ୍ରିୟ ଭକ୍ତ ଦେବର୍ଷି ନାରଦ ତୁମମାନଙ୍କୁ ଅଭିଶାପ ଦେଲେ । ତାଙ୍କର ଅଭିଶାପ କ୍ରୋଧ ଜନିତ ଆବେଗମାତ୍ର ନ ଥିଲା । ସେଥିରେ ତୁମମାନଙ୍କର ମଙ୍ଗଳ ନିହିତ ହୋଇ ରହିଥିଲା । ତୁମ ଉପରେ ଐଶ୍ୱର୍ଯ୍ୟର ଅହଙ୍କାରର ପ୍ରଭାବ ଜଗୁରଭଳି ରହିଥିଲା । ଧନର ଗର୍ବ ବାତୁଳ ମାତ୍ର ; କିନ୍ତୁ ସେଥିରେ ମାତିଯାଇ ଏଣୁତେଣୁ ଅଶାଳୀନ କଥା କହୁଥିଲ । ଦେବର୍ଷି ନାରଦ ତ ସଂସାର ରୋଗର ସୁନିପୁଣ ଚିକିତ୍ସକ । ସେ ତୁମର ଉଚିତ ଚିକିତ୍ସା କରି ଦରିଦ୍ରତାରୂପୀ ଔଷଧ ଦେଇ ତୁମକୁ ଗର୍ବରହିତ କରି ଦେଇଛନ୍ତି । ଏହା ତାଙ୍କ ଗୁଣର ଅନୁରୂପ । କାରଣ ସାଧୁମାନଙ୍କର ଦର୍ଶନ ମାତ୍ରକେ ସଂସାର ବନ୍ଧନ ରହେନାହିଁ । ଭାବ ଦେଖ ଅନ୍ଧାରରେ କିଛି ଦେଖାଯାଏ ନାହିଁ କାରଣ ନେତ୍ରକୁ ସୂର୍ଯ୍ୟ ହିଁ ଜ୍ୟୋତି ପ୍ରଦାନ କରନ୍ତି । ସେ ଜଗତକୁ ମଧ୍ୟ ଆଲୋକ ଦାନ କରିଥାନ୍ତି । ତାହା ସହିତ ଆଖିକୁ ଦେଖିବାର ଶକ୍ତି ମଧ୍ୟ ଦେଇଥାନ୍ତି । ସେପରି ଯା'ର ହୃଦୟ ସଦାସର୍ବଦା ମୋ ଚିନ୍ତାରେ ଲାଗି ରହିଥାଏ, ସେହି ସାଧୁ ସନ୍ଥମାନଙ୍କର ଦର୍ଶନ କରିବା ମନୁଷ୍ୟର ଅଜ୍ଞାନ ଅନ୍ଧକାର ଦୂର ହୋଇ ମୋର ପରମ ଜ୍ୟୋତିରେ ଆଲୋକିତ ହୋଇଯାଏ ।"

ଉଭୟ ଭାଇ ଲଜ୍ଜିତ ହୋଇ କହିଲେ—"ପ୍ରଭୁ ! ଆମେ ଦେବର୍ଷି ନାରଦଙ୍କ ପ୍ରତି ଅଭଦ୍ର ବ୍ୟବହାର କରିଛୁଁ । ମାତ୍ର ସେ କୃପାସାଗର ଆମପ୍ରତି ଅହେତୁକୀ କୃପା କରିଛନ୍ତି । ସେହି କୃପା ବଳରେ ଆଜି ଆମେ ଆପଣଙ୍କର ଦୁର୍ଲଭ ଦର୍ଶନ ଲାଭ କଲୁଁ । ହେ ପ୍ରଭୁ, ଆମର କର୍ତ୍ତବ୍ୟ କ'ଣ ଆଦେଶ କରନ୍ତୁ ।"

ଭଗବାନ କହିଲେ—"ଯେ କୌଣସି ପ୍ରାଣୀ ସାଧୁସନ୍ଥଙ୍କର ଆଗକୁ ଆସିଲେ ତା'ର ଉଦ୍ଧାର ସୁନିଶ୍ଚିତ । ସନ୍ଥମାନଙ୍କର ସମାଗମ; ରାଗ, ଦ୍ୱେଷ, କ୍ରୋଧ, ସଦ୍‌ଭାବନା ଦୁର୍ଭାବନା ଯେ କୌଣସି ପ୍ରକାର ହେଉ ପଛକେ ପ୍ରାଣୀର ଉଦ୍ଧାର ଅବଶ୍ୟ ହେବ, ଏଥିରେ ସନ୍ଦେହ ନାହିଁ । ଏବେ ତୁମେ ମୋ'ଠାରେ ମନ ଲଗେଇ ସୁଖରେ ରହ ।"

ଏହାଶୁଣି ଦୁଇ ଭାଇ କହିଲେ—"ପ୍ରଭୁ ! ସେ ଘରେ ତ କେବଳମାତ୍ର ବନ୍ଧନ ହିଁ ବନ୍ଧନ ଅଛି । ଆମକୁ ସେଠାରେ ପୁଣି ଗର୍ବ ଗ୍ରାସ କରିବ ଏବଂ ଆମେ ମଦୋନ୍ମତ୍ତ ହୋଇଯିବୁ ।"

ଭଗବାନ ସ୍ନେହରେ କହିଲେ—"ନା ସେପରି ହେବ ନାହିଁ । ଯାହା ଉପରେ ମୋର ଥରେ କୃପା ହେଲା ସେ ସବୁ କାଳ ପାଇଁ ବିଷୟ ବନ୍ଧନରୁ ମୁକ୍ତ ହୋଇଗଲା । ତୁମକୁ ତ ମୋର ସଂସାର ବନ୍ଧନ ବିମୋଚନକାରୀ ପରମ ସ୍ନେହ ପାଇ ସାରିଛ ।"

ସୂତ କହୁଛନ୍ତି—"ହେ ମୁନିଗଣ ! ଭଗବାନଙ୍କ ମୁଖରୁ ଏଭଳି କଥା ଶୁଣି ସେ ଦୁଇ ଭାଇ ଅତି ଆନନ୍ଦିତ ହେଲେ ଏବଂ ଉଦୁଖଳରେ ବନ୍ଧା ହୋଇ ରହିଥିବା ଶ୍ରୀକୃଷ୍ଣ ଚନ୍ଦ୍ରଙ୍କର ପାଦପଦ୍ମରେ ବାରମ୍ବାର ପ୍ରଣାମ କରି ତାଙ୍କର ଆଜ୍ଞା ନେଇ ସେମାନଙ୍କର ପିତାଙ୍କର ଦିଗ ଉତ୍ତରଖଣ୍ଡକୁ ପ୍ରସ୍ଥାନ କଲେ । ମୁଁ ଆପଣମାନଙ୍କୁ ଅତି ସଂକ୍ଷେପରେ କୁବେର ପୁତ୍ର ନଳକୁବର ଓ ମଣିଗ୍ରୀବର ଶାପୋଦ୍ଧାରର କଥା ଶୁଣାଇଲି । ଆପଣମାନେ ଆଉ କିଛି ପଚାରିବାକୁ ଇଚ୍ଛା କରୁଥିଲେ କହନ୍ତୁ ।"

ଶୌନକ ପଚାରିଲେ—"ହେ ସୂତ ! ନଳକୁବର ଓ ମଣିଗ୍ରୀବ ନାରଦଙ୍କ ନିକଟରେ କିଭଳି ଅପରାଧ କରିଥିଲେ ! ସେ ଏ ଦୁଇ ଭାଇଙ୍କୁ କାହିଁକି ଅଭିଶାପ ଦେଲେ କୃପା କରି ଆମକୁ କହିବା ହୁଅନ୍ତୁ !"

ସୂତ କହିଲେ—"ଆପଣ ଉଚିତ କହିଛନ୍ତି । ମୁଁ ଆପଣଙ୍କୁ ତାହାହିଁ କହୁଛି, ମନ ଦେଇ ଶୁଣିବା ହୁଅନ୍ତୁ ।"

## ଛପୟ

ଟୁଟତ ତରୁ ଅତି ସୁଧିର ଦେବସୁତ ପ୍ରକଟ ଭୟେ ତହିଁ ।
କରତ ପ୍ରକାଶିତ ଦଶନ ନମ୍ର ହେଁ ଆୟେ ହରି ଜହିଁ ॥
ନଳକୁବର ମଣିଗ୍ରୀବ ଧନଦ ସୁତ ବୁଦ୍ଧି ଗଁବାଇ ।
ପାୟେ ନାରଦ ଶାପ ଭୟେ ତରୁ ଦୋଉ ଭାଇ ॥
କୃଷ୍ଣ ଦରଶ ତେଂ ଦୁଃଖ କଟେ, ବିଷୟ ବାସନା ହୂ ଜରୀ ।
ତନୁ ପୁଲକିତ ଗଦଗଦ ଗିରା, ଦାମୋଦର ବିନତୀ କରି ॥

# ନଳକୁବର ଓ ମଣିଗ୍ରୀବଙ୍କ ଅଭିଶାପ କଥା

କଥ୍ୟତାଂ ଭଗବନ୍ନେତତ୍ତୟୋ ଶାପସ୍ୟ କାରଣମ୍ ।
ଯତ୍ତଦ୍ ବିଗର୍ହିତଂ କର୍ମ ଯେନ ବା ଦେବର୍ଷେସ୍ତମଃ ॥

(ଶ୍ରୀ ଭା ୧୦ ସ୍କ, ୧୦ ଅ, ୧ ଶ୍ଳୋକ)

ଛପ୍ପୟ

ପ୍ରଭୁ ପ୍ରସନ୍ନ ହୈ ପରମ ପ୍ରେମ ଦୁର୍ଲଭ ବର ଦୀନ୍ହୋ ।
ଅମ୍ବୁସୁ ହରି ଜୀ ପାଇ ଗମନ ନିଜପୁର ତବ କୀନ୍ହୋ ॥
ପୂଛେଁ ଶୌନକ—ସୂତ ! ଧନଦ ସୁତ କା ଅଘ କୀୟୋ ।
ଜ୍ୟୌଁ ମୁନି ନାରଦ ଶାପ ବୃକ୍ଷ ବନିବେ କୋ ଦୀୟୋ ॥
ହଁସିକେ ବୋଲେ ସୂତ ଜୀ, ଭଗବନ ଧନମଦ ଅତି ବିକଟ ॥
ତିହି ମଦନହୁଁ ମଦମତ୍ତ ବନି, ବିହରହିଁ ତୋଉ ସର ନିକଟ ॥

ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରୁଛନ୍ତି—"ହେ ଭଗବାନ ! ଆପଣତ ଆମକୁ କୃପା କରି ନଳକୁବର ଓ ମଣିଗ୍ରୀବଙ୍କ କଥା କହିଲେ ମାତ୍ର ସେମାନେ ସେଭଳି କେଉଁ ନିନ୍ଦିତ କର୍ମ କରିଥିଲେ, ଯେଉଁ କାରଣରୁ ଦେବର୍ଷି ନାରଦ ସେମାନଙ୍କ ଉପରେ କୋପ କଲେ, କହିବା ହୁଅନ୍ତୁ ।"

ଅନେକ ଜିନିଷ ଏଭଳି ଅଛନ୍ତି ଯାହା ପାଇଲେ କେବଳ ମାତ୍ର ଗୋଟାଏ ଇନ୍ଦ୍ରିୟ ସୁଖ ସାଧିତ ହୋଇଥାଏ ; ମାତ୍ର ଧନ ଏଭଳି ଏକ ବସ୍ତୁ ଯାହା ପାଇଲେ ଯେ କୌଣସି ଇନ୍ଦ୍ରିୟ ସୁଖ ପାଇଁ ସାମଗ୍ରୀର ବ୍ୟବସ୍ଥା କରାଯାଇ ପାରିବ । କିଛି ସମୟ ମଧ୍ୟରେ ମଦନିଶା ଉତ୍ତରି ଯିବ । ଉଚ୍ଚ ଜାତିର ଅଭିମାନ ମଧ୍ୟ ରହିବ ନାହିଁ । ବିଦ୍ୟାର ଅହଂକାର, ଅଧିକାରର ଗର୍ବ ଏ ସବୁ ମନିଷକୁ ସଦାଚାରରୁ ହଟେଇଦେଇ ପାରନ୍ତି; ମାତ୍ର ଧନର ଗର୍ବ ସବୁଠାରୁ ଅଧିକ ଭୟଙ୍କର । ଧନ ଗର୍ବରେ ମନୁଷ୍ୟ ଶୀଳ, ସଙ୍କୋଚ, ସଦାଚାର, କୁଳାଚାର ଓ ସମସ୍ତ ସଦ୍‌ଗୁଣ ହରେଇ ବସେ । ଧନ ସେଭଳି ଖରାପ ନୁହଁ, ମାତ୍ର ଧନର ଗର୍ବ ମାଦକ । ଧନ ପାଇ ଗର୍ବ କରୁ ନ ଥିବା ମଣିଷ ବିରଳ । ଧନୀମାନଙ୍କ ମଧ୍ୟରେ ଅଙ୍ଗୁଳି ଗଣାରେ

ବୁଦ୍ଧିମାନ୍ ପୁରୁଷ କେଉଁଠି ଥିଲେ ଥିବେ ଯେ ଧନ ପାଇ ମଧ୍ୟ ସ୍ତ୍ରୀ, ମଦ, ଜୁଆ ଆଦି ବିଳାସ କରନ୍ତି ନାହିଁ, ନଚେତ୍ ଧନ ବଢ଼ିବା ସାଙ୍ଗରେ ଏ ସବୁ ଧୀରେ ଧୀରେ ପଛରେ ଲାଗିଯାଆନ୍ତି । ଆଉ ଏସବୁ ଲାଗିଲେ ସେଠି ଧନ ବି ଧୀରେ ଧୀରେ ରହେନାହିଁ । ଏ ସବୁ ବ୍ୟସନ ଘୋର ଅନ୍ଧକାର ତଥା ନର୍କକୁ ଟାଣିନିଏ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଆପଣମାନେ ମୋତେ କୁବେର ପୁତ୍ର ନଳକୁବର ଓ ମଣିଗ୍ରୀବର ବୃକ୍ଷ ଯୋନି ପାଇବା ଏବଂ ନାରଦ ତାଙ୍କୁ ଅଭିଶାପ ଦେବାର କାରଣ ପଚାରିଛନ୍ତି । ମୁଁ ତାହା ଆପଣମାନଙ୍କୁ ଶୁଣାଉଛି । ଚାରୋଟି ଦିଗ ଏବଂ ଚାରୋଟି କୋଣ, ଏଭଳି ଆଠୋଟି ଦିଗର ଆଠ ଜଣ ଦିଗପାଳ ଅଛନ୍ତି । ଉତ୍ତର ଦିଗର ଲୋକପାଳ ହେଉଛନ୍ତି ଧନଦ କୁବେର । ସେ ସମସ୍ତ ଦେବତାମାନଙ୍କର ସମ୍ପତ୍ତିର ସ୍ୱାମୀ, ଯକ୍ଷ, ରାକ୍ଷସ, ଗୁହ୍ୟକ ତଥା ରୁଦ୍ରଗଣଙ୍କର ସେ ସ୍ୱାମୀ । ତିନି ଲୋକରେ କୁବେରଙ୍କୁ ବଳି କେହି ଧନଶାଳୀ ନାହାନ୍ତି । ସେ ଦେବତାମାନଙ୍କର ଭଣ୍ଡାର ରକ୍ଷକ । ତାଙ୍କର କୌଣସି କଥାର ଅଭାବ ନାହିଁ । ତାଙ୍କର ନଳକୁବର ଓ ମଣିଗ୍ରୀବ ନାମକ ଦୁଇ ପୁଅ । ଧନୀ ପୁଅମାନେ ସାଧାରଣତଃ ସୁନ୍ଦର ହୋଇ ଥାନ୍ତି; ତା'ପରେ ସେମାନେ ତ ଦେବ ପୁତ୍ର । ଏମାନେ ଅତି ସୁନ୍ଦର ଥିଲେ । ଦେବତାମାନେ କେବେହେଲେ ବୁଢ଼ା ହୁଅନ୍ତି ନାହିଁ । ସବୁବେଳେ ସେମାନେ ଯୁବକ । ତେଣୁ ଦେବତାମାନଙ୍କୁ ନିର୍ଜର ବୋଲି କୁହାଯାଏ । ସେମାନଙ୍କର ଯୌବନ ମଧ୍ୟ ସ୍ଥାୟୀ ଥିଲା । ଯୌବନ, ଧନ ସମ୍ପତ୍ତି, ପ୍ରଭୁତ୍ୱ ଏମାନେ ଜଣେ ଜଣେ ନାନା ଅନର୍ଥର ଭିଆଣ କରିପାରନ୍ତି, ତା ସାଙ୍ଗକୁ ଅବିବେକତା ମିଶିଗଲେ ଆଉ ଅନର୍ଥର କଳନା କରିହୋଇ ପାରିବ ନାହିଁ । ସେଇ ପିଲାଙ୍କ ପାଖରେ ଏହି ଚାରୋଟି କଥା ଥିଲା । ଅବିବେକତା ମଧ୍ୟ ସେମାନଙ୍କୁ ବଶୀଭୂତ କରି ରଖିଥିଲା । ସେମାନେ ଦୁହେଁ ଅତ୍ୟନ୍ତ ବିଳାସୀ ଥିଲେ । ସ୍ୱର୍ଗର ସୁନ୍ଦରୀ ଅପ୍‌ସରାମାନଙ୍କୁ ନେଇ ସବୁବେଳେ ଦେବ ଉଦ୍ୟାନରେ ବିହାର କରୁଥାନ୍ତି । ସୁନ୍ଦର ସରୋବରମାନଙ୍କରେ ଜଳକେଳି କରୁଥାନ୍ତି । ତାଙ୍କ ସହିତ ବାରୁଣୀ ମଦିରା ପାନ କରି ପ୍ରମତ୍ତ ହୋଇ ହସ କୌତୁକରେ ମାତି ରହିଥାନ୍ତି । ଶିବ କୁବେରଙ୍କୁ ଆପଣାର ସଖାଭଳି ଦେଖନ୍ତି । ତେଣୁ ସଖାଙ୍କର ପୁଅ ଭାବରେ ସେ ସେମାନଙ୍କୁ ସେବକ ମନେ କରୁଥିଲେ । ଏ ସବୁ କାରଣରୁ ସେମାନଙ୍କ ଆଖିରେ ସମସ୍ତେ ତୁଚ୍ଛ ଥିଲେ । ସେମାନଙ୍କର ଐଶ୍ୱର୍ଯ୍ୟ ପାଇଁ ବିଶେଷ ଗର୍ବ ଥିଲା ।

ଦିନେ ଏମାନେ ସୁନ୍ଦରୀ ଅପସରାମାନଙ୍କ ସହିତ ବନବିହାର କରୁଥିଲେ । ସେମାନେ ବିଭ୍ରାଜକ, ଚୈତ୍ରରଥ, ନନ୍ଦନକାନନାଦିରେ ବିହାର କରିବାକୁ ଲାଗିଲେ । ସେମାନେ ଦୁହେଁ ଅତିବେଶି ବାରୁଣୀ ମଦିରା ପାନ କରିଥିଲେ । ତାହା ସହିତ ଅପ୍‌ସରାମାନଙ୍କୁ ମଧ୍ୟ ପିଆଇ ଥିଲେ । ସେମାନଙ୍କର ହିତାହିତ ଜ୍ଞାନ ନ ଥିଲା ଏବଂ ଶରୀର ମଧ୍ୟ ଅାୟତ୍ତାଧୀନ ନ ଥିଲା । ମଦ ହେତୁ ସେମାନଙ୍କର କାମାଗ୍ନି ପ୍ରଜ୍ୱଳିତ ହୋଇ ମନ ଯେତେବେଳେ କାମର

ଅଧୀନ ହୋଇଯାଏ ଓ ଯଦି ସେତେବେଳେ ପାଖରେ କାମିନୀ ଥାଏ, ତା'ହେଲେ ସେ ନିନ୍ଦିତ କାର୍ଯ୍ୟ କରିବାକୁ ମଧ୍ୟ ପଛାଏ ନାହିଁ । ସେହି କୁବେର ପୁତ୍ରମାନେ ଅପ୍‌ସରାମାନଙ୍କୁ ସମ୍ପୂର୍ଣ୍ଣ ଉଲଗ୍ନ କରି ଦେଇଥିଲେ । ସେମାନେ ନିଜେ ମଧ୍ୟ ଉଲଗ୍ନ ଅବସ୍ଥାରେ ରହିଥିଲେ । ମଦନିଶା ହେତୁ ସେମାନଙ୍କର କୌଣସି ପ୍ରକାର ଶୀଲ ସଙ୍କୋଚ ନ ଥିଲା । ସେମାନଙ୍କ ଆଖି ଢଳଢଳ ହେଉଥିଲା । ଦୁହେଁ ନିଶାରେ ଉନ୍ମତ୍ତ ହୋଇ କୈଳାସର ପରମ ରମଣୀୟ ବନରେ ଏଣେତେଣେ ଘୂରିବାକୁ ଲାଗିଲେ । ଉଲଗ୍ନ ଅପ୍‌ସରାମାନେ ଗୀତ ବାଦ୍ୟ ସହିତ ତାଳ ମିଳେଇ ନାଚ ଯାଉଥିଲେ । ଏ ଦୁଇ ଭାଇ ନିଶାଖେଳରେ ସେମାନଙ୍କ ସାଙ୍ଗରେ ଖିଲ୍ ଖିଲ୍ ହୋଇ ହସୁଥିଲେ । ସେ ପୁଷ୍ପିତ ବନ ଅତ୍ୟନ୍ତ ସୁନ୍ଦର ମନେହେଉଥିଲା । ସେଠାରେ ବସନ୍ତ ସଦାନିବାସ କରୁଥିଲା । କଳକଳନାଦିନୀ ପୁଣ୍ୟତୋୟା ବିଷ୍ଣୁପାଦାବ୍‌ଜସମ୍ଭୂତା ଗଙ୍ଗାଙ୍କର ସେଇ ତଟ । ଭଗବାନ ଚନ୍ଦ୍ରଶେଖରଙ୍କର ଜଟାଜୁଟରୁ ବାହାରି ଭଗବତୀ ତ୍ରିପଥଗା ସେଇଠାରୁ ପୃଥ୍ୱୀ, ପାତାଳ ଓ ସ୍ୱର୍ଗକୁ ଯାଇଛନ୍ତି । କୌଣସି କୌଣସି କ୍ଷେତ୍ରରେ କୈଳାସରେ ରହି ଉପତ୍ୟକାରେ ହ୍ରଦଭଳି ହୋଇଛନ୍ତି । ସୁନ୍ଦର ସୁନ୍ଦର ପଦ୍ମବଣରେ ସେହି ହ୍ରଦ ଶୋଭା ପାଉଛନ୍ତି । ସେଇ ଯକ୍ଷାଧିପ କୁବେରଙ୍କ ପୁତ୍ରମାନେ ସେଇଭଳି ଏକ ହ୍ରଦକୁ ପଦ୍ମଫୁଲ ଆଣିବାକୁ ପଶିଲେ । ଅପ୍‌ସରାମାନେ ମଧ୍ୟ ତାଙ୍କର ପଛେ ପଛେ ଗଲେ । ଜଳ ମଧ୍ୟରେ ବରୁଣ ଦେବତାଙ୍କର ନିବାସ । ସେଠାରେ ସେଇ କାମମୋହିତ ଅପ୍‌ସରା ଓ କୁବେର ପୁତ୍ରମାନେ ପ୍ରବେଶ କରି ଜଳକ୍ରୀଡ଼ା କରିବାକୁ ଲାଗିଲେ । ଦୁଇ ଭାଇ ଅଞ୍ଜୁଳା ଅଞ୍ଜୁଳା ପାଣି ନେଇ ସେଇ ଅପ୍‌ସରାମାନଙ୍କୁ ଗାଧୋଇ ଦେବାକୁ ଲାଗିଲେ । ସେମାନେ ଲଜ୍ଜାଭାବ ଦେଖେଇ ଏଣେ ତେଣେ ଯିବାକୁ ବସିଲେ ସେମାନଙ୍କୁ ଧରି ସେମାନେ ଆଲିଙ୍ଗନାବଦ୍ଧ କରି ନେଉଥିଲେ । ସେତେବେଳେ ଅପ୍‌ସରାମାନେ ମଧ୍ୟ ପାଣି ଛାଟିବା ଆରମ୍ଭ କରି ଦେଉଥିଲେ । ଏପରି ଭାବରେ ଅନେକବେଳ ଧରି ସେପରି ଜଳକ୍ରୀଡ଼ା ଚାଲିଲା । ସଂଯୋଗ ବା ଦୁର୍ଯୋଗ ଯାହା ହେଉ ସେଇ ବାଟରେ ବୀଣା ବଜେଇ ହରିଗୁଣ ଗାନ କରି ଦେବର୍ଷି ନାରଦ ଯାଉଥିଲେ ।

ସେମିତି ନାରଦ କୁଆଡ଼େ ହେଲେ ଦେଖନ୍ତି ନାହିଁ ! ଏହାତ ସଂସାର । ଏଠାରେ ସବୁ ପ୍ରକାର ପ୍ରାଣୀ ଅଛନ୍ତି । ସମସ୍ତେ ଆପଣା ଆପଣାର ସଂସ୍କାର ଓ ସ୍ୱଭାବରେ ବନ୍ଧା । କହିଲେ କିଏ ବା ମାନୁଛି । ବଡ଼ ବଡ଼ ସାଧକ ଇଚ୍ଛା ନ ଥିଲେ ମଧ୍ୟ ପୂର୍ବ ସଂସ୍କାରର ବଶବର୍ତ୍ତୀ ହୋଇ ବିଷୟ ବାସନାରେ ବୁଡ଼ିଯାଆନ୍ତି । ଦେବଯୋନି ତ ଭୋଗ ଯୋନି । ଇନ୍ଦ୍ରିୟମାନଙ୍କୁ ତୃପ୍ତ କରିବା ହିଁ ଏକମାତ୍ର ଉଦ୍ଦେଶ୍ୟ । ନାରଦଙ୍କ ଦୃଷ୍ଟି ସେମାନଙ୍କ ଉପରେ ପଡ଼ିଲା । ସର୍ବାନ୍ତର୍ଯାମୀ ନାରଦ ସେମାନଙ୍କୁ ଦେଖିବାମାତ୍ରକେ ଚିହ୍ନିଗଲେ । ଶିବଙ୍କର ସଭାରେ ସେ ସେମାନଙ୍କୁ କୁବେରଙ୍କ ସହିତ ବହୁବାର ଦେଖିଛନ୍ତି । ସେମାନଙ୍କର ପିତା ନାରଦଙ୍କୁ ଦେଖିବାମାତ୍ରକେ ଆସନ ଛାଡ଼ି ଏମାନଙ୍କୁ ନାରଦଙ୍କର ପଦ

ବନ୍ଦନା କରନ୍ତି । ଏମାନେ କେବେ କେବେ ଦେଖିଲେ ମଧ୍ୟ ଦେବର୍ଷିଙ୍କର ଚରଣ ବନ୍ଦନା କରିଥାନ୍ତି । ଆଜି ନାରଦ ଦେଖିଲେ ସେମାନେ ତାଙ୍କୁ ଦେଖି ହସୁଛନ୍ତି । ପ୍ରଣାମ ନମସ୍କାର ତ ଦୂରର କଥା, ଦେଖି ଲୁଗା ପର୍ଯ୍ୟନ୍ତ ପିନ୍ଧିଲେ ନାହିଁ । ଉଲଗ୍ନ ଅବସ୍ଥାରେ ଲଜ୍ଜା ସଙ୍କୋଚ ତ୍ୟାଗକରି ଏହି ନିର୍ଲଜ ଅପ୍ସରାମାନଙ୍କ ସାଙ୍ଗରେ ବିହାର କରୁଛନ୍ତି । ବାରୁଣୀ ନିଶାରେ ମତୁଆଲା ହୋଇ ରହିଛନ୍ତି । ଐଶ୍ୱର୍ଯ୍ୟ ମଦ ମଧ୍ୟ ଏମାନଙ୍କୁ ଅନ୍ଧ କରି ଦେଇଛି । ଭଲ କଥା, ମୁଁ ଏମାନଙ୍କର ଗର୍ବ ଚୂର୍ଣ୍ଣ କରିବି ।

ସେତେବେଳେ ଯାଏଁ ଅପ୍ସରାମାନେ ନାରଦଙ୍କୁ ଦେଖି ନ ଥିଲେ । ସ୍ତ୍ରୀ କପରି ବି ହୋଇନା କାହିଁକି ତାର କିଛି ନା କିଛି ଲଜ୍ଜା ଅବଶ୍ୟ ଥାଏ । ବେଶ୍ୟାମାନଙ୍କ ପାଖରେ ମଧ୍ୟ ଶୀଳ ସଙ୍କୋଚ ଓ ସ୍ତ୍ରୀ ସୁଲଭ ଲଜ୍ଜା ରହିଥାଏ । ନାରଦଙ୍କୁ ଦେଖିବାମାତ୍ରେ ଦଉଡ଼ି ଯାଇ ସେହି ଅପ୍ସରାମାନେ ନିଜ ନିଜ ଲୁଗାପଟା ଯେମିତି ସେମିତି ପିନ୍ଧିନେଲେ ; କିନ୍ତୁ ନଳକୁବର ଓ ମଣିଗ୍ରୀବର ତ ଐଶ୍ୱର୍ଯ୍ୟ ମଦ ଭରି ରହିଥିଲା । ସେମାନେ ଭାବୁଥିଲେ—"ଏ ଏକତାରିଆ ଭିକାରି ଆମର କ'ଣ କରି ପକେଇବ । ଆମେ ସ୍ୱତନ୍ତ୍ର । ଧନଦ ଲୋକପାଳଙ୍କର ପୁତ୍ର । ଆମର ଯାହା ଇଚ୍ଛା ତାହା କରିବୁ । ନାରଦ ଆମର ଶାସକ ନୁହନ୍ତି ।" ଏଇଆ ଭାବି ସେମାନେ ତାଙ୍କ ଆଗରେ ଉଲଗ୍ନ ହୋଇ ଠିଆ ହୋଇ ରହିଥିଲେ ।

ଉପରେ ବିମାନରେ ଥାଇ ଅନ୍ୟ ଅପ୍ସରାମାନେ ଏହି କାମକ୍ରୀଡ଼ା ଦେଖୁଥିଲେ । ସେମାନଙ୍କ ମନରେ ବି କାମଭାବନା ଜାଗରିତ ହେଉଥିଲା । ଅନେକ ଦେବତା ମଧ୍ୟ ଏହି ଜଳବିହାର ଦେଖି ପ୍ରେମାଭୂତ ହେଉଥିଲେ । କେବଳ ମାତ୍ର ନାରଦ ଚିନ୍ତିତ ଓ ଦୁଃଖିତ ମନେ ହେଉଥିଲେ ।

ଶୌନକ ପଚାରିଲେ—"ହେ ସୂତ ! ନାରଦଙ୍କର ଦୁଃଖ କରିବାର କାରଣ କ'ଣ ! ମହାଭାଗ, ଇଏ ତ ସଂସାର । ଏଠାରେ ଭଲ ମନ୍ଦ ସବୁ ପ୍ରକାର ଜୀବ ଅଛନ୍ତି । କିଏ କେଉଁ କାର୍ଯ୍ୟ କରି ବାସନା ପୂର୍ତ୍ତି କରୁଛି । ନାରଦ ଚୁପ୍‌ଚାପ କୃଷ୍ଣ କୀର୍ତ୍ତନ କରି ତାଙ୍କ ବାଟରେ ଚାଲିଯାଇଥାନ୍ତେ । ତାଙ୍କର ଏ ସବୁ ବିଷୟରେ ଭାବିବାର କି ଆବଶ୍ୟକତା ଥିଲା । ସମସ୍ତେ ତ ନିଜ ନିଜର ସ୍ୱଭାବର ବଶବର୍ତ୍ତୀ ହୋଇ କାମ କରି ଚାଲିଛନ୍ତି ।"

ସୂତ କହିଲେ—"ମହାଭାଗ ! ଏହା ସତ, ପ୍ରାଣୀ ବାଧ୍ୟହୋଇ ସଂସାରର ଅଧୀନ ହୋଇ କାର୍ଯ୍ୟ କରେ । ମାତ୍ର ସନ୍ଥଙ୍କର ବଡ ସ୍ୱଭାବ ହେଲା ପରୋପକାର । ସେମାନେ ପ୍ରାଣୀଙ୍କ ଉପରେ କୃପା ନ କରି ରହି ପାରନ୍ତି ନାହିଁ । ଯେଭଳି ଦୁଷ୍ଟମାନେ ସ୍ୱଭାବତଃ ପରପୀଡ଼କ । ସେମାନଙ୍କର କୌଣସି ସ୍ୱାର୍ଥ ନ ଥିଲେ ମଧ୍ୟ ସେମାନେ ପରକୁ ପୀଡ଼ା ଦେଇ ଆନନ୍ଦ ଲାଭ କରିଥାନ୍ତି । ସେହିଭଳି ପରୋପକାର କରି ସନ୍ଥମାନେ ଆନନ୍ଦ ପାଆନ୍ତି । ଦୀନ ଦୁଃଖୀଙ୍କର ଦୁଃଖ ଦୂର କରିବାରେ, ଭ୍ରମିତ ବ୍ୟକ୍ତିଙ୍କୁ ସୁମାର୍ଗକୁ ଫେରେଇ ଆଣିବାରେ,

ଅନ୍ୟଙ୍କୁ ଉପଦେଶ ଦେବାରେ ସେମାନଙ୍କର ଆନନ୍ଦ । କେଉଁଠାରେ ସେମାନେ ଆନନ୍ଦ ପ୍ରକାଶ କରି କୃପା କରନ୍ତି ଆଉ କେଉଁଠାରେ ଅଭିଶାପ ଦେଇ ଅନୁଗ୍ରହ କରନ୍ତି । ସେମାନଙ୍କର ପ୍ରତ୍ୟେକ କଥାରେ ପରହିତ ନିହିତ ହୋଇ ରହିଥାଏ । ସେମାନେ ଯାହାବି କରନ୍ତି ପ୍ରାଣୀମାନଙ୍କର କଲ୍ୟାଣ ନିମନ୍ତେ କରିଥାନ୍ତି ; ତେଣୁ ସେହି କୁବେର ପୁତ୍ରଙ୍କର ଦୁର୍ଦ୍ଦଶା ଦେଖି ତାଙ୍କର ଦୟା ହେଲା । ସେ ବୁଝିଗଲେ, ମଦଦତ୍ତ ଏଇ ଯକ୍ଷମାନଙ୍କୁ ବୁଝେଇ ସୁଝେଇ କୌଣସି ଲାଭନାହିଁ । ଏମାନଙ୍କ ପ୍ରତି ଅଭିଶାପ ଦେଇ କୃପା କରିହେବ ପାରେ । ରୋଗର ଉପଦ୍ରବ ଅଧିକ ବଳବାନ ହୋଇଥିଲେ ଅନୁଭବୀ ବୈଦ୍ୟ ପ୍ରଥମେ ସେହି ଉପଦ୍ରବକୁ ଶାନ୍ତ କରିବାକୁ ଚେଷ୍ଟା କରନ୍ତି । ତା'ପରେ ଧୀରେ ଧୀରେ ଉପଦ୍ରବର କାରଣ ସେଇ ମୂଳ ରୋଗର ଉପଚାର କରନ୍ତି । ତେଣୁ ଏମାନଙ୍କୁ ଅଭିଶାପ ଦେଇ ପ୍ରଥମେ ଏମାନଙ୍କର ଐଶ୍ୱର୍ଯ୍ୟ ମଦକୁ ନଷ୍ଟ କରିବା ଉଚିତ । ଯେତେବେଳେ ଏମାନେ ଐଶ୍ୱର୍ଯ୍ୟହୀନ ହୋଇଯିବେ, ସେତେବେଳେ ଏମାନେ ପ୍ରଭୁ ପ୍ରସାଦର ଅଧିକାରୀ ହେବେ । ଏତେ ବଡ଼ ଲୋକପାଳର ପୁଅ ହୋଇ ଏମାନେ ଏତେ କଳଙ୍କ ହୋଇ ଯାଇଛନ୍ତି । ଏହା ଅତ୍ୟନ୍ତ ଦୁଃଖର କଥା । ଏ ସବୁ ଭାବି ନାରଦ ନିଜେ ନିଜେ ଆକାଶଗୁମ୍ଫ ଦେବତା ଓ ଅପ୍ସରା-ମାନଙ୍କୁ ଶୁଣେଇ ଶୁଣେଇ କହିବାକୁ ଲାଗିଲେ ।

ନାରଦ କହିଲେ—"ମହାମୁନି ଚ୍ୟବନ ଇନ୍ଦ୍ରଙ୍କୁ ମାରିବା ପାଇଁ 'ମଦ' ନାମକ ଏକ ପୁରୁଷଜାତ କରାଇଥିଲେ । ଇନ୍ଦ୍ର ଯେତେବେଳେ ଜାଣିଲେ ଯେ ମୁନି ମୋତେ ମାରିବା ପାଇଁ ମଦକୁ ଜନ୍ମ ଦେଇଛନ୍ତି ସେତେବେଳେ ସେ ମୁନିଙ୍କର ପାଦତଳେ ପଡ଼ି କ୍ଷମା ପ୍ରାର୍ଥନା କରିବାକୁ ଲାଗିଲେ । ସେତେବେଳେ ଇନ୍ଦ୍ରଙ୍କର ପରାମର୍ଶ କ୍ରମେ ସେ ମଦକୁ ବିଭିନ୍ନ ସ୍ଥାନରେ ବାଣ୍ଟି ଦେଲେ । ହାତୀମାନଙ୍କରେ, ସ୍ତ୍ରୀ, ସୁରା, ଧନ, ବିଦ୍ୟା, ଦ୍ୟୁତ ତଥା ଆହୁରି ଅନେକ କଥାରେ ବାଣ୍ଟି ଦେଲେ । ଯୌବନ ମଦ, ଐଶ୍ୱର୍ଯ୍ୟ ମଦ, ବିଦ୍ୟାମଦ, କୁଳମଦ, ସୁରାମଦ, ତଥା ଧନମଦ ଆଦି ଅନେକ 'ମଦ' ହେଲେ । ଏମାନଙ୍କ ମଧ୍ୟରେ ଐଶ୍ୱର୍ଯ୍ୟ ମଦ ଯେତେ ବୁଦ୍ଧି ଭ୍ରଷ୍ଟ କରେ ଆଉ କେହି କରନ୍ତି ନାହିଁ । ଐଶ୍ୱର୍ଯ୍ୟ ମଦରେ ପ୍ରାଣୀ ପର ଆପଣା ଭୁଲିଯାଏ । ହାସ୍ୟାଦି ରଜୋଗୁଣର କାର୍ଯ୍ୟ । ମାତ୍ର ଐଶ୍ୱର୍ଯ୍ୟ ମଦ ହେତୁ ହେଉଥିବା ଅନର୍ଥର କୌଣସି ସୀମା ନାହିଁ । ଐଶ୍ୱର୍ଯ୍ୟ ମଦରେ ସ୍ତ୍ରୀ ସଙ୍ଗ, ଦ୍ୟୁତ ଏବଂ ମଦିରାର ପ୍ରାଧାନ୍ୟ ତ ଅବଶ୍ୟ ରହିଥାଏ । ଯେ ମଦିରାପାନ କରିବ ସେ ମାଂସ ନିଶ୍ଚୟ ଖାଇବ । ମାଂସ ବିନା ହିଂସାରେ କଦାପି ମିଳିବ ନାହିଁ । ଯେଉଁମାନେ ନିଜର ନଶ୍ୱର ଶରୀରର ପୋଷଣ ନିମନ୍ତେ ଅନ୍ୟପ୍ରତି ହିଂସାର ଆଚରଣ କରନ୍ତି ସେ ନିଜ ଶରୀରକୁ ଅଜର ଅମର ମନେ କରିଥାଏ ଓ ତାକୁ ପୁଷ୍ଟ କରିବାକୁ ଅନ୍ୟ ପ୍ରାଣୀକୁ ମାରିବାକୁ ପଛାଏ ନାହିଁ । ଏ ଶରୀର ଯେତେ ବି ସୁନ୍ଦର ହେଉନା କାହିଁକି ଯେତେ କୁଳୀନ ହେଉନା କାହିଁକି ତାର ନିଶ୍ଚୟ ଦିନେ ମୃତ୍ୟୁ ଘଟିବ । ବ୍ରାହ୍ମଣ ହେଉବା ଚଣ୍ଡାଳ ଶରୀର ହେଉ କଳା ହେଉ କି ଗୋରା ହେଉ, ସ୍ତ୍ରୀ ହେଉ ବା ପୁରୁଷ ହେଉ,

କୁଳୀନ ହେଉ ବା ଅକୁଳୀନ, ରୋଗଯୁକ୍ତ ହେଉ ବା ନିରୋଗ; ମରିବା ପରେ ତିନୋଟି ଗତି ହିଁ ପାଇଥାଏ । ନିଆଁରେ ପୋଡ଼ିଦେଲେ ମୁଠାଏ ପାଉଁଶ ହୋଇଯିବ । ପୋତି ଦେଲେ ପୋକ ଲାଗିଯିବେ । ପାଣିରେ ଭସେଇ ଦେଲେ ମାଂସ ଭୋଗୀ ଜଳଜନ୍ତୁ ତାକୁ ଖାଇ ବିଷ୍ଠାରେ ପରିଣତ କରିଦେବେ । ଏଭଳି ନଶ୍ୱର, ଅନିତ୍ୟ ଓ କ୍ଷଣଭଙ୍ଗୁର ଶରୀର ନିମନ୍ତେ ଯେଉଁ ମନୁଷ୍ୟ ପ୍ରାଣୀଙ୍କ ପ୍ରତି ଦ୍ରୋହ ଆଚରଣ କରିଥାଏ ସେ ଆପଣା ହାତରେ ନରକର ମାର୍ଗ ପରିଷ୍କାର କରିଥାଏ । ସେ କ'ଣ ତା'ର ବାସ୍ତବିକ ସ୍ୱାର୍ଥ କ'ଣ ଜାଣେ ?"

ନାରଦ ଏପରି ଭାବରେ ଶୂନ୍ୟକୁ କହି ଶୁଣଉଥିଲେ । କିଛି ଦୂରରେ କୁବେର ପୁତ୍ରମାନଙ୍କର ଅଙ୍ଗରକ୍ଷକ ଯକ୍ଷ ବସିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଆସି ହାତ ଯୋଡ଼ି ନାରଦଙ୍କ ଚରଣରେ ପ୍ରଣାମ କଲା ଏବଂ ଅତ୍ୟନ୍ତ ବିନୀତ ଭାବରେ କହିଲା—"ଭଗବାନ ! ଆପଣ ଏ ଦେହକୁ ଅନିତ୍ୟ ଓ କ୍ଷଣଭଙ୍ଗୁର କହୁଛନ୍ତି । ଏହା ସତ୍ୟ ; ମାତ୍ର ଏ ଶରୀର ଆମକୁ ବଂଶ ପରମ୍ପରାରୁ ପ୍ରାପ୍ତ ହୋଇଛି । ଆମର ମାତା ପିତା ଏ ଶରୀରର ଜନ୍ମଦାତା; ତେଣୁ ଏ ଶରୀର ଉପରେ ସେମାନଙ୍କ ଅଧିକାର ରହିଛି ।

ନାରଦ କହିଲେ—"ପ୍ରଥମେ ଏ କଥାର ଫଇସଲା ହୋଇଯାଉ ଯେ ଏ ଶରୀର ଉପରେ ଅଧିକାର କା'ର ଅଛି । ଯଦି ଅନ୍ନ ମିଳିବ ନାହିଁ ତା'ହେଲେ ଏ ଶରୀର ରହିପାରିବ ନା ବଢ଼ି ପାରିବ । ଯଦି କେବଳ ଅଧିକାର କଥା ଉଠିବ ତା'ହେଲେ କେବଳ ଅନ୍ନଦାତାର ଅଧିକାର ଶରୀର ଉପରେ ରହିବା କଥା । ଅନ୍ନଦାତାକୁ ମଧ୍ୟ ପିତା ବୋଲି କୁହାଯାଇଛି ।"

ଯକ୍ଷ କହିଲା—"ଅନ୍ନ ତ ସମସ୍ତେ ଖାଇବେ ଯଦି ଶରୀର ତିଆରି ହୁଏ । ଶରୀର ତିଆରି କରିବା ଲୋକର ହିଁ ତ କିଛି ଅଧିକାର ରହିବା କଥା ।"

ନାରଦ କହିଲେ—"ଅନ୍ନରୁ ହିଁ ବୀର୍ଯ୍ୟର ତିଆରି ହୋଇଥାଏ । ପୁରୁଷ ନିଜର ପତ୍ନୀର ଯୋନିରେ ବୀର୍ଯ୍ୟର ଆଧାନ କରିଥାଏ; ମାତାର ରଜ ଏବଂ ପିତାର ବୀର୍ଯ୍ୟର ସମ୍ମିଶ୍ରଣରେ ଶରୀର ଉତ୍ପନ୍ନ ହୋଇଥାଏ । ମାତା ତାକୁ ଉଦରରେ ଧାରଣ କରେ । ତେଣୁ ବୀର୍ଯ୍ୟ ଦାତା ପିତା ଏବଂ ଉଦରରେ ଧାରଣକାରିଣୀ ମାତା ଦୁହିଁଙ୍କର ଶରୀର ଉପରେ ସମାନ ଅଧିକାର ରହିଛି । ସେମାନେ କହନ୍ତି ଏ ମୋର ପୁତ୍ର । ପିତାର ପିତା କହେ, ମୁଁ ପୁତ୍ର ଜନ୍ମ କରି ନ ଥିଲେ ପୌତ୍ର କପରି ହୁଅନ୍ତା ! ତା' ବାପ ମଧ୍ୟ ସେହିଭଳି କହିବ । ମାତାର ମାତା କହେ ମୁଁ ପୁତ୍ରୀକୁ ଗର୍ଭରେ ଧରି ନ ଥିଲେ ଏ ପୁଣି କଭଳି ଗର୍ଭଧାରିଣୀ ହୋଇଥାନ୍ତା ! ଏଭଳି କହି ସେ ତା'ର ଅଧିକାର ସାବ୍ୟସ୍ତ କରେ । ସେଭଳି ମାତାର ପିତା ମଧ୍ୟ ତାହା ଉପରେ ତାର ସ୍ୱତ୍ୱ କଥା କହିଥାଏ । ଭଗବାନ କହିଥାନ୍ତି—"ଏ ଶରୀର ଯେ କେହି ଜନ୍ମ ଦେଉନା କାହିଁକି ଏହା ମୋ'ର କୃପାରେ ସୁରକ୍ଷିତ ହୋଇ ରହିଛି । ମୁଁ ତାକୁ ଇଚ୍ଛା କଲେ

ରକ୍ଷିତ ରହିଲେ ନଷ୍ଟ କରି ଦେବ । ତେଣୁ ଏହା ଉପରେ ଅଧିକାର ମୋର । ଯାହା ପାଖରେ ଚାକିରି କରୁଛ ସେ କହେ ମୁଁ ଏ ଶରୀରକୁ କିଣି ନେଇଛି । ମୁଁ ଯେମିତି ଚାହିଁବି ସେମିତି କାମ କରାଇନେବି, ମୁଁ ତା'ର ସ୍ୱାମୀ । ସମସ୍ତଙ୍କ କଥା ଶୁଣି ବିଲୁଆ, ଶାଗୁଣା, କୁକୁର ଚିଲ, କୀଟ ଆଦି ତଥା ଅଗ୍ନି ମଧ୍ୟ କହିବେ—ସେଇ ସ୍ୱାମୀ ଯାହା ପାଖରେ ଏ ଶରୀର ଶେଷକୁ ପହଞ୍ଚିବ । ତମେ ସବୁ ବୃଥା କଥା କହୁଛ । ଶେଷକୁ ଏ ଶରୀର ମୋର ପେଟକୁ ଆସିବ, ତେଣୁ ମୁଁ ତାର ପ୍ରକୃତ ସ୍ୱାମୀ । ତେଣୁ କହ ଏ ଶରୀରକୁ କାହାର ବୋଲି କହିବା ! କିଏ ତା'ର ପ୍ରକୃତ ଅଧିକାରୀ !"

ଯକ୍ଷ ପଚାରିଲା—"ତା'ହେଲେ ପ୍ରଭୁ ! ବାସ୍ତବରେ ଏ ଶରୀର କା'ର ? ଏହାର ସ୍ୱାମୀ କିଏ ?"

ନାରଦ କହିଲେ—"ଆରେ ଭାଇ ! ଏ ଶରୀର ଅବ୍ୟକ୍ତରୁ ଜାତ ହୋଇଛି । ସମସ୍ତ ଭୂତ ଅବ୍ୟକ୍ତ ହୋଇ ରହିଥାନ୍ତି—ମଝିରେ କିଛି କାଳ ପାଇଁ ବ୍ୟକ୍ତ ହୋଇଗଲେ ପୁଣି ସେହି ଅବ୍ୟକ୍ତରେ ମିଶିଯିବେ । ଏଠା ଜିନିଷ ସେଠାକୁ ଚାଲିଗଲେ ଶୋକ ବା ଚିନ୍ତା କରିବାର କୌଣସି କଥା ନାହିଁ । ସ୍ୱପ୍ନରେ ଆମେ ସାପ ଦେଖି ଭୟ କରୁ; କିନ୍ତୁ ସ୍ୱପ୍ନ ଭାଙ୍ଗିବା ସାଙ୍ଗରେ ଡର ବି ଚାଲିଯାଏ । ସ୍ୱପ୍ନ ପୂର୍ବରୁ ବି ସେଠାରେ ସାପ ନ ଥିଲା । ପରେ ମଧ୍ୟ ତା'ର ଅସ୍ତିତ୍ୱ ରହେନାହିଁ । କେବଳ ମାତ୍ର ସ୍ୱପ୍ନାବସ୍ଥାରେ ତା'ର ପ୍ରତୀତ ମାତ୍ର ହୋଇଥିଲା । ସେଭଳି ଏଇ ଦେହ । ତିଆରି ହେବା ଆଗରୁ ଏହାର ସବୁ ସାମଗ୍ରୀ ପଞ୍ଚଭୂତ ଭିତରେ ଥିଲା, ମରଣ ପରେ ପୁଣି ସେଇ ପଞ୍ଚଭୂତ ମଧ୍ୟରେ ଲୀନ ହୋଇଯାଏ । ଏ ଦେହ ଅସତ୍ । ଏଭଳି ସାଧାରଣ ବସ୍ତୁପାଇଁ କେଉଁ ବୁଦ୍ଧିମାନ ପୁରୁଷ ଜୀବହିଂସା ଆଦି ପାପକର୍ମ କରିବ ? ଏକମାତ୍ର ଆତ୍ମା ହିଁ ସତ୍ୟପଦାର୍ଥ । ଅଜ୍ଞାନ ପୁରୁଷ ଦେହକୁ ହିଁ ଆତ୍ମା ବୋଲି ଧରି ନେଇଥାନ୍ତି । ଏଣୁ ଶରୀରକୁ ସର୍ବଦା ଅତୁଟ ରଖିବାକୁ, ସୁଖୀ କରି ରଖିବାକୁ ନିରନ୍ତର ଚେଷ୍ଟା କରିଥାନ୍ତି । ଐଶ୍ୱର୍ଯ୍ୟ ମଦରେ ଉନ୍ମତ୍ତ ହୋଇ ପାପକର୍ମ କରନ୍ତି । ସଂସାରକୁ କୁତ୍ସିତ କରି ଆତ୍ମହା ହୋଇ ନର୍କ ଯାତନା ଭୋଗ କରିଥାନ୍ତି । ଐଶ୍ୱର୍ଯ୍ୟର ମଦ ମଧ୍ୟ ଏକ ପ୍ରକାର ରୋଗ । ଯେଉଁଭଳି ବାତ ଜ୍ୱରରେ ରୋଗୀ ଏଣୁତେଣୁ ପ୍ରଳାପ କରିଥାଏ, ଏଣେତେଣେ ହାତ ଗୋଡ଼ ପିଟେ ସେଭଳି ଧନ ମଦରେ ମାତିଆଲା ମନୁଷ୍ୟ ମୋହବଶତଃ ମୂର୍ଖତା କରେ । ବଡ଼ମାନଙ୍କୁ ଅପମାନିତ କରେ । ସଦାଚାରର ଉଲ୍ଲଂଘନ କରେ ।"

ଯକ୍ଷ ପଚାରିଲା—"ଭଗବନ ! ଏଇ ଧନମଦ ରୋଗର କୌଣସି ଔଷଧ ମଧ୍ୟ ଥିବ ?"

ନାରଦ କହିଲେ—"ହଁ ଔଷଧ କାହିଁକି ନାହିଁ । ଧନମଦରେ ମାତିଆଲା ରୋଗୀ ପାଇଁ ଏକମାତ୍ର ଔଷଧ ଦରିଦ୍ରତା । ଐଶ୍ୱର୍ଯ୍ୟ ମଦ ଆଖିରେ ପରଳ ପରି ପଡ଼ିଯାଏ । ଆଖିରେ ପରଳ ପଡ଼ିଲେ ଯେମିତି ମଣିଷକୁ କିଛି ଦିଶେ ନାହିଁ, ସେ ଅନ୍ଧଭଳି ହୋଇଯାଏ,

ଆଉ ସେଇ ପରଳକୁ କୌଣସି ଅଞ୍ଜନ ଲଗେଇ ବା ଶଲ୍ୟ ଚିକିତ୍ସା ଦ୍ୱାରା କାଟି ବାହାର କଲେ ଯାଇଁ ସେ ଯେମିତି ଦେଖିପାରେ ସେଭଳି ଐଶ୍ୱର୍ଯ୍ୟ ମଦରେ ମଦାନ୍ଧକୁ ଦରିଦ୍ରତା ଦେଲେ ତା'ର ବୁଦ୍ଧି ସଞ୍ଚିତ ହୋଇଯାଏ । ଦରିଦ୍ର ନ ହେଲେ ଦରିଦ୍ରତାର ଅନୁଭବ ଆସେ ନାହିଁ । ଯେତେବେଳେ ମଣିଷ ସ୍ୱୟଂ ଦରିଦ୍ର ହୁଏ ସେତେବେଳେ ସେ ସବୁରି ଦୁଃଖକୁ ଆପଣାର ଦୁଃଖ ମଣି ଅନୁଭବ କରିପାରେ ।"

ଯକ୍ଷ ପଚାରିଲେ—"ମହାଭାଗ ! ଶୁଣି ମଧ୍ୟ ଅନୁଭବ କରାଯାଇ ପାରିବ !"

ନାରଦ କହିଲେ—କିଛି ବିଷୟ ଅଛି ଯାହା ଶୁଣିଲେ ବି ଅନୁଭବ ମିଳେ । ମାତ୍ର ଅଙ୍ଗେ ନଭେଇଲେ ଯାଇ ଯଥାର୍ଥ ଅନୁଭବ ମିଳେ । ଗୋଡ଼ ଫଟା ହେଲେ ଯାଇ ଚାଲିବା କଷ୍ଟଟି ବୁଝିହୁଏ । କଣ୍ଟା ମାଡ଼ିଲେ ଯାଇ ପାଟିରୁ 'ସୀ' ବୋଲି ବାହାରେ । ସେତେବେଳେ ଯାଇ ବୁଝିହୁଏ କଣ୍ଟା ମାଡ଼ିବାର କଷ୍ଟ କ'ଣ ? ସେତେବେଳେ ଯାଇ ଅନ୍ୟକୁ କଣ୍ଟା ମାଡ଼ିଲେ କିଭଳି କଷ୍ଟ ହୁଏ ବୁଝିହୁଏ । ଯାହାକୁ ଠିକ୍ ସମୟରେ ଆବଶ୍ୟକତାରୁ ଅଧିକ ଭୋଜନ ବିଳାସ ବ୍ୟସନର ସାମଗ୍ରୀ ପ୍ରଚୁର ପରିମାଣରେ ମିଳୁଥିବ ସେ କପରି ଭାବରେ ନିର୍ଦ୍ଧନ ମଣିଷର ଅଭାବ କ'ଣ ବୁଝି ପାରିବ ? ଦରିଦ୍ରତା ଦୈବଦତ୍ତ ସ୍ୱାଭାବିକ ତପସ୍ୟାଟିଏ । ଦରିଦ୍ର ଆଉ ତପସ୍ୱୀ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ନିର୍ଦ୍ଧନ ପାଖରେ ଧନବଳ ଓ ଜନବଳ ଦୁଇ କଥା ନାହିଁ । ପେଟ ପୂରିଥିଲେ ସିନା ସ୍ତ୍ରୀ, ମଦ, ଜୁଆ ଆଦି କଥା ମୁଣ୍ଡରେ ପଶିବ । ନିରାହାର ମଣିଷର ଇନ୍ଦ୍ରିୟ ଶିଥିଳ ହୋଇଥାନ୍ତି । ଆଗରେ ଭୋଗ ସାମଗ୍ରୀ ଥାଇ ମଧ୍ୟ ଭୋଗ କରିବାକୁ ମନବଳେ ନାହିଁ । ଅହଙ୍କାର, ଗର୍ବ ଆଦି ଧନ ପ୍ରତିପତ୍ତି ଥିଲେ ଯାଇ ଆସେ । ନିର୍ଦ୍ଧନ କେଉଁ ଭରସାରେ ଗର୍ବ କରିବ । ଦରିଦ୍ରତା ହେବାର ଦୟାରୁ ସେ ସବୁପ୍ରକାର ମନ୍ଦ ଅଭ୍ୟାସରୁ ବର୍ତ୍ତି ରହିଥାଏ ।"

ଯକ୍ଷ ପଚାରିଲେ—"ମହାଭାଗ ! ଆପଣ ନିର୍ଦ୍ଧନକୁ ତପସ୍ୱୀ ବୋଲି କେମିତି କହିଲେ !"

ନାରଦ କହିଲେ—"ଭାଇ ! ତପସ୍ୱୀ ଆଉ କେଉଁ କଥା କରନ୍ତି ? ଆମେ ଅନ୍ନ ନ ଖାଇ ଫଳାହାର କରି ରହିବୁଁ, ଖିଅର ହବୁ ନାହିଁ । ଆହାର ଛାଡ଼ି ଖାଲି ପାଣି ପିଇ ରହିବୁ । ଶୀତଦିନେ ଦିଗମ୍ବର ଅବସ୍ଥାରେ ଥିବୁ । ପଞ୍ଚାଗ୍ନିରେ ତପସ୍ୟା କରିବୁ । ଏ ସବୁର ନାଆଁ ତପସ୍ୟା । ଆଉ ନିର୍ଦ୍ଧନର ଏ ତପସ୍ୟା ଆପଣାଛାଏଁ ହୋଇଯାଏ । ତା'ର ଲୁଗା ନ ଥାଏ, ଯେମିତି ସେମିତି ଅଣ୍ଟାରେ କନା ଗୁଡ଼େଇ ଲାଜ ଢାଙ୍କେ । ଫଟା ଚିରା ଘୋଡ଼େଇ ହୋଇ ରାତି ବିତାଏ । ଅନ୍ନ ନ ମିଳିଲେ ଜଳରେ କାମ ଚଳେଇ ନିଏ । ଦିନ ସାରା ଖଟଣି ଖଟେ । ଦୈବଯୋଗରୁ ଯାହା କଷ୍ଟ ମିଳେ ସେଇ ତା'ର ପରମ ତପସ୍ୟା । ପ୍ରଭେଦ ଏତିକି ଯେ ସେ ତପସ୍ୟା ପାଇଁ ତପସ୍ୱୀ ମନ କରେ ଆଉ ଏ ତପସ୍ୟା ମନ ନ ଥିଲେ ବି

ଆପେ ଆପେ ହୁଏ । ସେ ତପସ୍ୟା ହେଲେ କୌଣସି ଇଚ୍ଛା କରିହୁଏ ! ତାକୁ କରିବାକୁ ପୂର୍ବ ସଂସ୍କାର ବାଧା କରେ । ସମସ୍ତେ ତ ସେ ତପସ୍ୟା କରିପାରନ୍ତି ନାହିଁ । ସେଥିରେ ବି ପୂର୍ବ ସଂସ୍କାର ହେତୁ, ଭାଗ୍ୟବାନ ପୁରୁଷ ମନରେ ହିଁ ସେଭଳି ଇଚ୍ଛାଟିଏ ଜାତ ହୁଏ । ଦରିଦ୍ରତା ଲାଗି ଯେଉଁ ଦୁଃଖ ସହିବାକୁ ହୁଏ ସେଥିରେ ବି ପାପ କଟେ । ଅଶୁଭର ବିନାଶ ତ ସେଥିରେ ବି ହୁଏ ; ତେଣୁ ଦରିଦ୍ରତା ଭୋଗ କରିବା ମଧ୍ୟ ଏକପ୍ରକାର ତପସ୍ୟା । ଯାହାକୁ ଅଜୀର୍ଣ୍ଣ ବା ମନ୍ଦାଗ୍ନି ବା ସଂଗ୍ରହଣୀ ହୁଏ ତାକୁ ଚିକିତ୍ସକ ଉପବାସ କମ୍ବା ଅଲହାର କରିବାକୁ କହନ୍ତି ଏବଂ ତା'ଦ୍ୱାରା ସେ ଦୋଷ ଦୂର ହୁଏ । ଅଜୀର୍ଣ୍ଣ ପାଇଁ ଯେଉଁଭଳି ଉପବାସ ସେଭଳି ଐଶ୍ୱର୍ଯ୍ୟ ମଦରେ ଅନ୍ଧ ମଣିଷ ପାଇଁ ଦରିଦ୍ରତା ହିଁ ଏକମାତ୍ର ଅଞ୍ଜନ । ଯାର ଦେହ କ୍ଷୁଧାରେ ଜର୍ଜର ହୋଇଯାଏ, ଯାର ସଦା ସର୍ବଦା ଆହାର ପାଇଁ ବ୍ୟାକୁଳତା ଥାଏ, ସେଭଳି ନିର୍ଦ୍ଧନ ମଣିଷର ଇନ୍ଦ୍ରିୟ ଶିଥିଳ ହୋଇଯାଏ । କଥାରେ କାରୁଣ୍ୟ ଆଉ ଚେହେରାରେ ଦରିଦ୍ରତା ଉକୁଟି ଉଠେ । ସେ କାହାକୁ ହେଲେ କଡ଼ା କରି ପଦେ କହିପାରେ ନାହିଁ ଆଉ ହିଂସା କରିବାକୁ ତା'ର ଶକ୍ତି ମଧ୍ୟ ନ ଥାଏ ।"

ଯକ୍ଷ କହିଲା—"ପ୍ରଭୁ ! ନିର୍ଦ୍ଧନତାରେ ବଡ଼ ଦୋଷଟିଏ ମଧ୍ୟ ଅଛି । ଯାହା ପାଖରେ ଧନ ନ ଥିବ, ତା' ପାଖକୁ ସାଧୁ ସନ୍ଥ ବି ଆସିବେ ନାହିଁ । ସାଧୁ ସନ୍ଥ ଆସିବେ ନାହିଁ ଯଦି ସେ ସନ୍ଥସଙ୍ଗରୁ ବଞ୍ଚିତ ହୋଇ ପଡ଼ିବ । ଯେ ସନ୍ଥସଙ୍ଗରୁ ବଞ୍ଚିତ ହେଲା ତା'ର ସଦ୍‌ଗତି ହେବନାହିଁ ; ତେଣୁ ନିର୍ଦ୍ଧନତା ଇହଲୋକ ଓ ପରଲୋକ ଉଭୟ ଲାଗି ବାଧା ଭଳି ।"

ନାରଦ କହିଲେ—"ସେ କଥା ନୁହେଁ । ସମଦର୍ଶୀ ସାଧୁ ତ କୌଣସି ଧନୀକର କ୍ରୀତଦାସ ହେବେ ନାହିଁ । ଧନୀମାନେ ତ ଧନ ଗର୍ବରେ ସାଧୁଙ୍କ ସାଙ୍ଗରେ ଭଲକରି କଥା ପର୍ଯ୍ୟନ୍ତ ହୁଅନ୍ତି ନାହିଁ । ସେମାନେ ଧନଗର୍ବରେ ଅନ୍ଧ ହୋଇ ମାତା, ପିତା, ଗୁରୁ, ସ୍ୱଜନଙ୍କୁ ତିରସ୍କାର କରନ୍ତି । ସାଧୁମାନେ ଏଭଳି ଅଭିମାନୀ ପୁରୁଷଙ୍କ ପାଖକୁ ତୋଷାମୋଦ କରିବାକୁ କାହିଁକି ଯିବେ ? ସେମାନଙ୍କ ଦୃଷ୍ଟିରେ ଧନୀ ଦରିଦ୍ର ଦୁହେଁ ସମାନ । ଯେ ବି ସେମାନଙ୍କ ପାଖକୁ ଯିବ ତାକୁ ସେମାନେ ସ୍ନେହ ଦେବେ ! ଧନୀ ତା'ର ପଦପ୍ରତିଷ୍ଠା ଓ ଗର୍ବ ସହିତ ସେମାନଙ୍କ ପାଖକୁ ଯାଏ ନାହିଁ, ଯିବାଟାକୁ ଅପମାନ ମନେ କରେ । ଗଲେ ମଧ୍ୟ ନମ୍ର ହୁଅନ୍ତି ନାହିଁ । ସେମାନଙ୍କ ପାଖରେ ଶ୍ରଦ୍ଧାରେ ବସନ୍ତି ନାହିଁ । ଅଭିମାନରେ ଫୁଲି ରହିଥାନ୍ତି । ନିର୍ଦ୍ଧନ ତ ସର୍ବଦା ଡରୁଥାଏ । ସେ ଯୁଆଡ଼େ ଯାଏ ସେଠାକୁ ଅଭିମାନଶୂନ୍ୟ ହୋଇ ଚାଲିଯାଏ । ସଂସକୋଚରେ ପାଦ ସେବା କରେ । ଏପରି ସ୍ୱଭାବରେ ନିର୍ଦ୍ଧନମାନଙ୍କୁ ଧନିକ ଅପେକ୍ଷା ସାଧୁ ସେବାର ଅଧିକ ସୁଯୋଗ ମିଳେ । ସେମାନଙ୍କର ସଙ୍ଗ ଲାଭ କରି ସେ ଧୀରେ ଧୀରେ ବିଷୟ ତୃଷ୍ଣା ତ୍ୟାଗ କରିଥାଏ । ଧନ ତ ପ୍ରଥମରୁ ନ ଥାଏ । ସାଧୁସଙ୍ଗ ହେତୁ ତୃଷ୍ଣା ନାଶ ହେଲେ ଜୀବନ ମୁକ୍ତ ହୋଇଯାଏ । ସେ

ପ୍ରଭୁଙ୍କର ସର୍ବଶ୍ରେଷ୍ଠ ପ୍ରେମ ପାଏ । ଏଣୁ ଲଞ୍ଚନତା ମନ୍ଦ କଥା ନୁହେଁ । ତାହା ସାଧୁ ସମାଗମରୁ ମଧ୍ୟ ବଞ୍ଚିତ କରେ ନାହିଁ । ଯେ ସାଧୁ ହୋଇ ମଧ୍ୟ ଧନ ଲୋଭୀ ସେ କଦାପି ସାଧୁ ନୁହେଁ । ଯେ ଭଗବନ୍ତ ଚରଣାରବିନ୍ଦର ରସିକ, ସେହି ସମଦର୍ଶୀ ସାଧୁ ପୁରୁଷଙ୍କୁ ଦୁର୍ଗୁଣ-ଯୁକ୍ତ ଓ ଐଶ୍ୱର୍ଯ୍ୟମତ୍ତ ଦୁର୍ଜନଙ୍କର କି ପ୍ରୟୋଜନ ! ଏଭଳି ଅବନମ୍ର ଅହଙ୍କାରୀ ସର୍ବଦା ସେମାନଙ୍କର ଉପେକ୍ଷଣୀୟ । ସେହି କୁବେର ପୁତ୍ରମାନେ ବାରୁଣୀ ପାନକରି ମତ୍ତ ଥିଲେ ହୋଇଥିଲେ, ଐଶ୍ୱର୍ଯ୍ୟମଦରେ ମଦାନ୍ଧ ହୋଇ ରହିଥିଲେ । ସ୍ତ୍ରୀ ଆସକ୍ତ ହୋଇ ରହିଥିଲେ । ମୁଁ ଏଭଳି ଇନ୍ଦ୍ରିୟ ଲୋଲୁପ, ସ୍ତ୍ରୀ ପରାୟଣ ଯକ୍ଷଙ୍କର ଅଜ୍ଞାନଜନିତ ମଦ ଦୂର କରିଦେବି । ଏମାନଙ୍କର 'ମଦ' ନଷ୍ଟ କରି ଏମାନଙ୍କୁ ସ୍ଥାବର କରିଦେବି ।"

ଯକ୍ଷ କହିଲା—"ମହାରାଜ ! ଆପଣ ଏତେ କାହିଁକି ହେଉଛନ୍ତି । ଆପଣ ଏମାନଙ୍କୁ ଅଭିଶାପ ଦେଇ କାହିଁକି ସ୍ଥାବର ଯୋନିକୁ ପଠେଇବାକୁ ଚାହୁଁଛନ୍ତି !"

ନାରଦ କହିଲେ—"ଦେଖ, କେହି ସାଧାରଣ ବିଷୟାସକ୍ତ ପ୍ରାଣୀ ହୋଇଥିଲେ ମୁଁ ତା'ର ଉପେକ୍ଷା ମଧ୍ୟ କରିଥାନ୍ତି । ଏମାନେ ପ୍ରସିଦ୍ଧ ଲୋକପାଳଙ୍କର ପୁତ୍ର । ଦେବଯୋନି ପାଇଥିବା ହେତୁ ପୂଜନୀୟ ଓ ବନ୍ଦନୀୟ । ଜ୍ଞାନ ତଥା ଭଗବତ୍ ଭକ୍ତିର ଅଧିକାରୀ । ଏତେ ଉଚ୍ଚ ଅଧିକାରୀ ହୋଇ ମଧ୍ୟ ଅତ୍ୟନ୍ତ ଗର୍ବ ହେତୁ ଅଜ୍ଞାନ ମଧ୍ୟରେ ବୁଡ଼ି ରହିଛନ୍ତି । ଏମାନଙ୍କର ନିଜର ପିନ୍ଧା ଲୁଗା ପର୍ଯ୍ୟନ୍ତ ମନେନାହିଁ । ଏମାନେ ମୋ' ଆଗରେ ଉଲଗ୍ନ ଗଛ ପରି ଠିଆ ହୋଇଛନ୍ତି ; ତେଣୁ ଏମାନେ ବୃକ୍ଷ ଜନ୍ମହେବା ଉଚିତ । ଏମାନଙ୍କ ମଧ୍ୟରେ ପାରସ୍ପରିକ ସ୍ନେହ ଅଛି, ତେଣୁ ଯେଉଁ ଯୋନିରେ ଜନ୍ମ ହେଲେ ମଧ୍ୟ ଏମାନେ ଏକାଠି ରହିବେ—ଏମାନେ ଯାଆଁଳା ବୃକ୍ଷ ହୋଇ ରହିବେ । ଦୁହିଁଙ୍କର ଚେର ଏକାଠି ଲାଗିଥିବ । ଦୂରରୁ ଦେଖିଲେ ଏମାନେ ଦୁଇଟି ଗଛ ହୋଇ ମଧ୍ୟ ଏକାଭଳି ଦିଶିବେ ।"

ଯକ୍ଷ ହାତ ଯୋଡ଼ି କହିଲା—"ପ୍ରଭୁ ! ଏମାନେ ଆମର ସ୍ୱାମୀ । ଏମାନେ କୌଣସି ଅନ୍ୟାୟ ଯଦି କରିଥାନ୍ତି ଆପଣ ସେମାନଙ୍କୁ କ୍ଷମା କରନ୍ତୁ । ଆପଣ ଦୟାର ସାଗର । ଆପଣ ଏମାନଙ୍କୁ କଠୋର ଶାପ ଦିଅନ୍ତୁ ନାହିଁ ।"

ନାରଦ କହିଲେ—"ଦେଖ ଭାଇ ! ମୁଁ କେବେ ପରିହାସରେ ମଧ୍ୟ ମିଛ କହିନାହିଁ । ମୋର କଥା ଅମୋଘ । ତାହା କେବେହେଲେ ମିଥ୍ୟା ହେବନାହିଁ । ଏମାନଙ୍କୁ ବୃକ୍ଷ ଯୋନିରେ ଜନ୍ମ ହେବାକୁ ହେବ । ମାତ୍ର ତୁମେ ଅତି ବିନୟୀ ହୋଇ କହିବାରୁ ମୁଁ ଏମାନଙ୍କୁ ଏଭଳି ଶାପ ଦେଉଛି ଯେ ଏମାନେ ବୃକ୍ଷ ଯୋନିରେ ଜନ୍ମ ହୋଇ ମଧ୍ୟ ଏମାନଙ୍କର ଏ ଜନ୍ମର ସ୍ମୃତି ମନେ ରହିଥିବ । ଏ ଦଣ୍ଡ ମଧ୍ୟ ଦେଉଛି, ଯେମିତି ଏମାନେ ଅଜ୍ଞାନରେ ବୁଡ଼ି ପୁଣି ଏଭଳି ଅନର୍ଥ କରିବେ ନାହିଁ ।"

ଯକ୍ଷ କହିଲା—"ପୂର୍ବ ଜନ୍ମର ସ୍ମୃତି ରହିଥିବା ମଧ୍ୟ ଅତ୍ୟନ୍ତ ଦୁଃଖଦ ହେବ । ଆପଣାର ପୂର୍ବଦଶା ସ୍ମରଣ କରି ଏମାନେ ସବୁବେଳେ ଦୁଃଖ ପାଉଥିବେ ।"

ନାରଦ କହିଲେ—"ଏହାହିଁ ତପସ୍ୟା । ଆପଣାର ପାପ କର୍ମ ସ୍ମରଣ କରି ସବୁବେଳେ ଚିନ୍ତିତ ହୋଇ ରହିଥିବା, ପଶ୍ଚାତ୍ତାପ କରୁଥିବା ଏହା ତପସ୍ୟାର ସର୍ବଶ୍ରେଷ୍ଠ ସାଧନ । ଯା'ର ହୃଦୟରେ ପାପ କରି ପଶ୍ଚାତ୍ତାପ କରୁଥାଏ ତା'ହେଲେ ସେ ପରିଶେଷରେ ପାପମୁକ୍ତ ହୋଇଯାଏ । ଏମାନଙ୍କର ସ୍ମୃତି ରହିଥିବ, ଏମାନେ ସବୁବେଳେ କରିଥିବା ପାପକର୍ମ କଥା ସ୍ମରଣ କରି ଅନୁତାପ କରୁଥିବେ, ଐଶ୍ୱର୍ଯ୍ୟ ମଦରେ ଏଭଳି ଦୁଷ୍କର୍ମ କଲୁଁ ବୋଲି ଭାବ ହେଉଥିବେ । ଏଭଳି ଭାବରେ ସେମାନଙ୍କର ତପସ୍ୟା ହେବ । ତପସ୍ୟା ନିମନ୍ତେ ସ୍ଥାନର ପ୍ରଭାବ ଅନେକ ଅଛି । ପୁଣ୍ୟକ୍ଷେତ୍ରର ତପସ୍ୟା ଅନ୍ୟ କ୍ଷେତ୍ରଠାରୁ ଅଧିକ ପ୍ରଭାବଶାଳୀ ; ତେଣୁ ଏମାନେ ବୃକ୍ଷ ହେଲେ ମଧ୍ୟ ପରମପୁଣ୍ୟକ୍ଷେତ୍ର ବ୍ରଜଭୂମିରେ ବୃକ୍ଷ ହୋଇ ଜନ୍ମିବେ । ଗୋକୁଳରେ ଭଗବାନଙ୍କର ଦୁଆର ମୁହଁରେ ରହିବେ । ଦ୍ୱାପର ଯୁଗରେ ଭଗବାନ ନନ୍ଦ ଯଶୋଦାଙ୍କର ପୁଅ ହୋଇ ଏମାନଙ୍କ ତଳେ ଖେଳିବେ ।"

ଯକ୍ଷ କହିଲା—"ପ୍ରଭୁ ! ଏମାନଙ୍କର ଉଦ୍ଧାରର ଉପାୟ ମଧ୍ୟ କହିଯାଆନ୍ତୁ ।"

ହସି ହସି ଭଗବାନ ନାରଦ କହିଲେ—"ଆରେ ! ଉଦ୍ଧାରର ଉପାୟ ଜାଣିବା ଏବେ ବି ବାକି ରହିଲା କି ? ବୃନ୍ଦାବନ ଧାମରେ ଏମାନଙ୍କର ନିବାସ ହେବ । ଗୋପାଳ ବାଳକମାନଙ୍କର ସୁମଧୁର ନାମ କୀର୍ତ୍ତନ ସବୁବେଳେ ଶୁଣୁଥିବେ । ଭଗବାନଙ୍କର ଲବଣୀ ଚୋରି ଆଦି ଲୀଳା ଦେଖିବେ । ତାଙ୍କର ତ୍ରୈଲୋକ୍ୟ ମୋହନ ରୂପ ଦେଖିବେ । ନାମ, ରୂପ, ଲୀଳା, ଧାମ ସବୁ କଥା ଏମାନଙ୍କୁ ପ୍ରାପ୍ତ ହେବ । କେବଳ ମାତ୍ର କୃଷ୍ଣ ଧାମରେ ନିଶ୍ୱାସ କରି ଏମାନେ ପଡ଼ି ରହିଥିବେ, କୃଷ୍ଣ ନାମ ନେଉଥିବେ, କୃଷ୍ଣ ରୂପ ଦେଖୁଥିବେ, କୃଷ୍ଣ ଲୀଳାର ଚିନ୍ତନ ଓ ଶ୍ରବଣ କରୁଥିବେ; ଏ ଚାରୋଟି କଥାରୁ ଯଦି କୌଣସି ଗୋଟିଏ କଥାରେ ମଣିଷର ଉଦ୍ଧାର ହୋଇଯାଏ, ତା'ହେଲେ ଚାରୋଟି କଥା ପାଇ ଆଉ କ'ଣ ସନ୍ଦେହ ରହିଲା ?"

ଯକ୍ଷ ପଚାରିଲା—"ତେବେ ବୃକ୍ଷ ଯୋନିରୁ ଏମାନଙ୍କର ମୁକ୍ତି କେବେ ହେବ ?"

ନାରଦ କହିଲେ—"ଯଶୋଦା ମାତା ଯେତେବେଳେ ଶ୍ରୀକୃଷ୍ଣଙ୍କୁ ଲବଣୀ ଚୋରିର ଅପରାଧରେ ବାନ୍ଧିବେ ସେତେବେଳେ ସେ ଅପରାଧୀ ଭାବରେ ଏମାନଙ୍କ ମଝିରେ ଚାଲିଯିବେ । ସେତେବେଳେ ଏମାନଙ୍କୁ କ୍ଷମା ମିଳିଯିବ । ବୃକ୍ଷ ଯୋନିରୁ ଉଦ୍ଧାର ମିଳିବ । ବ୍ରହ୍ମାଦି ଦେବତାମାନଙ୍କୁ ଯେଉଁ କୃଷ୍ଣ ପ୍ରେମ ଦୁର୍ଲଭ ସେହି ପରମ ପ୍ରେମପଦ ଏମାନଙ୍କୁ ମିଳିବ । ସେ ସମୟରେ ସେମାନେ ଭଗବଦ୍ଭକ୍ତି ପ୍ରାପ୍ତ ହୋଇ ଆପଣା ଲୋକର ଅଧିକାରୀ ହେବେ । ତା'ପରେ କୁବେର ଲୋକରେ ରହି ଭଗବାନଙ୍କର ସେବା ପୂଜା ଓ ପରିଚର୍ଯ୍ୟାରେ ଲାଗି ରହିବେ । ଏ ଅଭିଶାପ ମୁଁ ଏମାନଙ୍କର କଲ୍ୟାଣ ନିମନ୍ତେ ଦେଇଛି ।"

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଏହା କହି ଇଚ୍ଛାନୁସାରେ ତ୍ରିଲୋକରେ ବିଚରଣ କରିବାକୁ ସମର୍ଥ ଦେବର୍ଷି ନାରଦ ଭଗବାନଙ୍କର ଦର୍ଶନ କରିବାକୁ ବଦରୀବନକୁ ଗଲେ । ତେଣେ ସେହି କୁବେର ପୁତ୍ରମାନେ ଗୋକୁଳରେ ନନ୍ଦଦ୍ୱାରରେ ଦେବନାମାନଙ୍କ ବର୍ଷରେ ଶହେ ବର୍ଷ ପର୍ଯ୍ୟନ୍ତ ଠିଆ ହୋଇ ରହିଲେ । ଭଗବାନ ଯେତେବେଳେ ଏମାନଙ୍କ ମଝିରେ ଗଳିଗଲେ ସେତେବେଳେ ସେମାନଙ୍କର ଉଦ୍ଧାର ହେଲା ଓ ସେମାନେ ଭଗବାନଙ୍କର ସ୍ତୁତି କରି ତାଙ୍କର ଆଜ୍ଞା ନେଇ ନିଜ ଲୋକକୁ ଚାଲିଗଲେ ।"

ଶୌନକ ପଚାରିଲେ—"ମହାଭାଗ ! ତା'ପରେ କ'ଣ ହେଲା ? ଭଗବାନ ସେହିଭଳି ବାନ୍ଧି ହୋଇ ରହିଲେ ନା ତାଙ୍କୁ କିଏ ପୁଣି ଖୋଲିଦେ ?"

ହସି ହସି ଶ୍ରୀ ସୂତ କହିଲେ—"ମହାଭାଗ ! ଭଗବାନଙ୍କୁ କେହି ବାନ୍ଧିପାରିବ ନା ଖୋଲିପାରିବ । ସେ ଆପଣା ଇଚ୍ଛାରେ ବାନ୍ଧି ହୁଅନ୍ତି ।" ତା'ପରେ ଯାହା ହେଲା କହୁଛି ।

### ଛପ୍ପୟ

ସଂଗ ଅପ୍‌ସରା ବସ୍ତ୍ରହୀନ ନଂଗେ ହ୍ୱୈ ହ୍ନାବେ ।<br>
ହରି ଗୁନ ଗାବତ ପରମ ରସିକ ନାରଦ ମୁନି ଆବେଁ ॥<br>
ଲଖି ମୁନି ଯୁବତୀ ନିକରି ପହିନ ପଟ ଭସେ ସନ୍ମାନେ ।<br>
କିନ୍ତୁ ଧନଦ ସୁତ ମଉ ନଗ୍ନ ଠାଢ଼େ ୱୈ ତାନେ ॥<br>
ଶାପଦୟୋ ମୁନି ତରୁ ବନୋ, ଯମଳାର୍ଜୁନ ତେ ହ୍ୱୈ ଗୟେ ।<br>
ପୁନି ଦ୍ୱାପର କେ ଅନ୍ତମହ, ପରସି ପ୍ରଭୁହିଁ ପାବନ ଭୟେ ॥

❀

## ଶ୍ରୀକୃଷ୍ଣଙ୍କର ବନ୍ଧନ ମୁକ୍ତି

ଉଲୂଖଲଂ ବିକର୍ଷନ୍ତଂ ଦାମ୍ନା ବଦ୍ଧଂ ସ୍ୱମାତ୍ମଜମ୍ ।<br>
ବିଲୋକ୍ୟ ନନ୍ଦଃ ପ୍ରହସଦ୍‌ବଦନୋ ବିମୁମୋଚ ହ ॥

(ଶ୍ରୀଭା ୧୦ସ୍କ, ୧୧ ଅ, ୭ ଶ୍ଳୋକ)

## ଛପ୍ପୟ

ବୃକ୍ଷ ପତନ ରବ ସୁନତ ନନ୍ଦ ଗୋପାଦନ ଧାୟେ ।
ବନ୍ଧେ ଉଲୂଖଲ କୃଷ୍ଣ କରତ କ୍ରୀଡ଼ାତହୁଁ ପାୟେ ॥
କହେଁ ପରସ୍ପର ଗିରେଁ ବୃକ୍ଷ ନହିଁ ଆଁଧୀ ପାନୀ ।
ବାଲକ ସଚ ସବ କହୀ ବାତ କାହୁ ନହିଁ ମାନୀ ॥
ଗିରେ ବୃଧ କେ ଦାଁତ ନହୁଁ, ଜିହ୍ୱ ଛୋଟୋ ସୋ ଛୋକରା ।
ତରୁ ଉଖାର କୈସେ ସକେ, କହେଁ ଯୁବକ ଅରୁ ଡୋକରା ॥

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ବ୍ରଜରାଜ ନନ୍ଦ ପୁଅକୁ ଉଦୁଖଳ ସାଙ୍ଗରେ ବନ୍ଧା ହୋଇଥିବା ଓ ସେ ତାକୁ ଟାଣୁଥିବା ଦେଖି ହସି ହସି ବନ୍ଧନ ଖୋଲିଦେଲେ ।"

ଏ କଥା ବାରମ୍ବାର କୁହାଯାଉଛି ଯେ ଏ ପ୍ରେମର ପନ୍ଥା ବିଚିତ୍ର । ଏଥିରେ ଯାହା ନ ହୁଏ କମ୍ ! ପରାତ୍ପର ସଚ୍ଚିଦାନନ୍ଦ ଘନବିଗ୍ରହ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ସଂସାର ବନ୍ଧନରୁ ମୁକ୍ତିକାରୀ ବୋଲି ସମସ୍ତ ବେଦଶାସ୍ତ୍ର କହୁଛନ୍ତି । ତାଙ୍କୁ ମଧ୍ୟ ମାତା ବାନ୍ଧି ଦେଉଥିଲେ । ଯେ 'କର୍ତ୍ତୁମକର୍ତ୍ତୁମନ୍ୟଥା କର୍ତ୍ତୁଂ ଶକ୍ୟଃ' ଅଟନ୍ତି, ସର୍ବସମର୍ଥ ଅଟନ୍ତି । ସେ ଆପଣା ବନ୍ଧନ ନିଜେ ଖୋଲିବାକୁ ସମର୍ଥ ନୁହନ୍ତି । ସେ ସେଇ ପ୍ରତୀକ୍ଷାରେ ଏଣେତେଣେ ଘୂରି ବୁଲନ୍ତି, କେହି ଆସୁ ଓ ମୋର ବନ୍ଧନ ଖୋଲିଦେଉ । ଯେ ସମସ୍ତଙ୍କୁ ବାନ୍ଧିବା ଲୋକ ତା'ର ବନ୍ଧନକୁ ପୁଣି କିଏ ଖୋଲିବ ? ଯେ ସବୁରି ନାକରେ ଫାନ୍ଦ ଗଳେଇ ନଚଉଛି, ତାକୁ କିଏ ବନ୍ଧେଇବ, ମୁକ୍ତ କରି ପାରିବ ? ତାକୁ କେବଳ ସେଇ ଖୋଲିବ ଯେ ତାକୁ ବାନ୍ଧିଛି । ତୃଷ୍ଣାସ୍ତ ପୁରୁଷର କ'ଣ ବା ଶକ୍ତି ଅଛି ଯେ ସେ ସେହି ବନ୍ଧନକୁ ବନ୍ଧନ ବୋଲି କହି ପାରିବ ?

ସୂତ କହୁଛନ୍ତି—"ମୁନିଗଣ ! ସେହି ଯମଳାର୍ଜ୍ଜୁନ ଗଛମାନଙ୍କରୁ ନଳକୁବର ଓ ମଣିଗ୍ରୀବ ଏହି ଦୁଇ ଦିବ୍ୟପୁରୁଷ ବାହାରିଲେ । ଏହା ତ ସେଇ ଟୋକାଏ ଦେଖିଲେ; ମାତ୍ର ସେ ଦୁହେଁ କ'ଣ ବୋଲି ସ୍ତୁତି କଲେ ଓ ସେମାନଙ୍କୁ ଶ୍ରୀକୃଷ୍ଣ କ'ଣ କହିଲେ ତାହା ସେହି ଅବୋଧ ବାଳକମାନେ କିଭଳି ବୁଝନ୍ତେ ! ଯେତେବେଳେ ସେହି କୁବେର ପୁତ୍ରମାନେ ଚାଲିଗଲେ ଆଉ ଗଛ ଦୁଇଟି ଉପୁଡ଼ି ପଡ଼ିବାର ଶବ୍ଦ ଚଉପାଢ଼ୀରେ ବସି ଶୁଣିବା ମାତ୍ରକେ ଗୋପ ଲୋକେ ଦଉଡ଼ି ଆସିଲେ । ନନ୍ଦ ମଧ୍ୟ ସେମାନଙ୍କ ସାଙ୍ଗରେ ଥିଲେ । ସେ କେଉଁଠି ବଜ୍ରପାତ ହେଲା ବୋଲି ଆଶଙ୍କା କଲେ । ସେ ଆସି ଦେଖିଲେ ଖେଳପ୍ରିୟ ଶ୍ରୀକୃଷ୍ଣ ବଳଦ ସାଜି ଉଦୁଖଳକୁ ଗାଡ଼ିଭଳି ଟାଣୁଛନ୍ତି । ସମସ୍ତେ ସେଇ ଗଛଟି ଆକସ୍ମିକ ଭାବରେ ଉପୁଡ଼ି ପଡ଼ିବା ଫଳରେ ଚକିତ ଓ ଭୟଭୀତ ହୋଇ ପଡ଼ିଥିଲେ । ଆସିଲା ମାତ୍ରକେ ମୁରବୀ

ଗୋପାଳମାନେ ପିଲାଙ୍କୁ ପଚାରିଲେ—'ଏ ଗଛ ଦୁଇଟି ହଠାତ୍ କେମିତି ଉପୁଡ଼ି ପଡ଼ିଲେ ? ଝଡ଼ ତୋଫାନ କିଛି ନାହିଁ, ଏତେ ବଡ଼ ବଡ଼ ଗଛ ଉପୁଡ଼ି ପଡ଼ିଲା କେମିତି ?''

ଟୋକାଏ ଆଖିଦେଖା କଥା ଖୁବ ଜୋର ଦେଇ କହିଲେ—''ଏ କାହ୍ନା ! ଇଏ ଉଦୁଖଳ ଟାଣୁଥିଲା । ଏ ଦୁଇ ଗଛ ମଝିରେ ପଶିଗଲା ମାତ୍ରକେ ଉଦୁଖଳ ବାଙ୍କେଇ ଗଲାରୁ ସେ ପୁରାବଳ ଖଟେଇ ଟାଣିଦେଲା । ଆଉ ସେ ଟାଣିଲାରୁ ଗଛ ଦୁଇଟିଯାକ ଉପୁଡ଼ି ପଡ଼ିଲେ । ଆମ ଦେଖିବାରେ ଇଏ ଏ ଗଛ ଦୁଇଟିକୁ ଉପାଡ଼ି ପକେଇଛି । ଏଇ ଗଛମାନଙ୍କରୁ ଖୁବ ସୁନ୍ଦରିଆ ମୁକୁଟ ପିନ୍ଧା ଦୁ'ଜଣ ତେଜସ୍ୱୀ ପୁରୁଷ ବାହାରିଲେ । କାହ୍ନା ଆଗରେ କିଛି ବେଳଯାଏ କ'ଣ ସବୁ କହୁଥିଲେ ଆଉ ଆକାଶକୁ ଉଡ଼ିଗଲେ । ଆମ ଆଖି ସାମନାରେ ଏ ସବୁ ହେଲା ।''

ପିଲାଙ୍କ କଥାଶୁଣି କିଏ ହସି ଦେଲା ତ କିଏ କହିଲା ଏମିତି କ'ଣ ସମ୍ଭବ ? ଏ ପିଲାଗୁଡ଼ା ଯାହା ମନକୁ ପାଇଲା ତାହା କହିଦେଲେ । କେହି କେହି ସନ୍ଦେହରେ କହିଲେ— ''ଏ ପିଲାଟି ଉପୁଡ଼େଇ ଦେଲା ନାହିଁତ ଆଉ ପୁଣି ଏ କାମ କିଏ କଲା । ନିଜ ମନକୁ ଏଡ଼ା ଝଡ଼ତୋଫାନରେ ତ ଏଡ଼େ ବଡ଼ ଗଛଟା ଉପୁଡ଼ି ପଡ଼ିବ ନାହିଁ । ଏମିତି ହେଲା କେମିତି ? କିଏ କେମିତି କହିଲେ—ଅଘଟନ ଏମିତି ଗଛଟି ଉପୁଡ଼ି ପଡ଼ିବା ଘୋର ଅଶୁଭ କଥା ।''

ସେତେବେଳେ ବୁଢ଼ା ବୁଢ଼ା ଗୋପାଳମାନେ ସେଇଆ ଭାବୁଥିଲେ ଯେ ପିଲାମାନେ ଖେଳରେ ଯେମିତି କାହାକୁ ଘୋଡ଼ା କରିଥାନ୍ତି ତ କାହାକୁ ଗାଡ଼ି ସେମିତି ସେମାନେ ଶ୍ରୀକୃଷ୍ଣଙ୍କୁ ବଳଦ କରି ଥିଲେ । ତେଣୁ ଜଣେ କହିଲା—''ତମେ ସବୁ କାହ୍ନାକୁ ବାନ୍ଧିଛ ନାହିଁକି ?''

ତାଙ୍କ ଭିତରୁ ପିଲାଟିଏ କହିଲା—''ଆମେ କାହିଁକି ବାନ୍ଧିବୁ ! ତାକୁ ତ ଯଶୋଦା ମା' ବାନ୍ଧିଦେଇ ଯାଇଛନ୍ତି ।''

ସେ ପଚାରିଲା—''ମାଆ ବାନ୍ଧିଛନ୍ତି ?''

ସେଇ ପିଲାଟି କହିଲା—''ଏଇ ମାଆର ଲହୁଣୀ ଚୋରେଇଛି । ଦହିହାଣ୍ଡି ଭାଙ୍ଗି ଦେଇଛି । ସେଇଥିଲାଗି ରାଗି ମାଆ ତା' ଅଣ୍ଟାରେ ଡୋରି ବାନ୍ଧି ତାକୁ ପୁଣି ଉଦୁଖଳରେ ବାନ୍ଧି ଦେଇଗଲେ ।''

ନନ୍ଦ ମଧ୍ୟ ସେଠାରେ ଥାଇ ସେ ସବୁ ଶୁଣୁଥିଲେ । ସେ ସେତେବେଳକୁ ଗଛମାନଙ୍କ ଉପୁଡ଼ି ଯିବା କଥା ଭୁଲି ଯାଇଥିଲେ ଯେମିତି । ତାଙ୍କର ହୃଦୟ ସ୍ନେହରେ ଭରି ଉଠୁଥିଲା । ଯଶୋଦାଙ୍କ ଉପରେ ମନେ ମନେ ବେଶ୍ ରାଗିଲେ । ଏତେ କଅଁଳା ପିଲାକୁ ପୁଣି ଟିକିଏ ଲହୁଣୀ ଲାଗି ସେ ବାନ୍ଧି ପକେଇଛି ! ତାଙ୍କ ଆଖିରେ ଲୁହ ଭରି ଆସିଲା । ତା'ପରେ

ଭାବିଲେ—ଯଦି ମୁଁ କାନ୍ଦି ବସିବି ତା'ହେଲେ ମୋତେ ଦେଖି କୃଷ୍ଣ ତ ଆହୁରି କାନ୍ଦିବ । ମୋର ପିଲା ଆଗରେ ଦୁର୍ବଳତା ଦେଖେଇବା ଉଚିତ ହେବନାହିଁ । ଏଇଆ ଭାବି ଯଦିଓ ସେ ମନ ଭିତରେ କାନ୍ଦୁ ଥିଲେ, ବାହାରେ ଦେଖେଇଲେ ନାହିଁ । ହସି ହସି ଶ୍ୟାମସୁନ୍ଦରଙ୍କ ପାଖକୁ ଯାଇ ପଚାରିଲେ—"କାହ୍ନା ! କ'ଣ ହେଲା ?"

ସେ ଭାରି ସରଳ ଢଙ୍ଗରେ କହିଲେ—"ବାବା ! ମୋତେ ମାଆ ବାନ୍ଧି ପକେଇଛି ।"

ନନ୍ଦ ଅତି ଆଦରରେ ପଚାରିଲେ—"ତୁ କ'ଣ ଦୋଷ କଲୁ କି ?"

"ନା, ମୁଁ ଆଉ ଦୋଷ କେତେବେଳେ କଲି ? ମାଆ ଦୁଧ ବସେଇଥିଲା ତାହା ଉତୁରି ଆସୁଥିଲା । ସେ ତାକୁ ଚଞ୍ଚଳ ଓହ୍ଲାଇବ ବୋଲି ଗଲା । ସେ ଝୁଣ୍ଟିଲା କାଠ ଫାଳଆକୁ । ତାହା ବାଜି ହାଣ୍ଡି ଭାଙ୍ଗିଗଲା । ସେଥିକତରେ ସେ ମୋତେ ବାନ୍ଧି ପକେଇଛି ଆଉ ମାରିଲା ବି !"

ନନ୍ଦ କହିଲେ—"କିଛି କଥା ନାହିଁ । ମୁଁ ମାରିବି ତୋ' ମାଆକୁ । ତତେ ଆଗ ଫିଟେଇ ଦିଏ ।"

ଏଇଆ କହି ନନ୍ଦ ଶ୍ରୀକୃଷ୍ଣଙ୍କ ଅଣ୍ଟାରେ ବନ୍ଧା ହୋଇଥିବା ଡୋରି ଫିଟେଇ ଦେଲେ । କୋଳେଇ ନେଇ ବାରମ୍ବାର ଚୁମା ଦେଲେ । ଯୋଉଠି ଡୋରି ବନ୍ଧା ହୋଇଥିଲା ସେଠା ଲାଲ ପଡ଼ି ଯାଇଥିଲା । ନନ୍ଦ ସେ ଜାଗା ଆଉଁସି ପକେଇଲେ । କହିଲେ—"ଚାଲ, ମାଆ ପାଖକୁ ଯିବା ।"

ଶ୍ରୀକୃଷ୍ଣ କହିଲେ—"ବାବା ! ମାଆ ତ ମୋତେ ମାରିବ । ମୁଁ ମାଆ ପାଖକୁ ଯିବି ନାହିଁ ।"

ନନ୍ଦ ସରଳ ଭାବରେ କୃଷ୍ଣଙ୍କୁ ପୁଣି ଚୁମା ଦେଲେ । କହିଲେ—"କିଏ ତତେ କ୍ଷୀର ଖୁଏଇ ଦିଏ । ମୁଁ ତତେ କୋଉଠୁ ଆଣି କ୍ଷୀର ଦେବି ?"

ସେଇଆ ଶୁଣି ଶ୍ରୀକୃଷ୍ଣ କହିଲେ—"ବାବା ! ମୁଁ ଶ୍ୟାମା ଗାଈର କ୍ଷୀର ପିଇନେବି ଆଉ ତମ ସାଙ୍ଗରେ ସେ ଚଉପାଢ଼ିରେ ଶୋଇବି ।"

ଗଛମାନଙ୍କର ଉପୁଡ଼ି ପଡ଼ିବା ଶବ୍ଦ ଶୁଣି ଯଶୋଦା ମାତା ଦଉଡ଼ି ଆସିଥିଲେ । ଆସି ଦେଖିଲେ ଦୁଇଟି ଯାକ ଗଛ ମୂଳରୁ ଉପୁଡ଼ି ପଡ଼ିଛନ୍ତି । ସେଇଆକୁ ଘେରି ପିଲା ବୁଢ଼ା ଶହ ଶହ ଲୋକ ସେଇ ଗଛ ଉପୁଡ଼ିବା କଥା ହେଉଛନ୍ତି । ନନ୍ଦଙ୍କ କୋଳରେ ଥାଇ ଶ୍ରୀକୃଷ୍ଣଙ୍କୁ ହସୁଥିବା ଦେଖି ତାଙ୍କ ପିଣ୍ଡରେ ପ୍ରାଣ ପଶିଲା । ସେ ହାତଠାରି କୃଷ୍ଣଙ୍କୁ କୋଳକୁ ଡାକିଲେ । ହେଲେ ଶ୍ରୀକୃଷ୍ଣ ମୁହଁ ଆଡ଼େଇ ନେଲେ । ମାଆ ମନ ଛଟପଟ ହେଉଥାଏ ।

ସେ ମନେ ମନେ ପଶ୍ଚାତ୍ତାପ କରୁଥାନ୍ତି । ହାୟ, ମୋ ମୁଣ୍ଡ କ'ଣ ହେଲା ! ଏତେ ଟିକିଏ ଲହୁଣୀ ଲାଗି ଏଡ଼େ ସୁନ୍ଦର କଅଁଳ ପିଲାକୁ ବାନ୍ଧି ପକେଇଲି । ହାଣ୍ଡି ତ ମାଟି ହାଣ୍ଡି । ପିଏ ତ ସେତେବେଳେ ହେଉ ଭାଙ୍ଗି ଥାଆନ୍ତା । ମୋ ବୁଦ୍ଧି କେମିତି ଭ୍ରଷ୍ଟ ହେଲା । ମୋର ଏତେ ରାଗ ଚଢ଼ିଲା କେମିତି ? ନାରାୟଣ ରଖିଲେ ବୋଲି ସିନା ପିଲାର କିଛି ଅନିଷ୍ଟ ହେଲାନାହିଁ । ନହେଲେ ଏତେ ବଡ଼ ବଡ଼ ଗଛ ଉପୁଡ଼ି ପଡ଼ିଲେ ; ମୁଁ ଆଉ ଜଗତରେ ଥିଲି ନା ? 'ହେ ଭଗବାନ ! ପୁଅକୁ ମୋର କଲ୍ୟାଣ କର ।' ଏମିତି ଭାବି ଭାବି ମାଆଙ୍କର ହୃଦୟ କୋହରେ ଭରି ଯାଉଥିଲା । ସେ ପିଲାଙ୍କ ଭଳି କରି କରି ହୋଇ କାନ୍ଦିବାକୁ ଲାଗିଲେ । ଗୋପୀମାନେ ଆସି ତାଙ୍କୁ ବୁଝେଇବାକୁ ଲାଗିଲେ—"ବ୍ରଜେଶ୍ୱରୀ ! କିଛି କଥା ନାହିଁ । ନାରାୟଣ ରକ୍ଷା କଲେ । ତମେ କାହିଁକି ମନ ମାରୁଛ । ପୁଅର ଯୁଗ ଯୁଗର ପରମାୟୁ !"

ସେତେବେଳଯାଏଁ ମା'ଙ୍କର ଗଛ ଉପୁଡ଼ିବା କଥା ଯେତେ ମନେ ପଡ଼ୁ ନଥିଲା ସେତେ ସେ ନିଜ କୃତକର୍ମ ପାଇଁ ଧାର ହେଉଥିଲେ । ନିଜେ ନିଜକୁ ଧିକାର କରିବାକୁ ଲାଗିଲେ । ମୋ' ପୁଅ ମୋ' ପାଖରେ ରୁଷିଛି, ମୋ କୋଳକୁ ଆସୁନାହିଁ । ମୁଁ ମାଆ ବୋଲେଇବା ଧିକ୍ । ଯୋଉ ମାଆ ଅବୋଧ ପିଲା ଉପରେ ରାଗ କରେ ଆଉ ତାକୁ ଦଣ୍ଡ ଦିଏ ସେ ମାଆ ପୁଣି କେମିତିକା ମାଆ ! ମାଆ ସିନା ସ୍ନେହରେ ଶାସନ କରେ ? ବାପ ସିନା ଡରେଇବ ଧମକେଇବ; କିନ୍ତୁ ମାଆ ତ ସ୍ନେହ ଆଦର ଦେଇ କୋଳେଇ ନବ । ମୋ ମନରେ ଟିକିଏ ବୋଲି ସ୍ନେହ ଭାବ ନାହିଁ । ମୁଁ କଠୋର !

ଏ କଥା ଭାବି ଭାବି ତାଙ୍କୁ ଗୃହତଳ ଶୂନ୍ୟ ଲାଗିଲା । ଶ୍ରୀକୃଷ୍ଣଙ୍କୁ ନେଇ ନନ୍ଦ ଅନ୍ୟ ଘରକୁ ଚାଲିଗଲେ । ସେ ବି ମନେ ମନେ ଯଶୋଦାଙ୍କ ଉପରେ ରାଗି ଥିଲେ । ବୁଢ଼ା କାଳକୁ ପୁଅ ମୁହଁ ଚାହିଁଲେ, ସିଏ ମାଆ ହୋଇ ବୁଝି ପାରୁନ । ଆଉ ପୁଅକୁ ଛାର କଥା ଲାଗି ବାନ୍ଧି ପକେଇଲା । ସେ ସେଇ ରାଗରେ ଭିତରକୁ ଖାଇବାକୁ ସୁଦ୍ଧା ଗଲେ ନାହିଁ । ବ୍ରଜରାଜ ସେଇ ଚଉପାଢ଼ିରେ ରହିଲେ । ଶ୍ରୀକୃଷ୍ଣଙ୍କୁ ନିଜେ ଶ୍ୟାମା ଗାଈର କ୍ଷୀର ଦୁହିଁ ମିଶ୍ରି ମିଶେଇ ପିଏଇଲେ ।

ବଳଦେବ ସେତେବେଳେ କୁଆଡ଼େ ବାହାରକୁ ଯାଇଥିଲେ । ସେ ଯେତେବେଳେ ଶୁଣିଲେ ମାଆ ଭାଇକୁ ବାନ୍ଧି ପକେଇ ଥିଲା ଆଉ ତା' ଉପରେ ଅର୍ଜୁନ ଗଛ ଉପୁଡ଼ି ପଡ଼ିଲା ସେତେବେଳେ ସେ ଭାରି ଦୁଃଖ କଲେ । ସିଏ ବି କାନ୍ଦି କାନ୍ଦି ନନ୍ଦବାବାଙ୍କ ପାଖକୁ ଗଲେ । ନନ୍ଦ ତାଙ୍କୁ ଯେତେ ବୁଝେଇଲେ ବି ତାଙ୍କର କାନ୍ଦ ବନ୍ଦ ହେଉ ନ ଥାଏ । ଶ୍ରୀକୃଷ୍ଣଙ୍କୁ ଦେଖି ସେ ରୋହିଣୀଙ୍କ ପାଖକୁ ଯାଇ ରାଗି କହିଲେ—"ମା ! ମା କାହ୍ନାକୁ ଏତେ ଟିକିଏ ଲହୁଣୀ ପାଇଁ ଉଦୁଖଳରେ ବାନ୍ଧି ପକେଇଲା, ଭଲ ହେଲା ମୁଁ ସେଇଠି ନ ଥିଲି ।

ନ ହେଲେ ମୋ ଗୁହ ଫାଟି ଯାଉଥାନ୍ତା । ସେ ତ ଆଉ ତାକୁ ଆଉ କ'ଣ ବୋଲି କହୁଥାନ୍ତି । ଆଉ କଏ କାହ୍ନାକୁ ରାଗି ଛୁଇଁ ଦେଲେ ଦେଖିବ, ମୁଁ କେମିତି ।"

ରୋହିଣୀ ସ୍ନେହରେ ତାଙ୍କର ଲୁହ ପୋଛି ଦେଇ କହିଲେ । 'କିଛି କଥା ନାହିଁ ପୁଅ । ପିଲାଙ୍କୁ ସେମିତି ଧମକ ଚମକ ନ ଦେଲେ ସେମାନେ ବିଗିଡ଼ି ଯିବେ ।'

ଏମିତି ଭାବରେ ସାରା ବ୍ରଜରେ ଚହଳ ପଡ଼ିଗଲା । ବୁଢ଼ା ବୁଢ଼ୀ ଗୋପୀମାନେ କହିଲେ—"ଯଶୋଦା ଯାହା କଲେ ଭଲ କଲେ ନାହିଁ । ପିଲାକୁ ସିନା ଆଖି ଦେଖାଇ ଡରାଇବା କଥା, ତା' ନ କରି ଉଦୁଖଳରେ ବାନ୍ଧି ବାଡ଼େଇବା ! ଏହା କଲେ ପିଲା ଜଲଠା ହୋଇ ବେଶୀ ବେଶୀ ବିଗିଡ଼ି ଯାଆନ୍ତି ସିନା ! ଏମିତି ଯେତେ ମୁହଁକୁ ସେତେ କଥା । ଯଶୋଦା କେବେ ସବାଙ୍କୁ କର୍ଣ୍ଣପାତ କରି ନ ଥିଲେ । ସେ ଶ୍ରୀକୃଷ୍ଣଙ୍କ ପାଇଁ ପାଗଳ ହେଉଥାନ୍ତି । ସେ କେଇ ପ୍ରହର ତାଙ୍କୁ ଯୁଗ ଯୁଗ ଭଳି ଲାଗୁଥାଏ । ଶ୍ରୀକୃଷ୍ଣ କେତେବେଳେ ବି ରାଗନ୍ତି ନାହିଁ । ସେ କିଛି ସମୟ ପରେ ଉତ୍କଣ୍ଠାର କଥାଁକୁ ବେଶ୍ ଜଳେଇ ଦିଅନ୍ତି । ବିଚ୍ଛେଦ ଦେଇ ସ୍ନେହର ରସକୁ ଅତମାତାରେ ବଢ଼େଇ ଦିଅନ୍ତି । ବିଯୋଗ ଉତ୍ତାରୁ ଯେଉଁ ସଂଯୋଗ ହୁଏ ତାହା ଅତି ସୁନ୍ଦର ଓ ମଧୁମୟ ।

ଶ୍ରୀକୃଷ୍ଣ ଦେଖିଲେ ମାଆର ଉତ୍କଣ୍ଠା ଚରମସୀମାକୁ ପହଞ୍ଚିଲାଣି । ସେ ବ୍ରଜରାଜଙ୍କୁ କହିଲେ· ବାବା, ବାବା ମୁଁ ତ ମାଆ ପାଖକୁ ଯିବ ।"

ବ୍ରଜରାଜ କହିଲେ—"ଅଚ୍ଛାପିଲା ତୁ ! ବର୍ତ୍ତମାନ ତଳପାଟିରେ ଶୋଇବ ବୋଲି କହୁଥିଲୁ ଆଉ ଏବେ ମାଆ ପାଖକୁ ଯିବୁ ?"

ସେ କହିଲେ—"ତମ ପାଖରେ କୋଉ ଦୁଦୁ ଅଛି ? ମୁଁ ମାଆ କୋଳରେ ଥାଇ ଖାଇବ ।"

ଏହା ଶୁଣି ନନ୍ଦ କହିଲେ—"ଅଚ୍ଛା କଥା, ଭାରି ଦୁଷ୍ଟ ତୁ । ମୋତେ ଆଗରୁ କହିଲୁ ନାହିଁ, ମୁଁ ମାଆକୁ ଛାଡ଼ି ରହି ପାରିବ ନାହିଁ !" ଆଉ ସେ ତାଙ୍କୁ ନେଇ ଅନ୍ତଃପୁରକୁ ଗଲେ । ଯଶୋଦା କେତେ ସ୍ନେହରେ ପୁଅକୁ କୋଳେଇ ନେଲେ ଆଉ ମାତୃ ସ୍ନେହରେ ଭରି ଝରି ଆସୁଥିବା ସ୍ତନ୍ୟ ଦେଇ ଆଉଁସିବାକୁ ଲାଗିଲେ । ଶ୍ରୀକୃଷ୍ଣ ତ ସକାଳ କଥା ସବୁ ଭୁଲି ଯାଇଥିଲେ, ସେ ପୁଣି ହସି ହସି କଥା ହେଲେ ! ବସ୍ତୁତଃ ସେ ହିଁ ସୁଖର ଜନନୀ । ପୁରୁଣା କଥା ଭୁଲି ନୂଆ କଥାରେ ମନ ଦେଲେ ଆନନ୍ଦ ହିଁ ମିଳି ଥାଏ ।

ଶ୍ରୀ ସୂତ କହିଲେ—"ମୁନିଗଣ ! ବ୍ରଜରେ ଶ୍ରୀକୃଷ୍ଣ ଏଭଳି ନାନା ପ୍ରକାର ସୁଖଦ ଲୀଳା କରିବାକୁ ଲାଗିଲେ । ସେଥିରୁ ମୁଁ କେତୋଟି ଲୀଳା ଏହାପରେ ଆପଣମାନଙ୍କୁ ଶୁଣେଇବ ।"

## ଛପ୍‌ପୟ

ବାଁଧେ ବନ୍ଧନକେ ଶ୍ୟାମ ନନ୍ଦ ବାବା ଢିଂଗ ଆୟେ ।
ଦାମ ଖୋଲ ମୁଖ ଚୂମି ପ୍ରେମତେଁ ହୃଦୟ ଲଗାୟେ ।।
ବାବା ବୋଲେ—'ବତ୍ସ ! ଗୋଦ ମୈୟା କୀ ଜା ଅବ ।
'ମୈୟା ମାରେ ମୋଇ ନ ଯାଉଁ' ବୋଲେ ହରି ତବ ।।
ଯଶୁମତ ମନ ସନ୍ତାପ ଅତ, ତବ ମମ ମତ ମାରୀ ଗୟୀ ।
ନହୀଂ ସୁତ ଆୟୋ ଅବ ତଲକ, ସୁନ୍ଦର ମାରୁ ବ୍ୟାକୁଲ ଭଈ ।।

●

# ଶ୍ୟାମଙ୍କର ପ୍ରେମମୟୀ ଲୀଳା

ଗୋପୀଭିଃ ସ୍ତୋଭିତୋଽନୃତ୍ୟଦ୍ ଭଗବାନ ବାଲବତ୍ କ୍ୱଚିତ୍ ।
ଉଦ୍‌ଗାୟତି କ୍ୱଚିନ୍ମୁଗ୍ଧସ୍ତଦ୍‌ବଶୋ ଦାରୁଯନ୍ତ୍ରବତ୍ ।।

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୭ ଶ୍ଳୋକ)

## ଛପ୍‌ପୟ

ପାଁଇ ଭଈ ପ୍ରଭୁ ଶ୍ୟାମ ମାରୁ କେ ହୃୟ ଲପଟାୟେ ।
ଉମଗେ୍ୟା ପୁତ୍ର ସନେହ ନୟନ କେ ନୀର ବହାୟେ ।।
ୟେ ବ୍ରଜମହଁ ହରି ନଚ୍ୟ ନଈ ଇ ଧୂମ ମଚବେଁ ।
ସାଧାରନ ଶିଶୁ ସରିସ ହରିହୁଁ ଯୁବତୀ ଫୁସଲାବେଁ ।।
ବେଦ ବଚତ ବନ୍ଦିତ ଜଗତ, ସୋଉ ଶିଶୁ ସମ ବନ ଗୟେ ।
ଜାକେ ବଶ ମହଁ ସବ ଜଗତ, ତେ ବ୍ରଜବାସନୀ ବଶ ଭୟେ ।।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଭଗବାନଙ୍କୁ କେତେବେଳେ ଗୋପୀମାନେ ଫୁସୁଲେଇ ଦେଲେ ସେ ସେମାନଙ୍କ କଥାରେ ନାଚନ୍ତି; କାଠକଣ୍ଢେଇ ଭଳି ସେଇମାନଙ୍କ ଅଧୀନରେ, ସେଇମାନଙ୍କ ପ୍ରେରଣାରେ ସରଳ ବାଳକ ଭଳି ଉଚ୍ଚସ୍ୱରରେ ଗୀତ ଗାଆନ୍ତି ।"

ଭଗବାନଙ୍କୁ ମୁଁ ବିଦ୍ୟା ବୁଦ୍ଧି ବଳରେ ବଶ କରିନେବି ବୋଲି କିଏ ଭାବିଲେ, ତା'ର ସେଭଳି ଭାବନା ବୃଥା କଥା । ବେଦ ବି ଯାର ଅନ୍ତପାଇ ପାରି ନାହିଁ, ବ୍ରହ୍ମାଦି ଦେବଗଣ ସହସ୍ର ବର୍ଷର ଘୋର ତପସ୍ୟା ଆଉ ସମାଧି ଦ୍ୱାରା ଯା'ର ଯଥାର୍ଥ ତତ୍ତ୍ୱକୁ ବୁଝିପାରିଲେ ନାହିଁ, ତାଙ୍କୁ ଏଇ ଅଳ୍ପ ମତି, ଅଳ୍ପାୟୁ ଅଳ୍ପ ଗୁଣର ମନୁଷ୍ୟ ନାମକ ଜୀବ ନିଜର ଅଳ୍ପ ବୁଦ୍ଧି ଓ ସାଧାରଣ ବିଦ୍ୟା ଦ୍ୱାରା କିଭଳି ବୁଝିବ ? ଭଗବାନଙ୍କଠାରୁ ଅଧିକ ଚତୁର କିଏ ଥିଲେ ବା ତାଙ୍କୁ ଚାତୁର୍ଯ୍ୟରେ ଜିଣି ମିବ ! ମାତ୍ର ସେତ ଚତୁରଙ୍କ ମଧ୍ୟରେ ଚତୁର । ତାଙ୍କୁ ଚତୁର ପଣରେ କେହି ଜିଣି ପାରିବେ ନାହିଁ । ତାଙ୍କୁ କେହି ସରଳ ଭାବରେ ବଶୀଭୂତ କରିବ ତ କରିବ । ସରଳତାର ବଶ ହୋଇ ସେ ମଧ୍ୟ ସାଧାରଣ ଶିଶୁଭଳି ସରଳ ହୋଇ ଯା'ନ୍ତି । ଯାହା ପାଖରେ ନିଷ୍କପଟ ସରଳତା ଦେଖନ୍ତି ସେ ତା'ର ଅଧୀନ ହୋଇ ଯାଆନ୍ତି । ଅଧୀନ ହୋଇ ଏଭଳି ଲୀଳା ପ୍ରଦର୍ଶନ କରନ୍ତି ଯେ ତାହା ଦେଖି ଚରାଚର ବିଶ୍ୱ ପରମ ପବିତ୍ର ହୋଇ ଯାଏ । ବ୍ରଜବାସୀଙ୍କ ଭଳି ସରଳ କିଏ ଥାଇପାରେ । ଭଗବାନଙ୍କୁ ସେମାନଙ୍କର ସରଳତା କିଣି ନେଲା ଆଉ ସେ ତାଙ୍କର ଅଧୀନ ହୋଇଗଲେ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଅର୍ଜୁନ ବୃକ୍ଷମାନଙ୍କର ଉପୁଡ଼ି ପଡ଼ିବା ଗୋପବାସୀଙ୍କ ମନରେ ବେଶ୍ ପ୍ରଭାବ ପକାଇଲା । ସେମାନେ ଆଶ୍ଚର୍ଯ୍ୟ ହୋଇ ସେମାନଙ୍କର ଉପୁଡ଼ି ପଡ଼ିବା ବିଷୟରେ କଥା ହେବାକୁ ଲାଗିଲେ । ମାତ୍ର ଯଶୋଦାଙ୍କ ମନରେ ତା'ର କୌଣସି ପ୍ରଭାବ ପଡ଼ିଲା ନାହିଁ । ତାଙ୍କର ତ ସେ ଯାଏଁ ଦୁଃଖ ଥିଲା ଯେତେବେଳେ ଯାଏଁ ଶ୍ରୀକୃଷ୍ଣ ତାଙ୍କ କୋଳକୁ ଆସି ନ ଥିଲେ । ଶ୍ୟାମଙ୍କର ସ୍ପର୍ଶ ପାଇଲା ମାତ୍ରକେ ତାଙ୍କୁ ଛାତିରେ ଜଡ଼େଇ ନେଇ ସେ ସବୁ ଦୁଃଖ ପାସୋରି ପକେଇଲେ । ଶ୍ୟାମଙ୍କର ମୋହନ ରୂପରେ କି କମିଆଁ ଥିଲା ଯେ ଥରେ ଦେଖି କେହି ବି ତୃପ୍ତ ହେଉ ନ ଥିଲା । ବାରମ୍ବାର ଦେଖିବାକୁ ମନ କରୁଥିଲା । ସେଇ ରୂପର ଇନ୍ଦ୍ରଜାଲ ସମସ୍ତଙ୍କୁ ବଶ କରିଥିଲା । କାହାକୁ ହେଲେ ଶାନ୍ତି ମିଳୁ ନ ଥିଲା, ଘଡ଼ିଏ ଶ୍ୟାମଙ୍କୁ ନ ଦେଖିଲେ । କିଏ ଦହି ଗୋଳି ଦେବାକୁ ତ କିଏ ଡବି ଧରେଇ ଦବାକୁ; ସେମିତି କିଛି ନା କିଛି କାମ ବାହାନାରେ ନନ୍ଦ ଭବନକୁ ଆସି ପହଞ୍ଚି ଯାଉଥିଲେ । ଦଳ ଦଳ ଗୋପୀମାନେ ଶ୍ୟାମ ସୁଧା ସାଗରରେ ଅବଗାହନ କରି ଆତ୍ମବିସ୍ମୃତ ହୋଇ ଯାଉଥିଲେ । ଶ୍ୟାମଙ୍କର ବ୍ରଜଭୂମିରେ ପ୍ରକଟିତ ହେବାର ଏକମାତ୍ର ପ୍ରୟୋଜନ ଯେମିତି ବ୍ରଜ ସୁନ୍ଦରୀଙ୍କୁ ସୁଖ ଦେବା । ତେଣୁ ସେ ଟୋକାଏ ଘରୁ ଆଉ ଟୋକାଏ ସେଠାରୁ ଆଉ ଏହିପରି ଭାବରେ ଘୂରି ବୁଲୁଥିଲେ । ସରଳ ବାଳକଟିଏର ବାଲ୍ୟଖେଳ, ଲୀଳା ଖେଳା କରୁଥିଲେ । ଭିତରେ କିନ୍ତୁ ସେ ସେତେ ସରଳ ନୁହନ୍ତି, ଯେତେ ବାହାରୁ ମନେ ହୁଅନ୍ତି । ଗୋପୀମାନେ ତାଙ୍କ ପାଇଁ ଏତେ ସ୍ନେହାତୁର ହୋଇଥିଲେ ଯେ ଦେଖିଲା ମାତ୍ରକେ ସବୁ କଥା ଭୁଲି ଯାଉଥିଲେ ।

କେଜାଣି—କୋଉଠୁ ସେ ନାଚ ଶିଖିଥିଲେ । ପାଦରେ ତ ବାଜେଣୀ ନୂପୁର ମାଆ ଖଞ୍ଜି ଦେଇଥିଲେ । ସେ ତାଙ୍କୁ ବଜେଇ ବଜେଇ ଚଳ ଚଳ ବୁଲନ୍ତି । ମାଆ କହନ୍ତି 'କାହ୍ନା, ନାଚ ଦେ ଟିକଏ । ତା'ପରେ ସେ ହାତଟେକ, ଅଣ୍ଟା ବଙ୍କେଇ ଆଖିରେ ଓଠରେ ଭାବ ଖେଳେଇ ପାଦ ମିଳେଇ ନାଚିବା ଆରମ୍ଭ କରି ଦିଅନ୍ତି । ଗୋପୀମାନେ ତାଙ୍କର ନାଚ ଦେଖି ହସି ହସି ବେଦମ ହୋଇ ଯାଅନ୍ତି । ବୁଢ଼ୀ ବୁଢ଼ୀ ଗୋପୀମାନେ କହନ୍ତି, 'ଯଶୋଦା ରାଣୀ, ଭାରି ନାଚୁଣିଆ ପୁଅଟିଏ ଜନମ କଲୁ ଲୋ ତୁ । ସିଏ ତ ବଡ଼ ବଡ଼ ପାଇକି ଗାହକ ବାହାକର କାନ କାଟି ଦବ ।

ସେତେବେଳେ ମାଆ କହନ୍ତି—''ଟିକିଲୋକ ତ ! ଏମିତି ଖାଲିଦିନ ଖେଳୁଛି ।' ଗୋପୀମାନେ ଶ୍ରୀକୃଷ୍ଣଙ୍କ ନାଚ ଦେଖିବାକୁ ସବୁବେଳେ ଚାହିଁ ରହିଥାନ୍ତି । ଯେତେବେଳେ ନନ୍ଦ ଆସନ୍ତି ଆଉ ମାଆ ଶ୍ରୀକୃଷ୍ଣଙ୍କୁ ନାଚିବାକୁ କହନ୍ତି ସେତେବେଳେ ସେ ଲାଜେଇ ଯାଇ ମାଆ କୋଳକୁ ଆସି ପଣତ କାନରେ ମୁହଁ ଲୁଚେଇ ଦିଅନ୍ତି । ସେତେବେଳେ ଚୁମା ଦେଇ ମାଆ କହନ୍ତି—'କାହ୍ନା ! ତୁ ଭାରି ଲାଜକୁଳା ଟେ । କିଏ କ'ଣ ନିଜ ଘରେ ଲାଜ କରେ ? ଏମିତି ଲାଜ କଲେ କେହି ତୋର ପୁଅଣି ଝିଅଙ୍କ ବି କରିବ ନାହିଁ ।'

ଶ୍ୟାମସୁନ୍ଦର ଝିଅଙ୍କ ମେଳରେ ମନଖୋଲି ନାଚନ୍ତି ହେଲେ ପୁରୁଷ ମେଳରେ ଲାଜେଇ ଯାଆନ୍ତି । ଘର ଘର ବୁଲି ନାଚ ଦେଖାନ୍ତି । ଗୋପୀମାନେ କହନ୍ତି, କାହ୍ନା, ତମେ ନାଚ ଦେଖେଇଲେ ଆମେ ତମକୁ ତ ଟିକେ ଲହୁଣୀ ଦେବୁଁ । ତା'ପରେ ଆଉ କ'ଣ ? ଲହୁଣୀ ଲୋଭରେ ନାଚ ବସନ୍ତି ।

ତା'ପରେ ଆଉଜଣେ ପଚାରି ବସେ—''କାହ୍ନା ! ଖାଲି ନାଚ ଜାଣିଛ ନା ଗାଇ ଜାଣିଛ ?'

ଶୁଣିଲେ ସେ ଗାଲ ଫୁଲେଇ କହନ୍ତି—''ଆରେ ଗାଇ ଜାଣେ ବି !''

ଗୋପୀମାନେ କହନ୍ତି—''ଆଚ୍ଛା ଗାଇଲ ଦେଖି । ଯାମୁଡାଳୀ ଜାଣିଛ !''

ସେ କହନ୍ତି—''ସବୁ ଜାଣିଛି' ଆଉ ଗାଇ ଶୁଣେଇଲେ ଗୋପୀମାନେ ହସି ହସି ଲୋଟି ଯାଆନ୍ତି । କେଡ଼େ ସୁକୁମାର ଗୋଲଗାଲ ମୁହଁ, ନାକୀ ଓଠରୁ ସେଇ ଭଙ୍ଗା ଭଙ୍ଗା ଶବ୍ଦଗୁଡ଼ିକ ଅମୃତ ଭଳି ଝରି ଯାଆନ୍ତି । ସେ ଗୀତ ଶୁଣି ଗୋପୀମାନେ ମନେ ମନେ କୁତୁକି ଉଠନ୍ତି, ଉଲସି ଉଠନ୍ତି । ଶ୍ରୀକୃଷ୍ଣ ଯେମିତି ବି ଗାଇଲେ ତାଙ୍କ ମୁହଁରେ ସେ ଗୀତ କେତେ ମିଠା ଲାଗେ । ବଡ଼ ବଡ଼ କେତେଜଣ ତାଙ୍କୁ ଗୀତ କେତୋଟି ମୁଖସ୍ଥ କରେଇ ଦେଇଥିଲେ । ସେଇଆକୁ ସେ ନବୁଝି ନଶୁଝି ସଭିଁଙ୍କ ଆଗରେ ଗାଇ ଦେଉଥିଲେ । ତା'ର ଅର୍ଥ କ'ଣ ସେ ଜାଣୁ ନ ଥିଲେ । ସେ ଜାଣନ୍ତି ନାହିଁ ବୋଲି ହେଲେ କହିବା କେମିତି ?

ସେ ସବୁ ଜାଣି ନ ଜାଣିଲା ଭଳି ହେଉଥିଲେ । ସେ ଅର୍ଥ ପଛରେ ଗୋଡ଼ଉ ନ ଥିଲେ । ସେ ତ ଭାବଗ୍ରାହୀ । ଶବ୍ଦର ତ ଅନେକ ଅର୍ଥ ଅଛି । ଗୋଟାଏ ଶବ୍ଦର କେତେ ଅର୍ଥ ହୋଇ ପାରେ । ହେଲେ ସେ ତ ହୃଦୟକୁ ଚାହାନ୍ତି । ସେ ଭାବଟି କେତେ ଗଭୀର ସେଇଆ ପାଇଁରେ ତାଙ୍କର ଭାବ !

ଗୋପୀମାନେ ତାଙ୍କୁ କଥା କଥାକେ ଭୁଲେଇ ଦିଅନ୍ତି । ସେ ଭାବଭୋଳା, କଥା କଥାକେ ଗୋପୀଙ୍କ ପାଲରେ ପଡ଼ନ୍ତି । କିଏ କହିଲା—"କାହ୍ନା ! ନାଚିଲେ ଲହୁଣୀ ଦେବି । ଆଉ ନାଚ ପାଇଲେ କହି ଦବ ନା ହେଲା ନାହିଁ । ସେ ପୁଣି ଗାଇ ଶୁଣେଇବେ । ତା'ପରେ ବି ଲହୁଣୀ ନ ଦେଲେ କାନ୍ଦିବେ, ଲୁଗା ଟାଣିବେ, ତା' ଉପରେ ଚଢ଼ି ଯିବେ । ଗୋପୀମାନେ ହସି ଉଠିବେ, କୃତ୍ୟ କୃତ୍ୟ ହୋଇ ଯିବେ ।"

ଦିନେ ସେ କୁଆଡ଼େ ଏକୁଟିଆ ଯାଉଥିଲେ । ଭାବବତୀ ଗୋପୀଟିଏ ଗୋବର ପକଉ ଥିଲା । ତା' ମନରେ ତ ସବୁବେଳେ ସେଇ ମନମୋହନ ରହୁଥିଲେ; ସେ ଶ୍ୟାମସୁନ୍ଦରଙ୍କୁ ଦେଖିଲା ମାତ୍ରକେ ଡାକ ପକେଇଲା···"କାହ୍ନା ! କୁଆଡ଼େ ଯାଉଛ ?"

ସେ ଲେଉଟି ଚାହିଁଲେ ଆଉ ହସି ଦେଇ କହିଲେ—"ଆରେ ଭାଉଜ ! ମୁଁ ତ ତମରି ପାଖକୁ ଆସୁଥିଲି ।

ଗୋପୀ କୃତ୍ୟ କୃତ୍ୟ ହୋଇଗଲା । କହିଲା—"ମୋ ପାଖକୁ ?"

'ହଁ, କାଲି କହି ନଥିଲ ! ଆସିବ । ତମକୁ ଟିକେ ଲହୁଣୀ ଦେବି । ତମଲାଗି କାଢ଼ି ରଖି ଦେଇଥିବି ।'

ଗୋପୀ କହିଲା—"ଲହୁଣୀ ନା, ସେ କ'ଣ ଏମିତି ସେମିତି ମିଳିଯିବ ? କିଛି ମେହନତ କଲେ ସିନା ?'

ସେ କହିଲେ—"ଠିକ୍ ଅଛି ଭାଉଜ ! ତମେ ଯାହା କହିବ ମୁଁ କରିଦେବି ।"

ଗୋପୀ କହିଲା—"ଠିକ୍ ଅଛି ଏ ଗୋବର ଡାଲା ମୋ ମୁଣ୍ଡ ଉପରକୁ ଉଠେଇ ଦବ । ତମେ ଯେତେଥର ଉଠେଇବ ମୁଁ ସେତେ ଗୁଳା ଲହୁଣୀ ଦେବି ।"

ସେ କହିଲେ—"ହଉ । ଶେଷକୁ ହିସାବ ଗୋଳମାଳ କରିବ ନାହିଁ ନା !"

ଗୋପୀ କହିଲା···'ନା ଜମା ନୁହେଁ । ତମେ ଯେତେ ଉଠେଇ ଦବ ମୁଁ ସେତିକି ଗୋବର ଦାଗ ତମ କପାଳ ଗାଲରେ ଦେଇ ଦେଇ ଯିବି !'

ସେ ତ ସେଥିପାଇଁ ପଛି ନ ଥିଲେ । ସ୍ୱୀକାର କରି ନେଲେ । ଗୋପୀ ଡାଲା ଭରି ଦେଉଥାଏ, ସେ ଉଠେଇଲେ ଶ୍ରୀକୃଷ୍ଣ ବି ପୁରି ବଳ ଖଟେଇ ହାତ ଲଗାନ୍ତି । ସେତେବେଳେ

ତାଙ୍କର ଅରୁଣ କପାଳ ଆହୁରି ଅରୁଣ ମନେ ହୁଏ । ଅରେ ଆସିଲେ ପାତଳ କାଠିଟିଏରେ ଗୋବର ବୁଡ଼େଇ କପାଳରେ ନେଇ କେଡ଼େ ଯତନରେ ସେ ଆଙ୍କି ଦିଏ, ଯେମିତି ପତ୍ରାବଳୀ ଲେଖୁଛୁ । ସେ ଆଉ ଅଧିକ ଉଠେଇ ପାରିଲେ ନାହିଁ । ଚଉସ୍ତେର ଚିତ୍ତ ତା'ର ସେଠେଇ ନେଇଥିଲେ । କିଛି ସମୟ ପରେ ଗୋପୀ କହିଲା - ବାସ୍ ହେଲା, ମୁଁ ଆଉ ପାରିବ ନାହିଁ ।'

'ତେବେ ଲହୁଣୀ ଦିଅ !'

ସେ କହିଲା—"କେତେ ହେଲା ?" ଆଉ କପାଳର ରେଖା ଗଣି ବସିଲା । ଚଟିସା'ର କହିଲା—'ଦଶ ହେଲା ।'

ସେ କହିଲେ—"ମୁଁ କେତେବେଳହେଲା ଉଠେଇ ଗ୍ଲଲିଛି, ଆଉ ତମେ କହୁଛ କ'ଣ ନା ଦଶ ହେଲା ?"

ଗୋପୀ କହିଲା—"ତମେ ଆଉ କା' ହାତରେ ଦେଖେଇ ନଥିଲ ? ତା'ପରେ ଆଉ କ'ଣ ଗ୍ଲଲିଲ ଝଗଡ଼ା । ତେଣିକି ଗୋଟି ଗୋଟି ହୋଇ ଆସି ଗୋପୀମାନେ ଜୁଟିଲେ । ସେମାନେ ତ ସବୁବେଳେ ଏମିତି ଓର ଉଣ୍ଡି ରହିଥା'ନ୍ତି । ସେ ତାଙ୍କର ଅଭିଯୋଗ ସବୁ ଗୋପୀଙ୍କୁ ଶୁଣେଇଲେ । ସେମାନଙ୍କ ଭିତରୁ ଜଣେ କହିଲା—"ମୁଁ ଗଣୁଛି ତା' ହେଲେ । ଗଣିବା ଖେଳ ଗ୍ଲଲିଲା । ଶ୍ରୀକୃଷ୍ଣ କେଡ଼େ ଖୁସିରେ ମୁହଁ ଦେଖେଇ ଦିଅନ୍ତି ଆଉ ଗୋପୀ ଗୁହିଁ ଦେଇ ଆପେ ଆପଣାକୁ ହଜେଇ ଦିଏ, କୃତାର୍ଥ ହୋଇ ଯାଏ । ଆଙ୍ଗୁଠି ମାଣ ମାଣ ଗଣି ବସେ । ସେପଟ କେତେବେଳଯାଏ ଖେଳ ଗ୍ଲଲିଲା । ଶେଷକୁ କୃଷ୍ଣ ଜଣେ ଯେତେ ହେଲା ବୋଲି କହିଲେ ସେଇଆ ହିଁ ହେଲା । ଗୋପୀମାନେ ତାଙ୍କୁ ଲହୁଣୀ ଖୁଆଇ ସନ୍ତୋଷ କରି ଦେଲେ ।

ଶ୍ରୀକୃଷ୍ଣଙ୍କୁ ସେଇ ଗୋପୀମାନେ କାଠକଣ୍ଢେଇ ଭଳି ନଚଉ ଥିଲେ । ଭଗବାନ ତ ସବୁବେଳେ ଭକ୍ତର ଅଧୀନ । ଗୋପୀମାନେ ତାଙ୍କୁ ଯେମିତି ନଚଉଥିଲେ, ସେ ସେମିତି ନାଚୁଥିଲେ । ବ୍ରଜର ସବୁକଥା ବିଚିତ୍ର । କୋଉଠି ସିନା ଜୀବକୁ ଈଶ୍ୱର ନଚାନ୍ତି ସେଇଠି ବ୍ରଜବାସୀ ଈଶ୍ୱରଙ୍କୁ ନାଚୁଣିଆ କରି ନଚଉଥିଲେ । ସେଠାରେ ସେ ସର୍ବେଶ୍ୱର ଏତେ ନିଘିହ ହୋଇ ଯାଇଥିଲେ ଯେ ମୟୂର ଚୂଳ ଖଞ୍ଜି, ଓଢ଼ଣୀ ଟାଣି ଯେତେବେଳେ ମନ ସେତେବେଳେ ନାଚିବାକୁ ଠିଆ ହୋଇ ଯାଆନ୍ତି । ବ୍ରଜରେ ନା ଲଜ୍ଜା ନା ସଙ୍କୋଚ । ନାଚି ଗାଇ ବ୍ରଜବାସୀଙ୍କୁ ସୁଖୀ କରିବାକୁ ସତରେ ଯେମିତି ସେ ପଣ କରିଥିଲେ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଏଭଳି ଭଗବାନ ବ୍ରଜରେ ବାଳକ ରୂପରେ ପ୍ରାକୃତ ଶିଶୁମାନଙ୍କ ଭଳି ଏକୁ ଆରେକ ଅଦ୍ଭୁତ, ଏକୁ ବଳି ଏକ ଚମତ୍କାରିକ ମନେ ହେଉ

ଲୀଳା କରିବାକୁ ଲାଗିଲେ । ସେ ଲୀଳା ଅନନ୍ତ । ନିରନ୍ତର ଗାଇଲେ ବି ଶେଷଦେବ ଓ ସାରଦା ତା'ର କଳନା କରି ପାରିବେ ନାହିଁ । ତା'ହେଲେ ଆମଭଳି ଅଳ୍ପମତି କି କଳନା କରିବ ?"

## ଛପ୍‌ପୟ

କବହୁଁ ନାଚେଁ ନାଚ ଗାନ କବହୁଁ ବର ଗାବେଁ ।
ମାଁଗେ ମାଖନ କବହୁଁ କବହୁଁ ହଠି ଘର ମଚାବେଁ ।।
କବହୁଁ ମାଁଗେ ଭୀଖ ଭିଖାରୀ ବେଷ ବନାଇ ।
କବହୁଁ ଘର ଘର ଜାଇ ଦିଖାବେଁ ସ୍ୱାଙ୍ଗ କହ୍ନାଇ ।।
କବହୁଁ ଆଁଗନ ଲୀପକେ, ବୈଠିକ ପୁରି ଜେ୍ୟାନାର କରି ।
ବାଂହୁ କରେଁ ଦୁଲହା ବନେ, ମୋର ପଂଖ ଶିର ମୌର ଧରି ।।

●

## ଭୃତ୍ୟବଶ୍ୟ ଭଗବାନ

ବିଭର୍ତ୍ତି କ୍ୱଚିଦାଜ୍ଞପ୍ତଃ ପୀଠକୋନ୍ମାନପାଦୁକମ୍ ।
ବାହୁକ୍ଷେପଂ ଚ କୁରୁତେ ସ୍ୱାନାଂ ଚ ପ୍ରୀତିମାବହନ୍ ।।
ଦର୍ଶୟଂସ୍ତଦ୍ୱିଦାଂଲୋକ ଆତ୍ମନୋ ଭୃତ୍ୟବଶ୍ୟତାମ୍ ।
ବ୍ରଜସ୍ୟୋବାହ ବୈ ହର୍ଷଂ ଭଗବାନ୍ ବାଲଚେଷ୍ଟିତୈ ।।

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୮-୯ ଶ୍ଲୋକ)

## ଛପ୍‌ପୟ

କାମ ବତାବେଁ ମାତୁ ପଦ ତଡନ୍ଛନ କରି ଲାବେଁ ।
ମାଁଗେ ମାତା ବସ୍ତୁ ଦୌରିକେ ତାହି ଉଠାବେଁ ।।
ବାଟ ତରାଜୁ ଲାଇ ଧରେ ଆଗେ ମୈୟା କେ ।
କପଡ଼ା ଲାବେଁ ଦୌରି ବଡ଼େ ହଲଧର ଭୈୟା କେ ।।
ଧୋବେ ପଗ ନନ୍ଦରାୟ ଜବ, ଲଇ ଖଡ଼ାଉଁ ପ୍ରଭୁ ଧରେଁ ।
ଭକ୍ତବଶ୍ୟ ଶ୍ରୀ ଜଗଦ୍‌ପତି, ସେବକ ସମ କାରଜ କରେଁ ।।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଭଗବାନ ଶ୍ରୀକୃଷ୍ଣ ଜ୍ଞାନୀ ପୁରୁଷଙ୍କୁ ନିଜର ଭକ୍ତ ବଶ୍ୟତା ଦେଖାଇ ବ୍ରଜବାସୀଙ୍କୁ ଆନନ୍ଦ ପ୍ରଦାନ କରି ବିଭିନ୍ନ ପ୍ରକାର ବାଲ୍ୟଲୀଳା କରିବାକୁ ଲାଗିଲେ । କେତେବେଳେ ଆଦେଶ ଦେଲେ ପୀଢ଼ା, ବଟକରା, ଚପଲ୍ ତଥା ପାଦୁକା ପର୍ଯ୍ୟନ୍ତ ଉଠେଇ ଆଣନ୍ତି । କେତେବେଳେ ଜଂଘରେ ବାହୁରେ ବାହୁଷ୍ଫୋଟ ମାରି ମଲ୍ଲିଯୁଦ୍ଧ କରନ୍ତି । ଏପରି ଭାବରେ ସେ ବନ୍ଧୁ ବାନ୍ଧବଙ୍କର ଆନନ୍ଦ ବର୍ଦ୍ଧନ କରି ସୁଖ ପ୍ରଦାନ କରିବାକୁ ଲାଗିଲେ ।

ବାଳକ ଯେତେବେଳେ ଚାଲିବା ଆରମ୍ଭ କରେ ସେ ସେତେବେଳେ ଚାଲିବାରେ ବେଶ୍ ଆନନ୍ଦ ପାଇଥାଏ । ଯେତେବେଳେ କହିବା ଆରମ୍ଭ କରେ ସେତେବେଳେ ସେ ଏଣୁତେଣୁ ନାନାକଥା କହିବାକୁ ସୁଖପାଏ । ଯେତେବେଳେ ନୂଆ ନୂଆ ଜିନିଷ ବିଷୟରେ ତା'ର ଜାଣିବାର ଇଚ୍ଛା ବଢ଼ିଯାଏ ସେତେବେଳେ ତା' ଆଖିରେ ଯେଉଁ ଜିନିଷ ପଡ଼େ ତା' ବିଷୟରେ ଜାଣିବାକୁ ସେ ଲାଳାୟିତ ହୋଇଥାଏ । ଯେତେବେଳେ ତା'ର କାମ କରିବାକୁ ବଳ ଆସେ ସେତେବେଳେ ଶୀଘ୍ର ଶୀଘ୍ର ସେ କାମ କରି ଦେଇ ଦେଖେଇ ଦେବାର ଆନନ୍ଦ ପାଏ । ଚାଲିଲେ ଦୌଡ଼ିଯାଏ । ଖେଳ ବସିଲେ ସେଥିରେ ମଜିଯାଏ । ବାଲ୍ୟାବସ୍ଥା ଭାରି ସୁଖର ସମୟଟିଏ । ବାଳକ ଯଦି ଚଞ୍ଚଳ ହେଲା, ଯଦି ପିଲା ଦିନରୁ ପିତାମାତାଙ୍କ ପ୍ରତି ଭକ୍ତି ପ୍ରଦର୍ଶନକାରୀ ହେଲା, ତାଙ୍କର ଆଜ୍ଞାକାରୀ ହେଲା ତେବେ ତା'ପ୍ରତି ମାତାପିତାଙ୍କର ଅନୁରାଗର ସୀମା ରହେ ନାହିଁ । ଏହା ତ ମୁଁ ସେହି ଚଞ୍ଚଳ ଅଥଚ ଯୋଗଭ୍ରଷ୍ଟ ହୋଇ ଜନ୍ମ ଗ୍ରହଣ କରିଥିବା ପିଲାଙ୍କ କଥା, ଯେଉଁମାନେ କୌଣସି ସାଧନରେ କିଛିତ ଭୁଲ ହେବା ଫଳରେ ପବିତ୍ର ଅଥବା ଯୋଗୀ ମହର୍ଷିଙ୍କ କୁଳରେ ଜନ୍ମ ଗ୍ରହଣ କରିଥାନ୍ତି ଏବଂ ସେମାନଙ୍କୁ ସେମାନଙ୍କର ଗୁଣପାଇଁ ମାତା ନୟନ ପିତୁଳା ପରି ରଖନ୍ତି; ଯଦି ସମସ୍ତ ସଦ୍‌ଗୁଣର ଖଣି, ସର୍ବେଶ୍ୱର ଜଗତପତି କା'ର ପୁତ୍ର ହୋଇ ସେବା କରିବେ ତେବେ ସେ ପିତାମାତା କେଉଁପରି ଆନନ୍ଦ ପାଇବେ ତା'ର କଳନା କରିବା ମଧ୍ୟ ସହଜ ନୁହେଁ । ଏହା ମର୍ତ୍ତ୍ୟର ମରଣଧର୍ମା ମନୁଷ୍ୟ କିପରି କରିବ ? ସେଭଳି ମାତା ପିତାଙ୍କର ଯେତେ ପ୍ରଶଂସା କରାଯାଉ କମ୍ ହେବ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ! ଶ୍ରୀକୃଷ୍ଣ ଏଭଳି ସରଳ ଲୀଳା କରୁଥିଲେ ଯାହା ଦେଖି ସମସ୍ତେ ପରମ ସୁଖ ପାଉଥିଲେ । ସେ ବୁଢ଼ୀଟିଏକୁ ଏକାକୀ ଦେଖିଲେ କାଠ କାଢ଼େଇ ଘରେ ପହଞ୍ଚେଇ ଦେଉଥିଲେ, କା'ର ଗୋବର ଉଠେଇ ଦଉଥିଲେ ତ କା'ର ଗାଈ ଦୁଧ ନ ଦେଇ ଲାତ ମାରୁଥିଲେ ବାଛୁରୀକୁ ଧରି ଦଉଥିଲେ । ନିଜେ କୁନି କୁନି ହାତରେ କଅଁଳ ଛନଛନ ଘାସ ନେଇ ଖୁଏଇ ଦେଉଥିଲେ । ଧୀରେ ଧୀରେ ସେ ବଡ଼ ବଡ଼ ଜିନିଷ ଉଠେଇବାକୁ ଲାଗିଲେ ।

ମା କହିଲେ—''କାହ୍ନା ! ସେ ଡଗକୁ ଆଣିଲୁ ସେଇଠୁ ।' ସେ ଦଉଡ଼ି ଯାଇ ସାଙ୍ଗେ ସାଙ୍ଗେ ନେଇ ଆସିବେ ।

ମା କହିବେ—ଯା'ତ ସେ ବଟକଗି ଆଣ ।

ଆଉ ସେ ଦଉଡ଼ି ଯାଇ ପୂରି ବଳ ଖଟେଇ ବଟକରି ଉଠେଇ ବସିଲେ ଗୋପୀମାନେ ହସି ଦେଇ କହିବେ· 'ମା ତମର ପେଟପୁରି ଦୁଧ ଦଉ ନାହାନ୍ତି କି ? ତମ ହାତରେ ବ ବଟକଗିଟିଏତ ଉଠୁ ନାହିଁ । ସେତକରେ ସେ ଉଠେଇ ପେଟଭରି ଦେଇ ଟେକ ଆଣି ମାଆକୁ କହିବେ, ଦେଖ ମୁଁ କେମିତ ନକେ ନକେ ଟେକ ଆଣିଛି ।'

ମା' କହନ୍ତି···'ତୁ ମୋର ରଜାପୁଅ ! କେତେ ବଳୁଆ ।'

ତା'ପରେ ରୋହିଣୀ କହନ୍ତି 'ଆଚ୍ଛା କାହ୍ନା, ସେ ଚଉକିଟି ନେଇ ଆସିଲୁ ।'

ଶୁଣି ଦେଇ ସେ ଯାଇ ଯେ କୌଣସି ମତେ ଚଉକ ଟେକ ଟଲମଲ ପାଦ ପକେଇ ନେଇ ଆସି କହନ୍ତି—'ଦେଖ, ମୁଁ କେମିତ ନକେ ନକେ ନେଇ ଆସିଲି । ମାଆ ଦଉଡ଼ି ଯାଇ ଚଉକଟି ଅଧବାଟରୁ ଧରନେଇ କହନ୍ତି, 'କାହ୍ନା କେଡ଼େ ବଡ଼ ହୋଇ ଗଲୁଣି, ଏଣିକି ସବୁ କାମକୁ ସେ ପାରବ ।'

ନନ୍ଦବାବା ବାହାରୁ ଆସି ରୋଷେଇ ଘରକୁ ଭୋଜନ ପାଇଁ ଆସିଲେ ନକେ ଘଣେ ଦା ପାଦଧୋଇ କଠଉ ପିନ୍ଧେଇ ଦଅନ୍ତି । ସେ କଠଉ ପିନ୍ଧି ରୋଷେଇ ଘରକୁ ଯାଆନ୍ତି । କୋଉ ଦନ ପାଖରେ କଠଉ ନ ଥିଲେ ଡାକ କହନ୍ତି—'କାହ୍ନା ! ସେଇଠି ବାବାଙ୍କ କଠଉ ଅଛି ନେଇ ଆସିଲୁ । ଅଉ ସେତକରେ ସେ ଦଉଡ଼ି ଯାଇ କଠଉ ମୁଣ୍ଡେଇ ନେଇଆସନ୍ତି । ନନ୍ଦ ଦେଖି—'କାହ୍ନା ଏବେ ଭାର କାମିକା ଆଉ ଚତୁର ହେଲଣି କହି ସେ ବେଶ୍ ଖୁସୀଟାଏ ହୋଇ ଯାଆନ୍ତି । ଏବେ ଏବେ ମାଆ ବାବାଙ୍କ ପାଦ ଧୋଇ ବସିଲା ମାତ୍ରକେ ସେ ଦଉଡ଼ି ଯାଇ କଠଉ ନେଇ ଆସନ୍ତି । ଅଉ ତାଙ୍କ ଆଗରେ ରଖି ଦଅନ୍ତି ।'

ସୂତ କହୁଛନ୍ତି—'ହେ ମୁନିଗଣ, ଯା'ର ଚରଣ ବନ୍ଦନା କେତେ ବଡ଼ ବଡ଼ ମୁନି ଋଷି ଲୋକପାଳ କରନ୍ତି । ଯା'ର ଚରଣ ପାଦୁକା ସ୍ପର୍ଶ ପାଇବାକୁ ବ୍ରହ୍ମାଦି ଦେବତା ନିରନ୍ତର ଲାଳାୟିତ ହୋଇ ରହିଛନ୍ତି, ସେହି ଭଗବାନ ନନ୍ଦଙ୍କର ଚରଣପାଦୁକା ମୁଣ୍ଡେଇ ନେଇ ଆସୁଛନ୍ତି, ଏହା ତାଙ୍କର ଭକ୍ତବତ୍ସଳତା ଛଡ଼ା କ'ଣ ହୋଇ ପାରେ ! ସବୁ ଲୀଳାରେ ସେ ଏହି କଥାହିଁ ଦେଖାଇ ଆନ୍ତି ଯେ ସେ ସର୍ବଦା ଭକ୍ତଙ୍କର ଅଧୀନ ଓ ଅନୁଗତ । ସେ ଭକ୍ତଙ୍କ ପାଇଁ ସବୁକିଛି କରିପାରିବେ । ସେମାନଙ୍କର ସେବା କରିବାକୁ ସେ ପରମ ସୌଭାଗ୍ୟ ବୋଲି ମନେ କରନ୍ତି । ଭଗବାନ ତ ତାଙ୍କର ଭକ୍ତ ଅଉ ଆପଣାର ଲୋକଙ୍କର ଅନେକ ଆଦର କରିଥାନ୍ତି । ସେ ତ ତାଙ୍କର କ୍ରୀତଦାସ ଭଳି ହୋଇଥାନ୍ତି ଅଉ ସେଇ ଲୋଭରେ ତାଙ୍କ

ପଛରେ ଥାଆନ୍ତି ଯେମିତି ତାଙ୍କର ଚରଣ ରଜ ପାଇବେ ଅଉ କୃତାର୍ଥ ହୋଇଯିବେ । ଏଭଳି ଭଗବାନ ନନ୍ଦବାବାଙ୍କର ପାଦୁକା ମୁଣ୍ଡେଇ ଗ୍ଲଲନ୍ତି ତ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି । ସେ ଏହି ଲଳିତ ଲୀଳା ମାଧ୍ୟମରେ ଜଗତ ପୁରୁଷଙ୍କୁ ତାଙ୍କର ଭକ୍ତବତ୍ସଳତାର ପ୍ରମାଣ ହିଁ ଦେଇଥାନ୍ତି । ସେ ଏହି ସରସ ଲୀଳା ମାଧ୍ୟମରେ ଆପଣାର ଆତ୍ମୀୟ ସ୍ୱଜନ ତଥା ଅନ୍ୟାନ୍ୟ ଗୋପବାସୀଙ୍କୁ ଆନନ୍ଦିତ କରିଥାନ୍ତି ।

କେତେବେଳେ କୌଣସି ଗୋପୀ କହିଲେ—"ଶ୍ୟାମ ସୁନ୍ଦର ! ଦେଖିବା ତମେ ମାଆଙ୍କର କେତେ ଦୁଧ ପିଇଛ । କୁସ୍ତି ଲଢ଼ି ପାରିବ ?'

ଶୁଣିଲା ମାତ୍ରକେ କାନ୍ହେଇ ଭିଡ଼ି ସେ ଆଗେଇ ଆସନ୍ତି ଅଉ ମଲ୍ଲଙ୍କ ଭଳି ଜଂଘରେ ବାହୁରେ ତାଳ ମାରନ୍ତି । ନିଜର ସମବୟସ୍କ ପିଲାଙ୍କ ସାଙ୍ଗରେ ମଲ୍ଲ ଯୁଦ୍ଧ କରନ୍ତି । ସେ ସେମାନଙ୍କୁ ଏମିତି କରି ପକାନ୍ତି ଯେମିତି ଖରି ଚଲିଗ ମଲ୍ଲଟିଏ ପରି । ତାହା ଦେଖି ଦେଖଣାହାରୀ ବାହାବା କରନ୍ତି ।

ଦିନେ ଜଣେ ବୁଢ଼ୀ ଆସିଲା । ଘରି କଥା କୁହାଳୀ ବୁଢ଼ୀ । କଥା କହିବାକୁ ସେ ବେବେ ହେଲେ ପଛଘୁଞ୍ଚା ନାହିଁ । ଯେମିତି ବୁଢ଼ୀ ଆସି ପହଞ୍ଚିଗଲେ ଆଉ କାହାକୁ କାମ ସୁଝା କରେଇ ଦିଅନ୍ତି ନାହିଁ । ସଂସାର ଯାକର କଥା ହାତ ହଲେଇ ହଲେଇ କହନ୍ତି ସେ କହୁଥାନ୍ତି । ସେ ଏଇଆ କଲା, ସେଇଆ କଲା । ଏମିତି ପରଚର୍ଚ୍ଚା । ଶ୍ରୀକୃଷ୍ଣଙ୍କୁ ସେ ସବୁ ପରଚର୍ଚ୍ଚା ଆଦୌ ଭଲ ଲାଗେ ନାହିଁ । ତାଙ୍କ ବିଷୟରେ ଭଲ କଥା ହେଲେ ଯାଇଁ ତାଙ୍କୁ ଭଲ ଲାଗେ । ଅନ୍ୟର ଏଣୁ ତେଣୁ କଥା ତାଙ୍କୁ ବିରକ୍ତ କରେ । ସେ ବୁଢ଼ୀର ସ୍ୱଭାବ ଜାଣିଥିଲେ । ସେ ଯୋଉ ଦିନ ଆସି ନନ୍ଦରାଣୀଙ୍କ ପାଖରେ ପହଞ୍ଚିବ ସେ ଦିନ ସାରା ଗଲା ।

ଦିନେ ସେ ଆସିଲା । ଯଶୋଦାମାତା କହିଲେ—"ଦେଖ୍ କାହ୍ନା ! ବୁଢ଼ୀ ମା' ଆସିଛି । ତା' ଲାଗି ପୀଢ଼ା ଆଣିଦେ ।"

ଶ୍ରୀକୃଷ୍ଣ ଦଉଡ଼ିଆ ପୁରୁଣା ଖଟୁଲୀଟି ନେଇ ଆସିଲେ । ତା'ର ଏଣେ ତେଣେ ଛିଣ୍ଡା ଦଉଡ଼ି ଓହଳି ଥାଏ ।

ମାଆ କହିଲେ—"ଆରେ ପୁଅ ! ସେମିତି ଛିଣ୍ଡାଟାଏ କେମିତି ଆଣିଲୁ !"

ସେ କହିଲେ—"ମାଆ ! ଏଥିରେ ବୁଢ଼ୀମାକୁ ସୁଖ ମିଳିବ । ଗାରୁଆଟା ବୋଲି ଯେତେ ହାତ ଛୁଆଁଡ଼ କଥା ହେଲେ ବି ଚଢ଼ିଯିବ ନାହିଁ ।"

ବୁଢ଼ୀ କହିଲା—"ନୂଆ ପୁରୁଣାରୁ କ'ଣ ମିଳିବ ଲୋ ମା' 'ମୋତେ ନାଆଁକୁ ଟିକିଏ ବେଳ ସିନା ବସିବାକୁ ଅଛି ।"

ଶ୍ରୀକୃଷ୍ଣ ଜାଣନ୍ତି ବୁଢ଼ୀର ନାଆଁକୁ ଟିକିଏ ବେଳ କେତେ ଲମ୍ବା । ତେଣୁ ସେ ଖଟୁଲୀଟି ପକେଇ ଦେଲେ । ବୁଢ଼ୀ କହି ବସିଲା । ଶ୍ରୀକୃଷ୍ଣ ଚୁପ୍‌ଚାପ୍ ତା' ପଛରେ ବସିଗଲେ । ବୁଢ଼ୀକୁ ଟିକେ କମ୍ ଦେଖାଯାଏ । ଶ୍ରୀକୃଷ୍ଣ ଖଟୁଲୀରୁ ଓହ୍ଲାଇ ଆସିଥିବା ଦଉଡ଼ିରେ ବୁଢ଼ୀର ଲୁଗା ବାନ୍ଧି ଦେଲେ । ସେତେବେଳେ ଗାଈ ଛୁଆ ଜନମ କଲା । ମାତା ଦେଖିବାକୁ ଚାଲିଗଲେ ।

ଶ୍ରୀକୃଷ୍ଣ କହିଲେ—"ବୁଢ଼ୀ ମା' ତୁ ମଧ୍ୟ ଯାଉନୁ, ଦେଖିବୁ କେମିତି ସୁନ୍ଦର ହୋଇଛି ବାଛୁରୀ ।"

ଏଇଆ ଶୁଣି ବୁଢ଼ୀ ଉଠି ପଡ଼ିଲା । ତା' ପଛେ ପଛେ ଖଟୁଲୀ ବି ଚାଲିଲା । ଗୋପୀମାନେ ଦେଖି ଖିଲ୍ ଖିଲ୍ ହସିବାକୁ ଲାଗିଲେ । ଶ୍ରୀକୃଷ୍ଣ ଗମ୍ଭୀର ହୋଇ କହିଲେ—ଏଥିରେ ହସିବାର କ'ଣ ଅଛି ? ବୁଢ଼ୀମାକୁ ଏ ଖଟୁଲୀ ଭଲ ଲାଗିଲା, ସେଇଥିଲାଗି ବାନ୍ଧି ନେଇ ଚାଲିଛି ।

ସଭିଏଁ ପୁଣି ଖିଲ୍ ଖିଲ୍ ହୋଇ ହସିଲେ । ବୁଢ଼ୀ ଗାଳି ଦେବା ଆରମ୍ଭ କରି ଦେଲା । ସେଇ ଦିନରୁ ସେ କାନ ଧରିଲା, ଏଥର ନନ୍ଦ ଘରକୁ ଆସିଲେ କୃଷ୍ଣଙ୍କୁ ଦେଖିଲା-କ୍ଷଣି ଚାଲିଯିବ, ଚଢ଼ି ହେଲା । ଏଣୁ ତେଣୁ ବକ୍‌ବକ୍ ହେବ ନାହିଁ ।

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ ଏଭଳି ଭାବରେ ସର୍ବ ସମର୍ଥ ପ୍ରଭୁ ଆଜି ଗୋପବାସୀଙ୍କ ଅଧୀନ ହୋଇ ପ୍ରାକୃତ ଶିଶୁଟିଏ ପରି ସବୁ ଲୀଳା କରୁଛନ୍ତି । ସେ ନିଜେ ହସୁଛନ୍ତି, ଖାଉଛନ୍ତି । ଅନ୍ୟକୁ ହସାଉଛନ୍ତି । ଖୁଆଉଛନ୍ତି । ଯେ ଯେଉଁ ଇଚ୍ଛା ନେଇ ତାଙ୍କ ପାଖକୁ ଆସୁଛି ତା'ର ସେଇ ଇଚ୍ଛା ପୂରଣ ଭକ୍ତବତ୍ସଳ ଭଗବାନ କରୁଛନ୍ତି । ଏହା ଧ୍ରୁବ ସତ୍ୟ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।"

## ଛପ୍‌ପୟ

ଜଗ ମହିଁ ଭଟକେ ଜୀବ ପ୍ରେମ ବିନୁ ଶାନ୍ତି ନ ଅବେ ।
କ୍ଷଣଭଙ୍ଗୁର ଜଗଭୋଗ ଭୋଗିକେ ସୁଖ ନହିଁ ପାବେ ॥
ପ୍ରେମଧାମ ହେ ଶ୍ୟାମ ହୃଦୟ ମହିଁ ଯବ ବସି ଜାବେ ।
ହୋବେ ଜୀବ କୃତାର୍ଥ ଦୁଃଖ ସନ୍ତାପ ନସାବେ ॥
ପ୍ରେମପନ୍ଥ ଅତି ଅଟପଟୋ, ବନ ଭୋଲେ ଢନ ଢନ ବଢ଼େ ।
ଚହେ ବହ ଯୁହ ଫେର ମୁଖ, ଜାୟ ରଙ୍ଗ ଗହରୋ ଚଢ଼େ ॥

ମୁଦ୍ରଣ :—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର କଟକ